

# ମନର ନିଆଁ

ଗୋପୀନାଥ ମହାନ୍ତି

# ମନର ନିଆଁ

(କ୍ଷୁଦ୍ରଗଳ୍ପ)

ଗୋପୀନାଥ ମହାନ୍ତି

ପ୍ରକାଶକ :

ମୟୂର ପବ୍ଲିକେସନ୍ସ
ଝାଞ୍ଜିରମଙ୍ଗଳା
କଟକ—୭୫୩୦୦୯

ପୋଷ୍ଟ ବକ୍ସ ନଂ—୧୮୫
ଭୁବନେଶ୍ୱର—୭୫୧୦୦୧

ପ୍ରଥମ ପ୍ରକାଶ :

୨୫, ଡିସେମ୍ବର ୧୯୭୯

ପ୍ରଚ୍ଛଦପଟ :—

ଉଦୟ ଜେନା

ମୁଦ୍ରଣ :

ସୁମୁଦ୍ରାଣୀ
ଝାଞ୍ଜିରମଙ୍ଗଳା
କଟକ—୭୫୩୦୦୯

ମୂଲ୍ୟ—ଏଗାରଟଙ୍କା ନବେ ପଇସା

# MANARA NIYAN

( Short Stories )

Gopinath Mohanty

Publisher :

Mayur Publications
Jhanjirmangla
Cuttack-753009

Post Box No. 185
Bhubaneswar – 751001

1st Edition :

25th December, 1979

Cover Design :

Udaya Jena

Printed at :

Sumudrani
Jhanjirmangla
Cuttack – 753009

Price :

Eleven Rupees Ninety Paise

# ସୂଚୀ

# ଶାନ୍ତ-ସୁନ୍ଦରୀ

## ( ଗଳ୍ପ )

"ସାମସନ୍ ଆରୋନିଷ୍ଟ୍ସ୍ କୋ: ଲିମିଟେଡ୍ ।"

ପଟୋଉଣୀ ଗର୍ବରେ ସେ ନାମଫଳକକୁ ଅନାଇଁ ବାଟମୁହଁ ଅଗରେ ସଡ଼କରେ ଠିଆହେଲା । ପ୍ରକାଣ୍ଡ ଛ'ମହଲା କୋଠା । କେତେ ବଖରା । କେତେ ବଡ଼ ନାଁ । ମୋ ସ୍ୱାମୀ ଏଇଠି କାମ କରେ । ସ୍ୱାମୀ । ଭାବିଲା ବେଳକୁ ଆଖି ଛଳଛଳ ହୋଇ ଆସୁଛି ଅଭିମାନରେ । ପାଦ ଆଉ ଆଗକୁ ଉଠୁ ନାହିଁ । ମନ ହେଉଛି—। ମୁହଁକୁ ତଳକୁ ପୋତି ଝମଝମ ଭଙ୍ଗୀରେ କଟିକୁ ଢଳେଇ ଦେଲା । ଓଡ଼ଶୀ ନୃତ୍ୟ ବାଟେ 'ମାନଭଞ୍ଜନ' ମନେ ପଡ଼ିଲାଣି । ଦିନ ସାଢ଼େତିନି । ଶରତ୍ ଋତୁର ମାୟାଖେଳ, କେତେ ବଡ଼ ବଡ଼ ଗଛ ଏଠି, ପ୍ରକାଣ୍ଡ ଓସାର କଳା ସଡ଼କ ଦି'କରେ କୋଠାମାନଙ୍କ ଆଗରେ, କେତେ ବଗିଚା, ଆଉ ଗୋଲାପ-ଗୋଲାପ-ଗୋଲାପ-ସତେ ଯେମିତି ଘଡ଼ିବାଣ ଭିତରୁ ଭୁରୁ ଭୁରୁ ହୋଇ ଉଠୁଛି ଏଗୁଡ଼ିକ, ନା, ଏତେ ବଡ଼ ବଡ଼ ଗୋଲାପ ଓ ଏକାସଙ୍ଗେ ଗୋଟିଏ ଗୋଟିଏ ଗଛରେ କୋଡ଼ିଏ ପଚିଶି ଫୁଲ ଆମର ତେଣେ ଦେଖାନାହିଁ । ଗଲାବେଳେ ଡାଳ ପୁଳାଏ କଟେଇ ନେବାକୁହିଁ ପଡ଼ିବ । ଆଉ ସେହି କୁଡ଼ୁଆ ଭିତରେ ଲାଗିବ । ପଚ୍ଛେ କୁଣ୍ଡ, ଓଃ, ଆଜିକାଲି ଯେଉଁ ଦାମ୍ । କେତେଦିନ ହେଲାଣି, ଖାଇ ମହାପ୍ରସାଦ ଆଣି ଦେଇଥିଲେ । ଜୟ ଜଗନ୍ନାଥ । କାହୁଁ ଏଠି ତା । କିନ୍ତୁ କି ସୁନ୍ଦର ସହର, ଗଛପାଇଁ ଆଉ ଫୁଲପାଇଁ । ଏଠି ଏମାନଙ୍କର ତାକୁ ବେଶୀ ଶରଧା, କୋଠାରୁଁ ବଳି, କୋଠାତ କାହିଁ ତୋଟା ଭିତରେହିଁ ଛପିଲା ପରି ଦିଶେ ଏଠି । ଆଉ ଲୋକଗୁଡ଼ିକ କି ଶାନ୍ତ ଭଦ୍ର, ବସ୍‌ରେ ଜାଗା ଛାଡ଼ିଦେଇ ଠିଆ ହୋଇ ପଡ଼ିବେ, ଆଦୌ ସେଠାପରି ଅନେଇଁବେ ନାହିଁ । ମାଲେ କି ଆଖି । ମନହୁଏ ସେ ଆଖିରେ କଣ୍ଟା ଖେଞ୍ଚି ଦେବାକୁ । ବୁଝନ୍ତି ଟିକିଏ ବୋଲି, ମାଇକିନିଆ ଝିଅକୁ କେମିତି ଲାଗେ ?

କିଏ ବୁଝେ ? ସବୁ ଆପଣା-ସାର୍ଥିକାମାନେ ।

ଫରଷ୍ଟ ସଡ଼କ ସେକରୁ ୟୁକ୍ୟାଲିପଟସ୍ ଡହାଳରୁ ସିଲ୍‌ଭର୍ ଓକ୍ ଡହାଳରୁ ଗୋଲାପ ବଗିଚା ଭିତରୁ ଆସୁନାହିଁ ହୃଦୟର ହୃଦୟକୁ ଡାକ, ସେହି ମନମୋହନ

ଛ'ଣାସ୍ୱନ—ଓଃ, କେବେ ନେଇଥିଲେ ଦେଖେଇ । ସେ କି ଭଲ ? ମନେ ପଡୁନାହିଁ କିଏ ମାନଭଞ୍ଜନ ଦେଖେଇ ନେଇଥିଲେ ।

ପଠୋଉଣୀ ପାହାଚରେ ଚଢ଼ି ଇତସ୍ତତଃ ହେଲା ।

ପ୍ରକାଣ୍ଡ ବାଟଘର । ବାଏଁ ଲମ୍ବ ଲମ୍ବ ଦି ଧାଉଡ଼ି ବଖୁରି ଲମ୍ବି ଯାଇଛି କାହିଁକା କାହିଁ । ମଝିରେ ସରୁ ପିଣ୍ଡା । ଡାହାଣେ ଲିଫ୍‌ଟ୍ ଘର ତିନିଟା, ସଂଖ୍ୟା ଉପରେ ଅଲୁଅ ଜଳୁଛି । ଚିପାଚିପି କଳ କାମ, ଲିଫ୍‌ଟ ଓହ୍ଲାଉଛି, ଅଟକୁଛି, ଲୋକ ବାହାରୁଛନ୍ତି ପଶୁଛନ୍ତି, କବାଟ ବନ୍ଦ ହେଉଛି । ଲିଫ୍‌ଟ ଚାଲିଯାଉଛି । କୁଆଡ଼େ ସେ ଯିବ ସେ ? ପଠୋଉଣୀ ଝାଳେଇ ଯାଉଛି, ମୁହଁ ସେ ଛୁଟୁଛି, ଏକର ସେକର ଟହଲୁଛି, କିଛି ଠିକଣା କରିପାରୁନାହିଁ । ଯେତେ ଦୂର ହେଉ, ପଇସା ଦେବା, ଟିକଟ କିଣି ରେଲରେ ବସିବା, ଓହ୍ଲେଇ ପଡ଼ି ଗାଡ଼ି ଭଡ଼ା କରିବା, ଗୋଟାଏ ହୋଟେଲରେ ବଖରାଏ ଭଡ଼ା ନେଇ ବିଛଣା ଓ ସୁଟ୍‌କେଶ ଥୋଇଦେବା, ତାପରେ ଅଫିସ ଖୋଜି ବାହାରିବା, ଏସବୁ ତା ପକ୍ଷରେ ଯେତେ ଦୁଃସାହସିକ କାର୍ଯ୍ୟ ହେଲେ ବି ଅସମ୍ଭବ ଲାଗୁନାହିଁ । କିନ୍ତୁ ପୁଣି ତାପରେ ?

ଏଥର ଅସଲ ଅଡ଼ୁଆ ସଙ୍ଗେ ମୁହାଁମୁହିଁ । ପରଠୁଁ ପଚରା ନେବାକୁ ପଡ଼ିବ ଆପଣା ବିଷୟରେ, ପର ଯାହା ଭାବୁ ପଛେ ।

ସମ୍ପୂର୍ଣ୍ଣ ଅସମ୍ଭବ ତ ହୁଅନ୍ତା ପରା, ସମ୍ବଳ ଖାଲି ଇଂରେଜି ଭାଷା । ଏ ଦେଶରେ କାହାରି ସେ ଭାଷା ନୁହେଁ, ଅଥଚ ସମସ୍ତଙ୍କ ପାଇଁ ମେଲା ଫରଚା ଢଙ୍ଗ । ଆପଣା ଅନୁଭୂତିରୁ ଶିଖା ନୁହଁ ଖାଲି ବହିରୁ ଘୋଷି ବୁଝି ବାଟେ, ତେଣୁ ଆପଣା ଗହନ ଅନୁଭୂତି କଥା କହିବାକୁ ଅଭ୍ୟାସ ନାହିଁ, ଆଉ କିଏ ସେଭଳି କହିଲେ ତା ଅର୍ଥ ବୁଝିବାକୁ ଅଭ୍ୟାସ ବି ନାହିଁ, ସେଥିରେ ବି ସୁବିଧା, ନିଜେ ଧରା ନ ଦେଇ କଥା କହି ହୁଏ ଓ ଅର୍ଥ ଘେନି ହୁଏ, କେହି ସନ୍ଦେହ କରିବେ ନାହିଁ ।

କିନ୍ତୁ ପଚାରିବ କାହାକୁ, କଣ ବା ?

"ଶର୍ମା ।"

କିନ୍ତୁ 'ଶର୍ମା' କଣ ଗୋଟିଏ ଭାଷା କି ଅଞ୍ଚଳରେ ସୀମିତ ? ସେ ତ ଏ ମହାଦେଶର ସାର୍ବଦେଶିକ ବ୍ରାହ୍ମଣପଦବୀ । ଏଡ଼େ ବଡ଼ କୋଠା । ଏତେ ଲୋକ, କେତେ ଭାଷାଭାଷୀ କେତେ ଶର୍ମା ଯେ ଥିବେ କିଏ କହିବ ।

ଲିଫ୍‌ଟ ପଟ ନୁହେଁ, ଟହଲି ଟହଲି ବାଁ ଆଡ଼ ସରୁ ଗଳିରେ ସେ ଚାଲିଛି, ଠାଏ ଠାଏ କାଚ କାନ୍ଥ ବାଟେ ଦିଶୁଛି ବଡ଼ ବଡ଼ ବଖରା, ସେଠି ସେମାନେ ନଇଁ ପଡ଼ିଛନ୍ତି । ୟେ ନୁହେଁ-ୟେ ନୁହେଁ-ୟେ ନୁହେଁ—। କେତେ ବୁଜା କବାଟ, କେତେଠିଁ ନମ୍-ଫଳକ । ୟେ ନୁହେଁ-ୟେ ନୁହେଁ-ୟେ ନୁହେଁ— ।

ହଁ ମୂଳୋହୁଁ ସେ ସେହିପରି । ବାପେ କି ସୁନ୍ଦର ନାଁଟିଏ ଦେଇଥିଲେ— କାଙ୍ଗାଳି-ଚରଣ । ଡାକୁଥିଲେ 'କେଲୁ' । ପୈତୃକ ପଦବୀ ଥିଲା—'ଦେବତା' । ଗାଁରେ କହନ୍ତେ ବାଉ ଦେବତା ପୁଅ କେଲୁ ଦେବତା । କିନ୍ତୁ ଗୋଟିଏ ଶାଣ୍ଡିଲ୍ୟ ଶ୍ରେଣୀନାମ ଭିତରେ ନିଜର ସ୍ୱତନ୍ତ୍ରତାକୁ ଲୁଚେଇ ଦେଇ ସେ ହେଲେ ମି ଷ୍ଟର ଶର୍ମା । ଖାଲି ହୃଦ୍ୟ

ଅକ୍ଷର ଯୋଡ଼ିଏ , କେଶୀ, କେଶୀ ଶର୍ମା, କିନ୍ତୁ ଏବର ଦୁନିଆର ଲୋକେତ କାହାରି ଆଦ୍ୟ କି ମୂଳୁଦୁଆ ଜାଣିବାକୁ ବି ଚାହାନ୍ତି ନାହିଁ । ସେମାନେ କଣ ଶୁଣିଥିବେ ?

ଆଉ, ଚାକିରି —ଲେଖିଥିଲେ ଏଠି ସେ ସୁପର-ଏଗ୍‌ଜିକ୍ୟୁଟିଭ୍, ତାମାନେ ?— ହଁ ସେ ବି ଗୋଟିଏ ଶ୍ରେଣୀ ହୋଇଥିବ । କେତେଜଣ ସେ ଶ୍ରେଣୀରେ ଏଠି କାମ କରନ୍ତି ? ତେବେ ହଁ—ପଦୋଉଣୀ ଠିଆ ହୋଇ ପଡ଼ିଲା —ଚିଠି ତ ସେ ପାଆନ୍ତି । ପଦବୀ ସୁପର ଏକ୍‌ଜିକ୍ୟୁଟିଭ ଏ କାର୍ଯ୍ୟାଳୟ ସାମସନ୍ ଆଗୋନିଷ୍ଟିସ୍ ଲେଖିଲେ ଚିଠି ମିଳେ । ମିଳେ କି ? ଦି ମାସରେ ତିନି ମାସରେ ଅଧେ ଯେଉଁ ଖଣ୍ଡେ ଖଣ୍ଡେ ଚିଠି ଦେଉଥିଲେ, ଏଣୁ ତେଣୁ ବିପଦ ଲେଖୁଥିଲେ, ଘରୁ ଚିଠି ପାଇ ଉତ୍ତର ଦେଲାଭଳି ସେ ନୁହେଁ । ସବୁଥର ଥାଏ, ସେ ଅତି କାର୍ଯ୍ୟବ୍ୟସ୍ତ, ଫୁରସତ ଆଦୌ ମିଳୁ ନାହିଁ, ଅଉ— କମ୍ପାନୀ କେମିତି ତାଙ୍କ କାର୍ଯ୍ୟଦକ୍ଷତାର ପରିଚୟ ପାଇଲାଣି, ନିକଟରେ ପଦୋନ୍ନତିର ଆଶା ଅଛି, ସେ କଥା । ଚାରି ମାସ ହେବ ସେଭଳି ଚିଠି ବି ଆସି ନାହିଁ । ଅଥଚ ସେ ତ ଚିଠି ଲେଖିଛି ପନ୍ଦର ଦିନକୁ ପନ୍ଦର ଦିନ । ପିଣ୍ଡାର ପେଟରୁ କେତେ ଲମ୍ବା ଚାକୁଣ୍ଡାଟାଏ ପଡ଼ିଲା, ଟିମିର କେମିତି ବାରଂବାର ତଣ୍ଟି ଦରଜ ହୋଇ ତର ହେଉଛି, କୁକୁରଟା କେମିତି ଆଉ ଘରେ ରହୁ ନାହିଁ, ୟା ତା ଓଳିତଳେ ନାକୋଉଛି, କେମିତି ନୂଆ କଦଳୀ କାନ୍ଦିଟିଏ ପଡ଼ିଥିଲା ଗଛଟା ପବନରେ ଭାଙ୍ଗି ପଡ଼ିଲା ସବୁ କଥା ଲେଖିଛି । ସବୁ । ସବୁ । ଆଉ, ମହରଚ ଦିନ, ଚାଉଳ କେଜିକ ଅଢ଼ଇଟଙ୍କା ହେଲାଣି, ବଡ଼ ଚାକିରି ହେଲା, ବେଶୀ ଦରମା ମିଳୁଥିବ, ଘରକୁ ସେହି ଶହେଟି ଟଙ୍କା, ସବୁ ମାସର ଆଠ ତାରିଖରେ, ଟଙ୍କାଟିଏ ବେଶୀ ହେବ ନାହିଁ ଏ କେମିତି କଥା ? ସେପରି ତ ସେ ନ ଥିଲେ । ଦଣ୍ଡେ ଖବର ନ ବୁଝିଲେ । ଯହୁଁ ଯହୁଁ ସେ ଭାବିଛି ତହୁଁ ତହୁଁ ତା ନିଜ ଭିତରୁ ସେ ପ୍ରେରଣା ଅନୁଭବ କରିଛି—ନିଜେ ଯାଇ ବୁଝିବାକୁ ପଡ଼ିବ – ନିଜେ ଯାଇ ବୁଝିବାକୁ ପଡ଼ିବ । ହୁଏତ କୌଣସି ବିପଦ,—ଦେହ ମୁଣ୍ଡ କଥା ବିଦେଶ ଜାଗାରେ ଆଉ କିଛି ଆପଦ—ସ୍ତ୍ରୈବିହାରି ଭଳି, ଅଥବା ଆହୁରି କିଛି, ଯହିଁରେ ମନସ୍ତାପ ଏଭଳି ବଳି ପଡ଼ୁଛି ଯେ ବୁଦ୍ଧି ହଜି ଯାଇଛି । କଣ ହୋଇପାରେ ? ଯେତେ ଭାବିଛି ସେତେ ଛାନିଆଁ ହୋଇଛି । ଠାକୁର ପୂଜା କରିଛି, ମାନସିକ ଯାଚିଛି, ଦୁଃସ୍ୱପ୍ନ ଦେଖିଛି, ଆହୁରି ଛଟପଟ ହେଉଛି । କାନ୍ଦି କାନ୍ଦି ଲୁହ ସରିଛି, ଦେହ ଖିନ୍ନ ହୋଇଛି, ବେଶଭୂଷା ପ୍ରତି ଉଦାସୀ ହୋଇଛି । ଆତଙ୍କରେ ଚମକି ପଡ଼ି ମନେ ମନେ କହିଛି, ଠାକୁରେ, ଭଲ ଅଛନ୍ତି ଟି ଯେ ? ମନେ ପଡ଼ିଛି ପୁରାଣର ସାନ୍ତ୍ୱନା – ସତୀର ଧର୍ମବଳ, ଯେ ସତୀ ତା ସ୍ୱାମୀର ବିପଦ ନାହିଁ । ସେ ସତୀ—ନିଜକୁ ଭରସା ଦେଇଛି । ଅଉ କୌଣସି ପୁରୁଷର ତା ଶରୀର ସଙ୍ଗେ ସମ୍ପର୍କ ନ ଥିଲା । କେମିତି ବା ଏତେ ଅସମ୍ଭବ କଥା ସେ କେବେ ଚିନ୍ତା କରି ପାରନ୍ତା ? କିନ୍ତୁ ମନେ ମନେ ? ଭଗବାନ, ଚଞ୍ଚଳ ବାଳୁତ ମନକୁ ତୁମେ କ୍ଷମା କରିବ । ଯଦି କେତେବେଳେ ମନ ଦର୍ପଣରେ ଆଉ କେଉଁ ଛାଇ ପଡ଼ି ଯାଇଥିବ ସେ ମୋ ଇଚ୍ଛାକୃତ ନୁହେଁ । ବିଲେଇ ନଖରେ ଚର୍ମ ମାଟି ଘୋଡ଼େଇଲା ପରି ସେ ସବୁ ଅବାଞ୍ଛିତ ସ୍ମୃତି ଘୋଡ଼େଇ ପକାଏ, ଘୋଡ଼େଇ ପକାଏ । ଯାହା ଅରୁଚିକର, ତାର ସତ୍ତାକୁ ଢାଙ୍କିଦେଲେ ଭ୍ରାନ୍ତି ଜନ୍ମେ ହେବ ଯେ ସେ ନାହିଁ, କେବେ ନ ଥିଲା । ଅତଏବ, ମୁଁ ସାବିତ୍ରୀ । ମୁଁ ଥାଉ ଥାଉ । —କିନ୍ତୁ ଯିବାକୁ ପଡ଼ିବ । ସାବିତ୍ରୀର କର୍ତ୍ତବ୍ୟ ଘରେ ବସି କାନ୍ଦିବା ନୁହେଁ ।

ସବୁ ଠିକ୍ ଯେ—ବର୍ତ୍ତମାନ ଉପାୟ ?

ଏଠି କାହା ପାଖକୁ ଯାଇ ତାକୁ ପଚାରିବ ନିଜ ସ୍ୱାମୀ କୋଉଠି ଥାଏ ? କେଡ଼େ ଲଜ୍ଜା । "କହି ପାରିବେ, ମୋ ମୁଣ୍ଡ କେଉଁଠି ଥାଏ" ? ଏ ତ ସେହିପରି ପ୍ରଶ୍ନ । ଉପାୟ ?

ଥରେ ଆରମ୍ଭ କରି ପ ରିଲେ—।

ଏମୁଣ୍ଡରୁ ସେମୁଣ୍ଡ ଡିଥର ରହି ରହିକା ଯା ଆସ କଲାଣି । ଅଟକିଲା ।

ବାଟ ଓଗାଳିଛି ଢେଙ୍ଗୀ ହୋଇ ଝିଅଟିଏ । ମୁଣ୍ଡବାଳ ବବୁରିକଟା । ତେଲ ନାହିଁ । ଆଖିରେ କଳା ଡାଡ ହୋଇ ବୋଳା ହୋଇଛି, କାନ ଆଡ଼କୁ ଲମ୍ବି ଟଣା ହୋଇଛି । ମୁହଁରେ ଶ୍ୟାମଳ ବର୍ଣ୍ଣ ଉପରେ ହାଲୁକା ପାଉଁଶିଆ, ଯେମିତି କେଉଁ ଅଟାକଳ ଦୁଆର ମୁହଁରେ ଥିଲା, ମୁହଁ ପୋଛି ଲେସି ଦେଇ ଚାଲି ଆସିଛି । କିନ୍ତୁ ଆଶ୍ଚର୍ଯ୍ୟ ଦିଶୁଛି ତା ଓଠ ଓ ନଖ, ମୋଟା ମୋଟା ଓଠ, କଳା ଚମ ଉପରେ ରକ୍ତ-ନାଳି, ଲମ୍ବ ଲମ୍ବ ନଖ, ମୁନିଆ ମୁନିଆ, ରକ୍ତ ନାଲି । ଯେମିତି ଏଇ ବସ୍ତିରି ଭିତରୁ କେଉଁଠି ଦାଏ ପାଟିରେ ନଖରେ ସେ କେଉଁ ହତଭାଗାକୁ ରକ୍ତାକ୍ତ କରୁଥିଲା, ସିଧା ସେଠୁ ଉଠି ଆସିଛି ଫୁର୍ ଫୁରମୁଣ୍ଡୀ, ଲମ୍ବ ଲମ୍ବ ଡଗ ଡଗ ଗୋଡ଼, ଜଙ୍ଘତଳଯାକେ ସ୍କାର୍ଟ ଖଣ୍ଡେ ପିନ୍ଧିଛି । ଟିକିଏ ତାଟକା ହେଲା ପରେ ମୁହଁ ଟେକି ଅନେଇଲା । ଝିଅଟି କୁତୂହଳରେ ତା ଉତ୍ତରକୁ ଅପେକ୍ଷା କରିଛି । କଣ ପଚାରିଲା ? କେତେବେଳେ ?

ଖୁବ୍ ମିଠା ସପୁରି ପରି ବାଘୁଆ ସ୍ୱରରେ କଣ ଗୋଟିଏ ମହକ ଛାଡ଼ି ଦେଇ ଝିଅଟି କହିଲା, "ପଚାରିଲି ପରା, ଆପଣଙ୍କର କୌଣସି ସେବାରେ ମୁଁ ଲାଗି ପାରନ୍ତି ନାହିଁ ?"

ପଠୋଉଣୀକୁ ବୁଝିଲା ଭଳି ଲାଗିଲା,—ଯେ ମତେ ଚିହ୍ନି ଲାଣି, ମୋ ସ୍ୱାମୀକି ଚିହ୍ନିଥିବ । ହୁଏତ ତାଙ୍କରି ତଳିଆ ଅଧସ୍ତନ କେହି । କିଛି ନ ଭାବୁଣୁ କହିଲା,—"ସେ କାହାନ୍ତି ?"

ଝିଅଟି ଆଶ୍ଚର୍ଯ୍ୟ ହେଲା । ପଚାରିଲା "କିଏ ?"

ପଠୋଉଣୀକୁ ଲାଜ ମାଡ଼ିଲା । ମୁହଁକୁ ତଳକୁ ପୋତି କହିଲା,

"ମିଷ୍ଟର ଶର୍ମାଂକୁ ଖୋଜୁଥିଲି ।"

"କଣ କରନ୍ତି ?"

"ସୁପରଏଗ୍‌ଜିକ୍ୟୁଟିଭ୍ ।"

"ଆଶ୍ଚର୍ଯ୍ୟ ! କିଏ କହିଥିଲା ? ଆଚ୍ଛା ଆସନ୍ତୁ ମୋ ସାଙ୍ଗେ ମୋ ବଖୁରୀକୁ ।"

"କିନ୍ତୁ ମୁଁ ତାଙ୍କୁ ଖୋଜୁଛି ।"

"ଚିନ୍ତା ନାହିଁ, ଆସନ୍ତୁ ।" ଲିଫ୍‌ଟ୍ ଚଢ଼ି ପାଞ୍ଚମହଲା ଉପରକୁ । ଠାଏ ନାମ ଫଳକଟିଏ ମରିଛି,—"ମିସ୍ ଆଇଲିନ୍ ମେମ୍ପିଲ୍ସୀ ।"

ଛୋଟ ଖୋଟଟିଏ, ନିବୁଜ, କାଛ, ଛାତ, ତଳି, ଜିନିଷ ସବୁ ଆକାଶୀ ବର୍ଣ୍ଣ । କ ଛରେ ଗୋଟିଏ ଛବି, ନାଲ, ମାଟିଆ, କମଳା, ଶାଗୁଆ ଆଉ ହଳଦିଆ ।

ଚାରିକଣିଆ, ତିନିକଣିଆ, ଗୋଲ, ଚୋପି ଚୋପି । କଣ ଗୋଟାଏ ଖୁଆ ? ନବଟୁଙ୍ଗର ? କୋଠାବାଡ଼ି ? ହଠାତ୍ କାହିଁକି ଛାଡ଼ିଟା ଥରି ଉଠିଥିଲା । ଅସ୍ପଷ୍ଟ ଧାରଣା ଆସିଥିଲା, ମୁଣ୍ଡଟ ଅଲଗା, ସେ ପୁଣି ପଛକୁ ମୋହିଁଛି । 'ଶରୀରଟା ମୋହିଁଛି ଆଗକୁ । ହାତ-ଦିଟା ବି ଦେହରୁ ଅଲଗା, ଦିଗ ଭିନେ । ଗୋଡ଼ ଦିଟା ଅନ୍ୟ ଆଡ଼େ । କିନ୍ତୁ ବେଶି ଆଶ୍ଚର୍ଯ୍ୟ ଲାଗେ ତା ଆଖି ଓ ତା ଛାତି । ଆଖି ସ୍ଥାନରେ ଦିଟା କଳା କଳା ଗୋଲ, ଶୂନ୍ୟ, ଆଖି ନାହିଁ । ଛାତି ଭିତରେ ହୃଦୟ ଥିବା ଜାଗାରେ ଗୋଟାଏ ମାଟିଆ-ଟ୍ରାନ୍‌ଜିଷ୍ଟର ଯନ୍ତ୍ର ।

ଝିଅଟି ଟେଲିଫୋନ ଟେକି କହିଲା "ମୁଁ ମମ୍‌ପିଲି କହୁଛି । ଝଟ୍ ଦିଟା କପି ।" ଅତି ବିଶ୍ୱସ୍ତ ଭାବରେ ସ୍ନେହଶୀତଳ ଆଖିରେ ତ ମୁହଁକୁ ଚାହିଁ ଦେଇ କହିଲା "ଜାଣେ ନାହିଁ କାହିଁକି, କିନ୍ତୁ ଆପଣ ଭାରି କ୍ଳାନ୍ତ ଦିଶୁଛନ୍ତି । କାମ କଥା ପଛେ ହେବ । ଆପଣ ଆଗ ଟିକିଏ ଧୁଆ ଧୋଇ ହୋଇ ପଡ଼ିଲେ ଭଲ ହେବ । ହେଇ ସେଇଟା ଧୁଆଧୋଇ ଘର ।

ମୋ ପରିଚୟ ଦେଲି ନାହିଁ ଯେ । ମୁଁ ଏଠି କାମ କରେ ।"

ହସି ଦେଇ ପଚୋଉଣୀ କହିଲା "ଆପଣ ମୋ ପାଇଁ—"

"କିଛି ନାହିଁ କିଛି ନାହିଁ ।"

"ମିଷ୍ଟର ଶର୍ମା—"

"ହଉ, ଆଗେ ସୁସ୍ଥ ହୁଅନ୍ତୁ, ଶାନ୍ତ ହୁଅନ୍ତୁ, ପଛେ କହିବେ । ମୁଁ ତ ଅଛି । ସେ ଯେଉଁଠି ଥାଆନ୍ତୁ ମମ୍‌ପିଲି ଜବାବ ଦେଉଛି ତାଙ୍କୁ ଖୋଜି ବାହାର କରିବ । ଯାଉନ୍ତୁ ସେଇଟା ଧୁଆଧୋଇ ଘର । ମତେ ଲାଗୁଛି ସେଠି ସବୁ ପାଇବେ । ନ ହେଲେ ଯାହା ଦରକାର ହେବ ମତେ ଡାକିବେ ।"

ବିନା ଆପତ୍ତିରେ ବାଥ୍‌ରୁମ୍ ଭିତରେ ପଶି ସେ କବାଟ କିଳିଲା ।

ଯାଉ ଯାଉ ସାମ୍ନାକୁ ଅନେଇଁ ଦେଲା । ତା ଆଡ଼କୁ ଆଗେଇ ଆସୁଛି ଗୋଟିଏ କ୍ଳାନ୍ତ କାତର ମୁହଁଟିଏ, ଆଖିରୁ ଲୁହରେ କଳା ବୋହିଆସି ଗାଲରେ ଲାଗି ଯାଇଛି । ମୁଣ୍ଡବାଳ ଅଳର ।

ଆଇଲିନ୍ ମମ୍‌ପିଲୀ ପ୍ରତି ତାର କୃତଜ୍ଞତା ଆସିଲା । ଏତେବେଳକେ ସେ ନିଜ ଅବସ୍ଥା ବୁଝି ପାରିଲା । ଯେ ନିଜେ ସହରର କେହି ଜଣେ, ମମ୍‌ପିଲୀ ତାକୁ ଚିହ୍ନି ନାହିଁ, ତା ବିଷୟରେ କିଛି ଜାଣି ନାହିଁ, ପଚାରି ନାହିଁ, ଅଥଚ ଏତେ ଦୟା ଓ ସୌଜନ୍ୟ । ମମ୍‌ପିଲୀ-ମମ୍‌ପିଲୀ—କଣ ତା ମାନେ ? କି ଜାତି ସେ ? ଆଇଲିନ୍ । ସେ ଖ୍ରୀଷ୍ଟିଆନ୍ । ଇଂରେଜି ସିନା କହୁଛି, କି ଭାଷା ତାର ?

ବାଥ୍‌ରୁମ୍‌ଟି ଖୁବ୍ ସଫାସୁତୁରା, ସବୁ ଜିନିଷ ସଜାସଜି ହୋଇ ନିଜ-ନିଜ ସ୍ଥାନରେ । ବାଥ୍‌ରୁମ୍‌ର ଚେହେରା ଯଦି କାହା ସଭ୍ୟତାର ମାପ ଦେବେ ଆଇଲିନ୍‌ର ବ୍ୟକ୍ତିତ୍ୱର ଆପଣା ଆଭିଜାତ୍ୟ ଅଛି ସନ୍ଦେହ ନାହିଁ ।

ମୁହଁରେ ଥଣ୍ଡା ପାଣି ମାରି ମୁଣ୍ଡବାଳ ସାଉଁଳେଇ ସଫାକୁ ଶାନ୍ତଶୀତଳ ହୋଇ ସେ ଯେତେବେଳେ ଅଇଲିନ୍ ମମ୍‌ପିଲ୍ଲୀ ପାଖକୁ ଲେଉଟି ଆସିଲା ଅଇଲିନ୍ ହସି ଦେଇ କହିଲା "ଟିକିଏ କଫି ପିଆଯାଉ ।"

କଫି ପିଇ ପିଇ ଲାଗୁଥାଏ ଝିଅଟି ସତେ ଯେମିତି ତାର ଚିହ୍ନା ମଣିଷ । କି ସୁନ୍ଦର ହସେ । କି ସୁନ୍ଦର ଏକାମଲ୍ଲାକେ ଝିକିଝିକି ଦାନ୍ତ । ତେବେ ଓଠରେ ଏ ବିଲକ୍ଷ ନାଲି ବୋଳେ କାହିଁକି ? ନଖଟା କାହିଁକି ଏତେ ବଡ଼ ଏତେ ନାଲି ? ନିଶ୍ଚୟ ଗୋଟାଏ ଖିଆଲ । ନ ହେଲେ ବ୍ୟବହାରର ସିଧା ଗତ ।

ଯେପରି ବାଧ୍ୟରେ କହିବାକୁ ପଡ଼ୁଛି ସେହିପରି ଥଙ୍ଗେଇ ଥଙ୍ଗେଇ ହୋଇ କହିଲା "ମିଷ୍ଟର ଶର୍ମାଙ୍କ ବଖରାଟା—ପ୍ରକୃତରେ ଆପଣଙ୍କୁ ନ ଦେଖିବାଯାକେ ମୁଁ ତ ଆଶା ଛାଡ଼ି ଦେଇଥିଲି । ଯେତେବେଳୁ ଏକର ସେକର ହେଉଛି ।"

ମମ୍‌ପିଲ୍ଲୀ ଗମ୍ଭୀର ହୋଇ କହିଲା 'ଦେଖନ୍ତୁ, ସାମସନ୍ ଆରୋନିଷ୍ଟିକ୍ କମ୍ପାନୀରେ ସୁପର ଏଗ୍‌ଜିକ୍ୟୁଟିଭ୍ ବୋଲି କୌଣସି ପଦବୀ ନାହିଁ ।"

"ନାହିଁ ।" ମୁହୂର୍ତ୍ତକେ ସତୋଉଣୀର ନିଶ୍ଚିନ୍ତପଣ ଉଭେଇଗଲା, ସେ ଧଡ଼କିନା ଚୌକିରୁ ଉଠିପଡ଼ି କହିଲା "ତେବେ କଣ ହେବ ।"

ତାର କାନ୍ଧରେ ହାତଟିଏ ଥୋଇ ଆସ୍ତେ ଚିପି ଦେଇ ମମ୍‌ପିଲ୍ଲୀ କହିଲା "ବସନ୍ତୁ, ଅଧୀର ହେଲେ ଚଳିବ ?"

ତାର ପାଟିରେ କୋହ, ଆଖି ତାତି ବାମ୍ଫେଇଲାଣି, ତୁନି ହୋଇ ସେ ମୁଣ୍ଡ ହଲେଇଲା । ବୁଝେଇଦେଲା ଯେ ଅଧୀର ହେଲେ ଚଳିବ ନାହିଁ ସେ ଜାଣିଛି ।

"କହନ୍ତୁ, ଏ ଶର୍ମା ଆପଣଙ୍କର କଣ ? କାହିଁକି ଆପଣ ତାଙ୍କ ପାଇଁ ଏତେ ଉଦ୍‌ବିଗ୍ନ ?"

ସେ ସଂକ୍ଷେପରେ ତା କାହାଣୀ କହିଗଲା । ମିଷ୍ଟର ଶର୍ମା ତା ସ୍ୱାମୀ । କମ୍ପାନୀର ସଦର ମହକୁମାକୁ ଆସିଲେଣି ଆଠମାସ ହେଲା । ଚାରିମାସ ହେଲା ଚିଠି ଦେଇ ନାହାନ୍ତି, ତେଣୁ ସେ ଓ ଘରେ ସମସ୍ତେ ଶର୍ମାଙ୍କ ପାଇଁ ଉଦ୍‌ବିଗ୍ନ । ମାସର ଆଠ ତାରିଖରେ ଟଙ୍କା ମନିଅଡ଼ର ହୁଏ କିନ୍ତୁ ଚିଠି ଖଣ୍ଡେ ବି ନାହିଁ । ତେଣୁ ବୟାଳିଶି ଘଣ୍ଟା ବାଟରେ ବିତେଇ ସେ ନିଜେ ଖୋଜିବାକୁ ଆସିଛି । କହିଦେଇ ସେ ଲଜ୍ଜାରେ ସାନ ହୋଇଗଲା । ସେ କଣ କଲା ? ଅଚିହ୍ନା ଲୋକ ଆଗରେ ପ୍ରକାରାନ୍ତରେ ସ୍ୱାମୀଙ୍କୁ ଅଭିଯୁକ୍ତ କଲା ।

"ମିଷ୍ଟର ଶର୍ମା ନିଶ୍ଚୟ ଆପଣଙ୍କ ପରି ସ୍ତ୍ରୀ ପାଇ ଭାଗ୍ୟବାନ । କିନ୍ତୁ ସେଥିପାଇଁ ସେ ଯୋଗ୍ୟ କି ?"

ବହୁତ ଟାଣ କଥା ଏ କହିଦେଲା । କାହିଁକି ସେ ତାକୁ ସୁଯୋଗ ଦେଲା ? କହିଲା "ଛାନିଆ ଲାଗୁଛି, କାଳେ ବେମାର ଥିବେ ।"

"ଅସମ୍ଭବ । ତାହେଲେ ଟଙ୍କା ପଠାଉଥାନ୍ତେ କେମିତି ?"

"ହୁଏତ ନିଜେ ବେମାର ପଡ଼ି ଅମୁକୁ ମନ ଖରାପ କରିବାକୁ ସେ ଦେଉ ନାହାନ୍ତି ।" ସେ ମୁହଁ ଥନଥନ କରି ତଳକୁ ପୋତିଲା ।

କରୁଣ ହୋଇ ପଚାରିଲା "ସେ କୋଉଠି ମିଳିବେ ଆପଣ କାହାକୁ ପଚାରି ଦେଲେ କହି ପାରନ୍ତେ ନାହିଁ ?"

ମମ୍‌ପିଲୁ କହିଲା "ଚେଷ୍ଟା ତ ନିଶ୍ଚୟ ହେବ । ପ୍ରଥମେ ଅସୁବିଧା ପଡ଼ିଲା, ସେ ଏଠି କି ଚାକିରି କରନ୍ତି ଜଣା ନାହିଁ । ହୁଏତ ସୁପର ଏଗ୍‌ଜିକ୍ୟୁଟିଭ୍ କହି ସେ ଏଇଆ କହିବାକୁ ଚାହିଁଛନ୍ତି ଯେ କ ଖ ଗ ଘ ଚାରି ଶ୍ରେଣୀର କର୍ମଚାରୀ ଭିତରୁ ସେ କ ବା ଖ ଶ୍ରେଣୀରେ ମିଳିବେ । ସାମସନ୍ ଆଗୋନିଷ୍ଟିସ୍ କଂମ୍ପାନୀର ଦଶଟି ବିଭାଗ ଅଛି, ପ୍ରତି ବିଭାଗରେ କ ଓ ଖ ଶ୍ରେଣୀ ବି ଅଛି, ସମୁଦାୟ ସେଠିରେ ତିନିଶହ ଜଣ ଥିବେ । ସବୁ ବିଭାଗ ପାଇଁ ବି ଏଇ ଗୋଟିଏ କୋଠାରେ ଜାଗା ନାହିଁ । ସହରରେ ଦୂରରେ ଦୂରରେ ଆଉ ଦୁଇ ସ୍ଥାନରେ କୋଠା ଭଡ଼ା ନିଆ ହୋଇ ଚାରୋଟି ବିଭାଗ ସେଠି ବି ଅଛି ।"

"କାହିଁ କାହିଁ କୋଉଠି ସେ ଦୁଇ କୋଠା ?"

"କିନ୍ତୁ ଏଠି କଣ ଆମେ ଖୋଜି ପାରିଲେଣି ? ଆଗ ଏଠି ସାରିବା ।"

"କିନ୍ତୁ ନାଁରୁ ତ ଆପଣ ଚିହ୍ନି ପାରନ୍ତେ । କାଙ୍ଗାଳିଚରଣ ଶର୍ମା ।"

"କ୍ୟାନାଲିଚରନ୍—ସେ ତ ତାଙ୍କ ଆଦ୍ୟ ନାଁ ହୋଇଥିବ, ଯେଉଁ ନାଁରେ ଆପଣ ଡାକିବେ । ଲୋକେ ଜାଣିଥିବେ ଶେଷ ନାଁ ଶର୍ମା ।"

"ହେଲା, ଶର୍ମା ନାଁରୁ ତ ସହଜେ ଧରି ହେବ । ଆପଣ କହି ପାରିବେ ନାହିଁ ?"

"ଆଚ୍ଛା ଆପଣ କହନ୍ତୁ । ସେ କଣ ଦସ୍ତଖତ୍ କରନ୍ତି ? ଅଗ୍ନି ଶର୍ମା ? ବିଷ୍ଣୁ ଶର୍ମା ?"

"ନା-ନା-ନା—ଖାଲି କେ. ଶର୍ମା—"

"କେ. ଶର୍ମା । ବେଶ୍ । କିନ୍ତୁ କେତେଜଣ ତ ଅଛନ୍ତି, ମୁଁ ବି କେତେଜଣ କେ. ଶର୍ମାଙ୍କୁ ଚିହ୍ନେ ।" ମମ୍‌ପିଲୁ ଚେହେରା କେତୋଟି ବର୍ଣ୍ଣନା କଲା, ଜଣେ ସରୁଆ ଛ'ଫୁଟିଆ, ଦାଢ଼ିଆ, ଗୋରା; ଜଣେ ବାଙ୍ଗରା, କଳା, ମୋଟା, ବଡ଼ ବଡ଼ ନିଶ; ଜଣେ ମୁଣ୍ଡ ଚନ୍ଦା, ଆଖିରେ ଚଷମା, ଲମ୍ବା ମୁହଁ, ଯୁବକ...ନା ସେମାନେ କେହି ନୁହନ୍ତି ।

ପଚୋଉଣୀ ଚେହେରାଟିଏ ବର୍ଣ୍ଣନା କଲା । କିନ୍ତୁ ବିଶେଷତ୍ୱ କଣ ବୋଲି କହିବ ? ବେଶୀ ଗୋରା ନୁହନ୍ତି, ବେଶୀ କଳା ନୁହନ୍ତି, ବେଶୀ ଡେଙ୍ଗା ନୁହନ୍ତି, ବେଶୀ ବାଙ୍ଗରା ନୁହନ୍ତି, ସ୍ୱାସ୍ଥ୍ୟ ସାଧାରଣ, ନିଶ ତ ରଖୁ ନ ଥିଲେ; କିନ୍ତୁ ବା ଆଗରୁ ପୁଣି ନିଶ ଥିଲା, ପୁଣି ଯଦି ....। ଚଷମା ତ ଦେଉ ନ ଥିଲେ । "ବୟସ ସତୈଁତିରିଶି ହେବ, ହଁ, ମୋଠୁ ଆଠ ବର୍ଷ ବଡ଼ ।" ଓଡ଼ିଆଭାଷୀ ଲୋକ, ଓଡ଼ିଶା ତ ଆମ ଘର, ଚିହ୍ନି ହେବ ନାହିଁ ?"

"କେମିତି ଚିହ୍ନିବା ଭଉଣୀ—କ୍ଷମା କରିବେ ଭଉଣି ବୋଲି କହି ଦେଲି, ଆମେ ଏକା ବୟସର କିନା —"

"ସତେ ?",

"ଦ୍ୱିତୀୟ ମହାଯୁଦ୍ଧ ସରିଲାବେଳେ ମୁଁ ମା ପେଟରେ ।" ଦୀର୍ଘଶ୍ୱାସ ପକାଇ କହିଲା "ଛାଡ଼ । ସମସ୍ତେ ଇଂରେଜି କହନ୍ତି, ସମସ୍ତେ ଇଂରେଜି ପୋଷାକ ପିନ୍ଧନ୍ତି, କେମିତି ଜାଣିବା କାହା ଘର କେଉଁ ପ୍ରଦେଶରେ ?"

ଭାବିଲା ପରି ହୋଇ ହଠାତ୍ ଆବିଷ୍କାର କଲାପରି ପଚାରିଲା 'କିନ୍ତୁ ସତ କଥା, ଫଟୋ ତ ଥିବ ଆପଣଙ୍କ ପାଖେ ?"

ପଟୋଉଣୀର ମୁହଁ ଶେତା ପଡ଼ିଗଲା । କହିଲା "ଫଟୋ ଅଛି ଘରେ, ଆଣିବାକୁ ଭୁଲିଗଲି ।"

ଆଶ୍ୱାସନା ଦେଇ ମମ୍‌ପିଲ୍ଲୀ କହିଲା 'କିଛି ଚିନ୍ତା ନାହିଁ । ଆଜି ନ ହେଉ । ଚିଠି ଲେଖିଲେ ଘରୁ ତ ଆସିଯିବ । ହୁଏତ ଆଠ ଦଶ ଦିନ ଲାଗିବ । ଆସିବ ତ ?"

ପଟୋଉଣୀ ମୁହଁ ଶୁଖିଗଲା । ସେ ଆଉ ଅନୁମତିକୁ ଅପେକ୍ଷା କଲା ନାହିଁ, ଉଠିପଡ଼ି ବାଥ୍‌ରୁମ୍‌କୁ ଚାଲିଗଲା ।

ଫେରିଲାବେଳକୁ ସେ ଘରେ ଆଉ ଜଣିଅଟିଏ, ମମ୍‌ପିଲ୍ଲୀ ବୟସର, କଳା ମିଶ୍‌ମିଶ୍, ଗୋଲ ମୁହଁ, କୁନ୍ଦିଲା ପରି ଦେହ, ମୁଣ୍ଡରେ ବଡ଼ କୁଙ୍କୁମ ଟିପା, ବାଚହାତି ବାଇଗଣି ଶାଢ଼ୀଟିଏ ପିନ୍ଧିଛି ତେଲ ଚିକ୍ ଚିକ୍ ମୁଣ୍ଡ, ଗଭାରେ ଫୁଲ ପତ୍ର, ନାକରେ କାନରେ ଫୁଲ, ହାତରେ ଶଙ୍ଖା, କାଚ, ସରୁ ସୁନା କାଚ, ବେକରେ ସୁନା ହାର । ସାନ ସାନ ଦୂର ଦୂର ଛଡ଼ା ଗୋଲ ଗୋଲ ଆଖି ଓ ଚେପ୍‌ଟା ନାକ ସେ ମୁହଁକୁ ଗୋଟିଏ ମଧୁର ନୀରବ ଗାମ୍ଭୀର୍ଯ୍ୟ ଦେଇଥିଲା ।

ମମ୍‌ପିଲ୍ଲୀ ଚିହ୍ନା କରେଇ ଦେଲା, କହିଲା "ମୋ ସାଙ୍ଗ ଲୀଳା ରୁକ୍ମିଣୀ । ପିଲାଦିନୁ ଏକା ସଙ୍ଗେ ପଢ଼ିଲୁଁ, ବିଦେଶରେ ବି ଏକ ସଙ୍ଗେ ଥିଲୁ, ପୁଣି ଭାଗ୍ୟ ଏମିତି ଯେ ଏକାଠି ଏକା ସଙ୍ଗରେ ଚାକିରି କଲୁଁ ।" ଟେବୁଲରେ ଆଉଁସି ଦେଲା । କହିଲା "ଲୀଳା, ତୋ ଦେବ୍ ବି ସାହାଯ୍ୟରେ ଆସିବ ।" ପଟୋଉଣୀର କାବା କାବା ଆଖିକି ଚାହିଁ କହିଲା "କେମିତଣେ କି ଏ ଲୀଳା ? ଦେବ୍‌କୁ ବିଶ୍ୱ ହେବ । ଦେବ୍ ଏଠି ଆମରି ସହକର୍ମୀ ଜଣେ । ମନ ମାନିଲା ତ, ପୋଷାକ ବଦଳେଇ ପିନ୍ଧିଲା ଶାଢ଼ୀ ଆଉ ଗହଣା, ଲୀଳା ନାଁ ବି ବଦଳେଇ ହେଲା, ରୁକ୍ମିଣୀ ଦେବୀ, କିନ୍ତୁ—" ତାକୁ କୁଣ୍ଢେଇ ଧରି, "ମୋର ସେଇ ପୁରୁଣା ଲୀଳା, ତେଣୁ କହେଁ ଲୀଳା ରୁକ୍ମିଣୀ ।"

ଲୀଳା ରୁକ୍ମିଣୀ ଲଜ୍ଜିତ ହୋଇ ତୋହ୍ଲା-ମୁହଁ କଲା । କଣ କହିଥାନ୍ତା, ତା ଓଠ ଥରିଲା, କିଛି କହିଲା ନାହିଁ । ମମ୍‌ପିଲ୍ଲୀ କହିଲା—

"ଦେବ୍ ଭାରି ବଢ଼ିଆ ପିଲା, ଏତେ ମେଳାପୀ । କେବେ ସିନା ବାହା ହେବ, ଅଜଣା ଲୀଳାକୁ ଦଣ୍ଡେ ନ ଦେଖିଲେ ବଣା । ଆଉ କଣ ଯେ ଲୀଳା ଅଛି ? ଖାଲି ଅନେଇଛି ଅଫିସ କେତେବେଳେ ଛୁଟି ହେବ । ସେଉଠୁ ଚାଲିଲେ ଦିହେଁ, ଗାଈ ପଛେ

ପଞ୍ଜେ ବାଛୁରୀ ପରି । ମ୍ୟାଚ୍ ଦେଖି, ସିନେମା ଦେଖି, ପାର୍କ ବୁଲି, ଫେରନ୍ତୁ ହୋଟେଲ । ବାଃ କେଡ଼େ ମଜା । ସତ କହୁଚି, ହିଂସା ହଉଚି ।"

ଲୀନା ପାଟିକଲା "ଧ୍ୟାତ୍ ଧ୍ୟାତ୍ ।"

"କଣ ? ଗୁମର ଫିଟେଇ ଦେଲି ? ୟାଙ୍କୁ ଅଉ କି ଲାଜ ? ସେ ବି ତ ଆମରି ପରି ଜଣେ, ମାନେ, ତୋରି ପରି, ୟାଙ୍କର ବର ହଜିଛି, ତତେ ସେ—ବର ମିଳିଚି, ତୋ ମନ ଆଜି ଯାହା ତା ସେ କଣ ବୁଝିପାରୁ ନ ଥିବେ ? ସବୁ ବୁଝୁଥିବେ ।"

ଏତେବେଳକେ ପଠୋଉଣୀ ମୁରୁକି ମୁରୁକି ହସିଲା । କିନ୍ତୁ ମନ ଭିତରେ ବିଷାଦ ଅହୁରି ବଢ଼ି ବଢ଼ିଗଲା । ଯେ ହେଉ ସେ ଲୀନା, ନିଜକୁ ସେ ତା ସଙ୍ଗେ ତୁଳନା ନ କରି ରହି ପାରିଲା ନାହିଁ, ୟାର ସୂର୍ଯ୍ୟ ଉଦେ ହେଲାଣି, ତାର ଯେ କାହିଁ ମେଘଉଡାଳ କରିଛି, ସୂର୍ଯ୍ୟ ଅଛି କି ବୁଡ଼ିଛି ସେ ଜାଣେ ନାହିଁ ।

ଲୀନା ଘଣ୍ଟା ଦେଖିଲା । ମମ୍ ପିଲ୍ଲୀ କହିଲା "ଦେଖ, ପୁଣି ମୋର ଦୁର୍ବୁଦ୍ଧି । ସାଢ଼େ ଓ୍ଵରି ପରେ ଦଶ ମିନିଟ୍ ହେଲାଣି, ଦେବ୍‌କୁ ବି ଫୋନ୍ କଲି ନାହିଁ ।"

ଟେଲିଫୋନ୍‌ର ଚକ ବୁଲେଇ ଦେବ୍‌ର ନମ୍ବର ଲଗେଇଲା । କହିଲା "ନା, ସେ ଗଲାଣି । ହଉ ଲୀନା, ଦେଖା ହେଲେ ତାକୁ କହିବୁ, କ୍ୟାନାଲିଚର୍ଣ୍ଣ "

ପଠୋଉଣି କହିଲା 'କାଙ୍ଗାଳି ଚରଣ ।"

"ହଉ, କାନାଲିଚର୍ଣ୍ଣ ଶର୍ମା, ଓଡ଼ିଶାର ଲୋକ, ଏଠି କାମ କରନ୍ତି – ଖୋଜିବ । ସେ ତ ସବୁ ପାରେ ।" ପଠୋଉଣୀକୁ କହିଲା "ଆପଣ କୋଉଠିକି ଯିବେ ?" ପଠୋଉଣୀ ତା ହୋଟେଲ ଠିକଣା କହିଲା । ମମ୍ ପିଲ୍ଲୀ କହିଲା "ନା-ନା, ହୋଟେଲରେ ରହିବେ ନାହିଁ । ଆମ ଘରେ ରହିବେ, ଓ୍ଵଳନ୍ତୁ ମୁଁ ଯିବି ଆପଣଙ୍କ ଜିନିଷପତ୍ର ନେଇ ଆସିବି ।"

ପଠୋଉଣୀ ଆପତ୍ତି କଲା, "ଥାଉ, କାହିଁକି ?"

"ନା-ନା, ହୋଟେଲ ଆପଣଙ୍କୁ ଭଲ ଲାଗିବ ନାହିଁ । ଆମ ଘର, ମୁଁ ଓ ମୋ ବୋଉ କିଏହିଁ ଥାଉଁ, କାଲି ନିଶ୍ଚୟ ମିଷ୍ଟର ଶର୍ମା ମିଳିଯିବେ, ସେ ପର୍ଯ୍ୟନ୍ତ ତ ଆମେ ଏକାଠି ସୁଖ ଦୁଃଖ ହେବା, ନା କଣ ?"

"ଆପଣମାନେ ମୋ ପାଇଁ ହଇରଣ ହେବେ, କାହିଁକି ? ମୁଁ ତ ବେଶ୍ ଅଛି –"

"ନା-ନା, ହଇରଣ କାହିଁକି ? କେହି ହଇରଣ ହେବା ନାହିଁ । ଖାଲି ଆମ ଦେଶର ଖାଦ୍ୟ ଆପଣଙ୍କ ପେଟରେ ଚଳିଲେ ହେଲା, ଆମେ ତ ପୁଣି ନିରାମିଷ ଖାଉ । ନା ଜାତିରେ ବାଧା ପଡ଼ିବ ? ତେବେ ହୋଟେଲମାନଙ୍କରେ ତ ସବୁ ଜାତି ରହନ୍ତି, ମୋପଲା ପଠାଣ, ମୁସଲିମ୍—"

"ଛି ଛି—" ପଠୋଉଣୀ କହିଲା, "ନେତୃତ୍ଵଙ୍କ କି ଅଡିମ କଥା ।"

ଆଇଲାନ୍ ମମ୍ ପିଲ୍ଲୀ ତାକୁ କୁଣ୍ଢେଇ ପକେଇଲା, କହିଲା "ତୁମେ ମୋର ଭଉଣୀ । ଆମର ଜାତି ଆମର ଧର୍ମ ଗୋଟିଏ, ମଣିଷ ।"

ବିଦେଶ ଜାଗାରେ ଆଇଲୀନ୍‌ର ସାହାଯ୍ୟ ପାଇ ପଠୋଉଣୀର ମନ ଭୁଲିଗଲା, ଆଶ୍ଚର୍ଯ୍ୟ ଲାଗୁଥାଏ କେଡ଼େ ଚଞ୍ଚଳ ଏ ଝିଅଟି ତାକୁ ଆପଣାର କରିନେଲା । ଅତି ସ୍ନେହୀ ମା'ଝିଅ ଦୋ'ଟି । ଆଗରୁ ଜଣାନାହିଁ ଶୁଣାନାହିଁ ସେମାନେ ତାକୁ ଆପଣାର କରିନେଲେ, ଅଥଚ ଏକଥା ଜଣେଇଜଣା ଯେ ସେ ସେମାନଙ୍କର କୌଣସି କାମରେ ଆସିବ ନାହିଁ । ମା ମେରିୟା ଦେବୀ ତାଙ୍କ ଠାକୁର ଘରେ ଆଖି ଛଳ ଛଳ କରି ଗଦଗଦ ହୋଇ ଯେତେବେଳେ ତା ପାଇଁ ଭଗବାନଙ୍କୁ ଗୁହାରୀ କଲେ ସେତେବେଳେ ତା ଆଖିରୁ ଦର ଦର ବୋହୁଥାଏ । ଖାଲି ଘର, ତଳେ ଗାଲିଚା ପଡ଼ିଛି । ଗୋଟିଏ ଆସ୍ଥାନ ଉପରେ ଥୁଆ ହୋଇଛି କଳା ଦରପୋଡ଼ା କାଠର ଛବିଟିଏ, ପାଲିସ୍ ହୋଇଛି, ଗୋଟିଏ ପାହାଚ ତଳେ ଲୋବାନ୍ ବତୀଟିଏ କୁହୁଳି କୁହୁଳି ବାସ୍ନା ଛାଡ଼ୁଛି, ଜଳୁଛି ଗୋଟିଏ ମହମବତ । ଫୁଲ ଫଳ ନାହିଁ, ଆଧିବିଧି ନାହିଁ । ଆଣ୍ଠୁମାଡ଼ି ମେରିଆ ତା ଆଗରେ ବସିଛନ୍ତି । କଡ଼ିରେ ଆଇଲୀନ, ଆଉ ପଠୋଉଣୀ । ଘଣ୍ଟି ବାଜୁନାହିଁ, ମନ୍ତ୍ର ପଢ଼ା ହେଉନାହିଁ । ହାତଯୋଡ଼ି କାତର ହୋଇ ମେରିଆ କଥା କହି ଲାଗିଛନ୍ତି ।

"ହେ ପ୍ରଭୁ, ତୁମର ଏ ଝିଅଟିର ଦୁଃଖ ଫେଡ଼ । ଚାରିମାସ ହେବ ତା ସ୍ୱାମୀଠୁ ଚିଠି ପାଇ ନାହିଁ । ଶହ ଶହ ମାଇଲ ଦୂରରୁ ଧାଇଁ ଆସିଛି ତାକୁ ଭଲ୍‌ସିବ ଭେଟିବ ବୋଲି, ଦୁଃଖୀର ସହାୟ କିଏ ଅଛି ତୁମ ଛଡ଼ା ? ତୁମେହିଁ ତ ସବୁ ଦେଖୁଛ ଜାଣୁଛ, ତୁମେହିଁ ତ ସବୁ କରୁଛ, ସମସ୍ତଙ୍କି ଜନ୍ମ ଦେଇଛ, ପୋଷୁଛ ପାଳୁଛ । କିଏ ଅଛି ତୁମ ବିନା ଆଉ ? ତୁମେ ୟା ଦୁଃଖ ଦୂର କର ପ୍ରଭୁ, କାଲି ତାକୁ ତାର ସ୍ୱାମୀ ସଙ୍ଗେ ଭେଟେଇ ଦିଅ ।"

ଲୁହ ଜାଲୁ ଜାଲୁ ଆଖିରେ ପଠୋଉଣୀ ସେହି କାଠର ଛବିକୁ ଅନାଇଲା, ଲୋବାନ୍ ଧୂପର ଧୂଆଁ ତା ଆଗରେ ଗୋଟାଏ ଘୁରୁଥିବା ସରୁ ପର୍ଦ୍ଦା କରୁଛି, ପୁଣି ସାପେଇ ସାପେଇ ଉପରକୁ ଉଠି ଯାଉଛି । ପୁଣି ଶୁଭିଲା ମେରିଆଙ୍କ ଗୁହାରୀ—

"ହେ ପ୍ରଭୁ, ଏ ଜଗତର ନାଥ, ଏ ସୃଷ୍ଟିର ନାଥ, ଏ ବିଶ୍ୱ ବ୍ରହ୍ମାଣ୍ଡର ସ୍ରଷ୍ଟା, ଏକ ଅଧିକାରୀ, ଏକ ରାଜା, ଜଗତର ପ୍ରାଣୀଙ୍କ ଦୁଃଖକୁ ଆପେ ଭୋଗିଥାଅ ତୁମେ । ହେ କରୁଣାମୟ ମଙ୍ଗଳମୟ, ପରର ହିତ ପାଇଁ ତୁମେ ତୁମ ପ୍ରିୟତମ ସନ୍ତାନମାନଙ୍କୁ ଶରୀର ଦେଇଥାଅ । ହେ ଆର୍ତ୍ତର ଏକାମତ୍ର ସହାୟ ଏକମାତ୍ର ତ୍ରାଣକର୍ତ୍ତା ଏ ଦୁଃଖୀର ଲୁହ ତୁମେ ପୋଛିଦିଅ—"

ପଠୋଉଣୀ ସେହି କାଠ ଛବିକୁ ଚାହିଁଛି । କାହିଁ କାଠ ଛବି ? ଏ ତ ସାକ୍ଷାତ ଜଗନ୍ନାଥଙ୍କ ମୁହଁ ଆଖି, ଧଳା ଗୋଲେଇ ଜ୍ୟୋତିମଣ୍ଡଳୀ ଭିତରୁ କଳା ଆଖିଯୋଡ଼ିକ ତାରି ଆଡ଼କୁ ଚାହିଁଛି । ସେ କାଠ ହୋଇ ରହିଲା, ଭୁଲିଗଲା ସେ କିଏ, କୁଆଡ଼େ ଆସିଛି, କୋଉଠି ଅଛି, ଯେମିତି ଶୂନ୍ୟରେ ନିସ୍ତବ୍ଧ ହୋଇ ସେ ଅଟକି ରହିଛି, ଚେତନା ନାହିଁ ।

ହୋସ୍ ହେଲାବେଳକୁ ଦେଖିଲା ସେଠି ସେ ଏକୁଟିଆ ଅଛି, ସାମ୍ନାରେ ସେହି କାଠ ଛବିଟି, ମହମବତୀଟି ଜଳୁଛି ।

ଲଜ୍ଜ ହୋଇ ସେ ଗୋଡ଼ତଳେ ପଡ଼ିଗଲା । ଉଠିଲା । ମୁହଁ ପୋଛିଲା ବାହାରିଗଲା । ମନରେ ଅଭୟ ଆସିଛି, ତା ସ୍ୱାମୀ ଭଲ ଅଛନ୍ତି । ସେ ତାକୁ ପତ୍ରରନ୍ତୁ କି

ନ ପଗ୍ଭରନ୍ତୁ । ତାହେଲେ କାହିଁକି ସେ ଆଉ ଅପେକ୍ଷା କରିବ ? ନିଜର ଅଭ ରୁଅ ଦିଟାଙ୍କର ହିତ ଖୋଜିବାକୁ ? ସେ ଭାର ବି ତାର ନୁହେଁ, ଯେଉଁ ଅନ୍ତର୍ଯାମୀ ସବୁଠି ଅଛି, ସବୁ ଦେଖୁଛି ଜାଣୁଛି, ସବୁ ଭାର ନେଇଛି, ସେ ଭାର ତାରି ।

ଖ ଇଲାବେଳେ ରାତିରେ ସେହି କଥା ସେ ଆଇଲୀନ୍‌କୁ କହିଲା । ମେରିଆ ତାର ଉତ୍ତର ଦେଲେ । କହିଲେ "ସବୁ ଭାର ଈଶ୍ୱରଙ୍କର ଏଥିରେ ସନ୍ଦେହ ନାହିଁ ମା; କିନ୍ତୁ ମଣିଷ ବି ତ ତା ଜନ୍ମ ସାର୍ଥକ କରିବ । କେମିତି ? ସେ ଉଦ୍ୟମ କରିବ । ପାରୁ ପର୍ଯ୍ୟନ୍ତ ତାର ଶେଷ ନିଶ୍ୱାସ ଥିବାଯାକେ ସେ ତାର ସବୁ ବୁଦ୍ଧି ବୃତ୍ତି ଲଗାଇ ପରିଶ୍ରମ କରି ଚେଷ୍ଟା କରୁଥିବ । ଆଉ ବିଶ୍ୱାସ ରଖିଥିବ ଯେ ଈଶ୍ୱର ତାକୁ ସିଧା ରାସ୍ତା ଦେଖାଇବେ, ଅନ୍ଧାରରେ ଆଲୁଅ ଦେଖାଇବେ, ସତ୍ ବୁଦ୍ଧି ସତ୍‌ବିଚାର ଦେବେ । ତୁ ଆସିଲୁ, ଠିକ୍ କଲୁ । ଈଶ୍ୱରଙ୍କୁ ସବୁ ଛାଡ଼ି ଦେଉଛୁ, ଭାରି ଠିକ୍ କଥା; କିନ୍ତୁ ଅଧାରୁ ହଟି ପଳେଇବୁ ସେ ଠିକ୍ ହେବ ନାହିଁ । ମୋର ବିଶ୍ୱାସ ନିଶ୍ଚୟ କାଲି ତୁ ତୋ ସ୍ୱାମୀଙ୍କୁ ଭେଟିବୁ ।"

ଆଇଲୀନ୍ କହିଲା, "କାଲି ଅଫିସ ଖୋଲୁ ଖୋଲୁ ତୁମେ ମୁଁ ଲୋକଟା ଦେଖ୍ ଚାରିଜଣଯାକ ସେହି କାମରେ ଲାଗିଯିବା, ନିଶ୍ଚିନ୍ତ ରହ ।"

ବେଳୁ ବେଳ ଏମାନଙ୍କ ସ୍ନେହରେ ସେ ଋଣୀ ହୋଇଯାଉଛି, ସେ ସ୍ନେହ ଯେପରି ଅଜଣା ଢୋବର କାଦୁଅ ଗଣ୍ଡ, ସେ ବୁଡ଼ି ବୁଡ଼ି ଯାଉଛି, ପଳାଇବାକୁ ଚାହେଁ । କେତେବେଳେ ଲାଗୁଛି ସେ ଓ ଏମାନେ ଏକ, ଅଭିନ୍ନ, ପୁଣି ଚେତି ଉଠୁଛି, ସେ ଓ ସେମାନେ ସମ୍ପୂର୍ଣ୍ଣ ଭିନ୍ନେ ସେ କାହୁଁ-ଅଇଲା । ଆହୁରି ସ୍ୱାଭାବିକ ହେଲା, ପରିସ୍ଥିତି ମନେ ପଡ଼ିଲା, ଲାଜ ମାଡ଼ିଲା । ଏ କଣ ସେ କହୁଛି ? ଆସି ଚାଲି ଯିବ ? ସେ କଣ ପାଗଳ ? ଏମାନେ କଣ ଭାବୁଥିବେ ? ଉଦାସ ହୋଇ କହିଲା "ଆଉ ପାରୁ ନାହିଁ ମା—"

ମେରିଆ ତାର ମା' ଡାକରେ ମୁହଁକୁ ତଳକୁ ପୋତିଲେ । କହିଲେ "ପାରିବୁ ମା, ସେ ବଳ ଦେବେ । କା'ହାର କେତେ ଯେ ଦୁଃଖ । ଜାଣିବ କିଏ ତାଙ୍କ ବିନା ? ମନେ ରଖିଥିବ, ତୁମର ଯେତେ ଦୁଃଖ ହୋଇଥାଉ ତାଙ୍କଠୁ ବଳି ଅଛ ଦୁଃଖ କାହାର ? ଜଗତର ସବୁ ଦୁଃଖରେ ସେ ଜର୍ଜରିତ, ଦୁଃଖର ପାହାଡ଼ ତାଙ୍କରି ମୁଣ୍ଡରେ । ତଥାପି ସେ ଆପଣା କାମରେ ଡିଲେ ହେଲେ ଭୁଲ୍ କରନ୍ତି ନାହିଁ, ସବୁ ଠିକ୍ ଚାଲେ, ସେ ସବୁ ଚଳତ ଉତ୍ସ, ତାଙ୍କ କଥା ଭାବି ଧୈର୍ଯ୍ୟ ଧର ।"

ଆଇଲୀନ୍ ସ୍ନେହରେ ତା ମା ମୁହଁକୁ ଅନାଇଁ ନ । ପଟୋଉଣୀ ଦୀର୍ଘଶ୍ୱାସ ପକାଇଲା ।

ସକାଳ । ଅଫିସ୍ ଯିବାବେଳ । ଘରେ ଆଇଲୀନ କେତେ ସାଧାସିଧା, ପୁଣି ସେ ବେଶ ହୋଇ ବିଚିତ୍ର ଜନ୍ତୁ ପରି ହୋଇ ପଦାକୁ ବାହାରିଲା ।

ପୁଣି ଦିହେଁ ସାମସନ୍ ଆ ଓ ନିଷ୍କିମ୍ କୋ ଅଫିସରେ ପହଞ୍ଚିଲେ । ଅମ ମାଣ୍ଡେଇ ରହିଲେ ଲିଫଟ ପାଖେ । କିଏ ଆସିବେ ସେମାନଙ୍କୁ ଦେଖିବେ । କିନ୍ତୁ କାମ ଭିଡ଼ ଲାଗି କେହି କେହି ଆଗରୁ ବି ଆସିଥାନ୍ତି । କିଏ ଲିଫଟ୍ ପାଇଁ ଅପେକ୍ଷା କରେ ନାହିଁ ଅରପଟେ ସିଢ଼ିରେ ଚଢ଼େ । କମ୍ପାନୀ କାମରେ କାହାକୁ ଏଣେତେଣେ ବି ଯିବାକୁ

ପଡ଼େ, ଲୋକଙ୍କୁ ଭେଟି କାମ ଛିଣ୍ଡେଇ ଡେରିରେ ଅଫିସକୁ ଫେରନ୍ତି । ଶର୍ମା ମିଳିଲେ ନାହିଁ । ଆଇଲୀନ୍ ତାକୁ ଘେନି ପ୍ରତି ମାହାଲାରେ ଏମୁଣ୍ଡ ସେମୁଣ୍ଡ ବୁଲି ଆସିଲା । ଅଫିସକୁ ଯେଉଁ କର୍ମଚାରୀ ଆସନ୍ତି ସେ ଭିତରେ ପଶି କବାଟ କିଳନ୍ତି । ବାହାରେ, ଚହଲୁଥିବା ଲୋକଙ୍କ ଭିତରେ ଶର୍ମା ନାହାନ୍ତି । କୋଠରୀମାନଙ୍କ ନାମଫଳକ ଥୋଡ଼ାଏ ସେମାନେ ଦେଖି ଦେଖି ଗଲେ । ପଞ୍ଚମ ମାହାଲା ର ଆଇଲୀନ୍ ର ନିଜ ବଖୁରିରେ ବସିଲେ । ଆଇଲୀନ୍ ତା ଆଡ଼କୁ ଖଣ୍ଡେ ଇଂରାଜି ପତ୍ରିକା ବଢ଼ାଇ ଦେଲା । ସେ କହିଲା ସେ ଦେବୁଟାରୁ ତିନିଟା ଭିତରେ ଆଉ ଭିନେ ଦୂକାର ଖୋଜା ଆରମ୍ଭ କରିବ, କମ୍ପାନୀର ଏ କୋଠାରେ ଥିବା ଛଅଟିଯାକ ବିଭାଗକୁ ସେ ଯିବ, ପ୍ରତି ବିଭାଗର କ' ଖ' ଶ୍ରେଣୀର କର୍ମଚାରୀଙ୍କ ତାଲିକା ସେ ଦେଖିବ, ଫୋନ୍‌ରେ ଡାକି ମଗାଇଲେ ମିଳିପାରେ, ଖାଲି ଛପା ତାଲିକାରେ ବି କାମ ହେବ ନାହିଁ । କାନାଲିଚର୍ଣ୍ଣ ଶର୍ମା ପରିବର୍ତ୍ତେ ଖାଲି କେ. ଶର୍ମା ବୋଲି ଲେଖାଥିବ, ଖାତା ଦେଖିଲେ ଜାଣିପାରିବ କେ. ମାନେ କାନାଲିଚର୍ଣ୍ଣ କି କ୍ରିଷ୍ଣସ୍ୱାମୀ କି କେନେଥ୍ । ସେତିକିବେଳେ କାମ ଭିଡ଼ କମ୍, ଲୀଜା ଓ ଦେବ୍ ବି ସାହାଯ୍ୟ କରିବେ । ଦେଢ଼ଟ ଯାକେ ତାର ବେଶୀ କାମ ଭିଡ଼ ।

ଆଇଲୀନ୍ ତା କାମରେ ଲାଗିଲା, ଟେବୁଲରେ ଫାଇଲ୍ କାମ, କେତେବେଳେ ଯା. ଆସ ।

ପଠୋଉଣୀ ପତ୍ରିକା ଉପରେ ମୁହଁ ବୁଲେଇ ଦେଉ ଗୋଟାଏ କୋଣରେ ବସିଥାଏ । କେତେବେଳେ ପଦାକୁ ବାହାରି ପଡ଼େ, ସେଠି ବି ଖୁବ୍ ଲମ୍ବା ହୋଇ ଦି ଧାଉଡ଼ି ଘର, ମଝିରେ ପିଣ୍ଡା ପରି ବାଟ, ଉପରେ ଛାତ, କେତେବେଳେ ଲିଫ୍‌ଟରେ ଓହ୍ଲାଏ । ତଳ ମାହାଲାରେ ବୁଲେ । ଲେଉଟି ମମ୍ ପିଲ୍ଲା ବଖରାକୁ ଆସେ ।

ଘଣ୍ଟାରେ ଗୋଟାଏ ପଦର । ଲୀଜା ଆସିଲା । କହିଲା "ଦେବ୍ ଭାରି କାର୍ଯ୍ୟବ୍ୟସ୍ତ ଥିଲା । ବର୍ତ୍ତମାନ ଫୋନ୍‌ରେ ପାଇଲି । ପଚାରିଲି ମିଷ୍ଟର ଶର୍ମା ବୋଲି ଜଣେ, କ କି ଖ ଶ୍ରେଣୀର, କାନାରିଜ୍ ଲୋକ, ଚିହ୍ନିଛ ତାଙ୍କୁ ? କହିଲା 'ଚିହ୍ନିବି ନାହିଁ ? କାନାରିଜ୍ ତ ? ଆରେ କିଏ ତାଙ୍କୁ ନ ଚିହ୍ନେ ? କେତେଥର ତାଙ୍କ ସଙ୍ଗେ ଟେନିସ୍ ଖେଳିଛି । ଭାରି ଭଲ ଖେଳନ୍ତି । ଦରକାର ଅଛି ?' କିଛି କହିଲି ନାହିଁ । ଯାହଉ, ଆଉ ଚିନ୍ତା ନାହିଁ ।"

ଆଇଲୀନ୍ କହିଲା, "ତୁଣ୍ଡୀ ଆଉ ଗଛରେ ଫଳନ୍ତି କି ? ସେ ପରା ଓଡ଼ିଶାର ଶର୍ମା ?"

"କହିଲୁ ପରା କାନାରିଜ୍, ଶର୍ମା !"

"ଧେତ୍ତେରିକା, କାନଲିଚର୍ଣ୍ଣ ତାଙ୍କ ନାଁ।"—ଆଇଲିନ୍ ମମ୍ ପିଲ୍ଲା ପାଟିରେ 'କାଙ୍ଗାଳି-ଚରଣ' ଶବଦଟି ଉଚ୍ଚାରଣ ହୁଏ ନାହିଁ । ପଠୋଉଣୀର ଶୁଖିଲା ମୁହଁକୁ ଚାହିଁ ସେ କହିଲା "ଲୀଜା ବୁଝିପାରି ନାହିଁ । ହଉ, ଚିନ୍ତା ନାହିଁ । ଖୋଜି ବାହାର କରିବା ଆମେ ।" ତାପରେ ସେ ତାର ଯୋଜନା ବଖାଣିଲା, କହିଲା "ଚାଲ ଏଥର ଦେବ୍‌କୁ ଧରିବା ।"

ସେମାନେ ଲିଫ୍ଟ ଆଡ଼କୁ ଚାଲିଲେ । ଗୋଟାଏ ଲିଫ୍ଟ ଠିଆ ହୋଇଛି । ଛ ମହାଲରୁ ଲୋକ ଆଣିଥିଲା, ପାଞ୍ଚ ମହାଲାରୁ ଥୋଡ଼ାଏ ପଶିଲେଣି । ଖଣ୍ଡେ ଦୂର ଅଛି । ଚାହିଁ ଦେଇ ବିଶୁଦ୍ଧ ଓଡ଼ିଆରେ ପଠୋଉଣୀ ପାଟିକଲା—

“ୟେ ତେମେ ଏଇଠି ତମକୁ ମୁଁ ଚାଇଡଯାକ—ଆରେ ରହ ରହ ରହ—” ଧଇଁସଇଁ ହୋଇ ଦଉଡ଼ିଲା ।

କିନ୍ତୁ ଠିକ୍ ସେତିକିବେଳେ ଲିଫ୍ଟଟା ତଳକୁ ଓହ୍ଲେଇଗଲା । ଆଗରେ ଗୋଟାଏ କାଚର କାନ୍ଥ । ତା ସେ କରେ ଶୂନ୍ୟ, ଅନ୍ଧାର ।

ଲୀଜା ଓ ଆଇଲୀନ୍ କାବା ହୋଇ ପରସ୍ପରଙ୍କ ମୁହଁକୁ ଓ ତା ମୁହଁକୁ ଅନାଇଁଲେ । ଓଡ଼ିଆ ଭାଷା ସେମାନେ ତାଙ୍କ ଜୀବନରେ କେବେ ଶୁଣି ନାହାନ୍ତି । ପଠୋଉଣୀ ବିକଳରେ ଛଟପଟ ହୋଇ ଏକର ସେକର ହେଉଛି, ଦୀର୍ଘଶ୍ୱାସ ଓ କାନ୍ଦଣା ଭିତରେ ଧୀରେ ଧୀରେ ବିଲିବିଲେଉଛି । “ଚାଲିଗଲେ । ହଜିଗଲେ । ମୁଁ କଣ କରିବିଟି । କଣ କରିବିଟି ।” ଭୁଲିଯାଇଛି ଯେ ଘର କି ବିଦେଶ, ଦିନ କି ରାତି । ଛାତି ଦୀର୍ଘଶ୍ୱାସରେ ଉଚ୍ଛୁଳୁଛି । ଭାଷା ନ ବୁଝିଲେ ସୁଦ୍ଧା ଶବ୍ଦ ଓ ସ୍ୱରର ଅଭିବ୍ୟକ୍ତିରୁ ସେମାନଙ୍କର ଧାରଣା ହୋଇଥିଲା ଯେ ପଠୋଉଣୀ ତା ସ୍ୱାମୀକୁ ଚିହ୍ନି ପାରିଲା ବୋଲି ଭାବୁଛି । କିନ୍ତୁ ସବୁ ତ ଚିହ୍ନା ମୁହଁ ଭଳି ଲାଗିଲା, ମଝିରେ ଠିଆ ହୋଇଥିଲା ଦେବ । ତେବେ କଣରେ କିଏ ଆଉ ଥିବେ କି କାହା ପିଠିଆଡ଼େ ଥିବେ, ଲିଫ୍ଟରେ ଚକାଚକି ଭିଡ଼ ।

ଆଇଲୀନ୍ ପଚାରିଲା “ଚିହ୍ନିପାରିଲ ତା ହେଲେ ?” ଲୁହରେ ଆଉ କଥା କହି ହେଉନାହିଁ, ପଠୋଉଣୀ ମୁଣ୍ଡ ହଲେଇ ଜଣେଇ ଦେଲା, ହଁ । କିନ୍ତୁ ଦକ୍ଷିଣର ମୁଣ୍ଡହଲା ସଂକେତ ଉତ୍ତର ଭାରତର ଓଲଟା, ବାଁରୁ ଡାହାଣକୁ ହେଲେ ତା ଅର୍ଥ ‘ହଁ’, ଆଗକୁ ପଛକୁ ହେଲେ ତା ଅର୍ଥ ‘ନାହିଁ’ ।

ନୀଜା କହିଲା “ନା ସେ ଚିହ୍ନିପାରି ନାହାନ୍ତି ।”

ଆଇଲିନ୍ କହିଲା “ନା ।”

ପଠୋଉଣୀ ତଣ୍ଟି ସଫା କରି ସଙ୍ଗେ ସଙ୍ଗେ ଇଂରେଜିରେ କହିଲା “ଚିହ୍ନିଲି, ମୁଁ ଚିହ୍ନିଲି । ସେ ମତେ ଦେଖି ପାରିଲେ ନାହିଁ ପରା । ଯିବା, ଚଞ୍ଚଳ ତଳକୁ ଯିବା ।”

ଆଇଲୀନ୍ ଧୀର ସ୍ୱରରେ କହିଲା “ଚିହ୍ନିଲ । ତାହେଲେ ତ ସହଜ । ମଝିରେ ଦେବ୍ ଥିଲା, ଆଉ କିଏ କିଏ ଥିଲେ ସେ କହି ପାରିବ ଯେ । କିନ୍ତୁ ବଡ଼ ଆଶ୍ଚର୍ଯ୍ୟ କଥା, ମତେ ଯେତେଜଣ ଦିଶୁଥିଲେ ସମସ୍ତେ ତ ଚିହ୍ନା ଚିହ୍ନା ଲାଗୁଥିଲେ । ମୋ ଜାଣିବାରେ କାନାଲିଚର୍ଣ୍ଣ୍ ଶର୍ମା ତ କେହି ନ ଥିଲେ । ଆଚ୍ଛା ଚାଲ ଦେବ୍‌କୁ ଧରୁଁ ।”

ପଠୋଉଣୀ କହିଲା “ନା, ତାଙ୍କୁ ଖୋଜିବା, ସେ ଏଇ କୋଠାରେ କେଉଁଠି ନିଶ୍ଚୟ ଥିବେ ।”

ଲୀଜା କହିଲା “ଭଗବାନ ସେଇଆ କରନ୍ତୁ । କିନ୍ତୁ କଥା ହେଲାଣି କେଉଁ ମହାଲାକୁ ସେ ଯାଇଥିବେ ? ଲିଫ୍ଟ ତ ସବୁ ମହାଲାରେ ରହି ରହି ତଳକୁ ଯିବ । ଆଚ୍ଛା ଆସ ।”

ଅନ୍ୟ ଗୋଟିଏ ଲିଫ୍‌ଟରେ ସେମାନେ ତଳ ମାହାଲାକୁ ଗଲେ । ଘୁଞ୍ଚି ଦେଇ ପୁଣି ତଳକୁ । ପୁଣି ତଳକୁ । ଆଇଲୀନ୍ କହିଲା "ଚାଲ ଦେଖୁଁ ଦୋମାହାଲାର ହଲ୍ ଘରେ, ବହୁତ ଲୋକ କଫି ପିଉଥିବେ, ଆରାମ୍ କରୁଥିବେ, ଦେବ୍ ବି ଥାଇପାରେ ସେଇଠି ।"

ଲୀଜା ଥଟ୍ଟା କରି କହିଲା "ଆଚ୍ଛା ତୋର ଦେବ୍ ଦେବ୍, ସତେ ଯେମିତି ସେ ସବୁ ଜାଗାରେ !"

ଦୋମାହାଲାରେ ବଡ଼ ହଲ୍ ଘର । ଲୋକ ଭର୍ତ୍ତି । ସେମାନେ ଗପୁଛନ୍ତି, ମଦ, ଚାହା, କଫି, ଜଳଖିଆ ଖାଉଛନ୍ତି, ଯାହାର ଯାହା ଇଚ୍ଛା । ଏଇ ଅଧଘଣ୍ଟାଟି ଏ ଘରେ ଅନେକେ ପହଞ୍ଚନ୍ତି, ଶ୍ରେଣୀ ବିଚାର ନ ଥାଏ । କାମରୁ ଛୁଟି ଟିକିଏ ମିଳେ ଏତିକି-ବେଳେ, ଏଠି ସେମାନଙ୍କର ଅଳସ ଭାଙ୍ଗିବା, ଫୁର୍ତ୍ତି କରିବା ଜାଗା ।

ଧାଡ଼ି ଧାଡ଼ି ଟେବୁଲ ଚୌକି ମଝିରେ ତିନିହେଁ ଚାଲିଲେ ଘର ମଝିକୁ । ଲୀଜା ପାଟିକଲା "ଦେବ୍ ! ଦେବ୍ !" ଖଣ୍ଡେ ଦୂରରେ ଜଣେ ଯୁବକ ମୁହଁ ଟେକିଲା । ତା ଚାହାଣି ପଦ୍ମୋଦଣୀ ମୁହଁ ଉପରେ ପଡ଼ିଲା ମାତ୍ରେ ସେ ଟିକିଏ ଚମକି ପଡ଼ିଲା । ତା ମୁହଁର ଭଙ୍ଗୀ ବଦଳିଯାଇ ଆସିଲା ସତର୍କ ଭୟର ଚାହାଣୀ । ଆଇଲୀନ୍ ତା ବି ଲକ୍ଷ କଲା । ପୁଣି ଦେଖିଲା ମୁହୂର୍ତ୍ତକେ ସେ ମୁରୁକି ମୁରୁକି ହସିଲା । ତାର ସାଧାରଣ ଭଙ୍ଗୀ ଲେଉଟି ଆସିଲା । ସେଆଡ଼କୁ ହାତ ବଢ଼ାଇ ପଦ୍ମୋଦଣୀ ଇଂରେଜିରେ ପାଟିକଲା "ହେଇଟି ସେ ଏଠି !" ତରତର ହୋଇ ଆଗେ ଆଗେ ସ୍ୟାଣ୍ଡକୁ ମାଡ଼ି ଯାଇ ଓଡ଼ିଆରେ ପାଟିକଲା "ହଇଓ !" ପାଖକୁ ଯାଇ କହିଲା "କାବା ହଉଚ କଣ ? ଚାରିମାସ ହେଇଗଲା, ଚିଠି ଖଣ୍ଡେ ଦେଲ ନାହିଁ । ତମକୁ ଖୋଜିବାକୁ ନିଜେ ଆଇଲି ପରା । ଆସ ଯିବା ।" ଲୀଜା ଓ ଆଇଲୀନ୍ ଆଶ୍ଚର୍ଯ୍ୟ ହୋଇ ସେ ଦୁହିଁଙ୍କ ମୁହଁକୁ ଚାହିଁଥାନ୍ତି । ଦେଖୁଛନ୍ତି, ପଦ୍ମୋଦଣୀ ଖୁସିରେ ଫେଡ଼ି ଉଠିଲାଣି । ଦେବ୍ ବିସ୍ମିତ ହେଲା ପରି ତା ମୁହଁକୁ ଚାହିଁ ଠିଆ ହୋଇଛି, କଣେଇ କଣେଇ ସେ ଦୁହିଙ୍କ ମୁହଁକୁ ଅନେଇ ଦେଉଛି ।

"ପାଟି ଫିଟେଇବ ନାଇଁ ? ରାଗିଛ ?" ପଦ୍ମୋଦଣୀ ହସି ହସି ପଚାରୁଛି ।

ଗମ୍ଭୀର ମୁହଁ କରି ଦେବ୍ କଥା କହିଲା, ଆଗ ପଦ୍ମୋଦଣୀକୁ, ଇଂରେଜିରେ, "କିଏସେ ଆପଣ ଭଦ୍ରମହିଳା ? କି ଭାଷାରେ କହିଲେ ? କଣ କହିଲେ ?" ତାପରେ ଲୀଜାକୁ ଆଇଲୀନ୍‌କୁ "କିଏ ସେ ? ମୋ ସଙ୍ଗେ କଣ ଲୋଡ଼ା ?"

ଲୀଜା ଗମ୍ଭୀର ହୋଇ କହିଲା "ତାଙ୍କ ସ୍ୱାମୀ କେଉଁ କାନାଲିଚର୍ଣ୍ଣ୍ ଶର୍ମା କୁଆଡ଼େ ଏଠି କାମ କରନ୍ତି—"

ଉପରେ ପଡ଼ି ଦେବ୍ ପଚାରିଲା "ଓ ! ସେଥିପାଇଁ ତୁମେ ପଚାରୁଥିଲ କି ସେ ଭ୍ୟାନାରିଜ୍ ଭଦ୍ରଲୋକ ଶର୍ମାଙ୍କ କଥା ?"

"ହଁ ଦେବ୍—"

ତା କଥା ମଝିରେ ପଦ୍ମୋଦଣୀ ଇଂରେଜିରେ ଚିତ୍କାର କଲା "ଦେବ ! ଦେବ ! ତୁମେ ଏଠି ଦେବ୍ ବୋଲେଇଛ । ତୁମେ ବାହା ହେଉଛ ଏ ଝିଅକୁ ! ହା ଭଗବାନ !

ଆମେ ତୁମର କି ଅପରାଧ କଲୁଁ ? ମୁଁ ତୁମ ଖାଇବା ଚାହିଁଛି, ତୁମର ଛୁଆ ତିନିହେଁ ଅନେଇଁଛନ୍ତି ବାପା ଆସିବ । କହ, ଏ କି ପାଲା ? କାଙ୍ଗାଳିଚରଣ ଦେବତା ଶର୍ମା ହୋଇ ସାରି ହେଲଣି ଦେବ୍ ।" ସେ କାନ୍ଦି ପକେଇଲା । ଆଉ ତିନିଜଣ ପାଟିକଲେ "ଦେବ୍ । ଦେବ୍ ।" କେତେ ଲୋକ ଚଉକି ଠେଲିଦେଇ ଉଠିପଡ଼ି ଆଗେଇ ଆସିଲେ । ଶୁଭିଲା "କଣ ହେଲା ? କଣ ହେଲା ।" ଗମ୍ଭୀର ହୋଇ ଦେବ୍ ଇଂରେଜିରେ କହିଲା "କି ହଟହଟା କଥା । ମୁଁ କେବେ ବାହା ହେଲି ଓ ଛୁଆଙ୍କ ବାପ ହେଲି ? ଆପଣ ଏସବୁ କି ଅଦ୍ଭୁତ କଥା କହୁଛନ୍ତି, ମୋ ଇଜ୍ଜତ ହାନି କରୁଛନ୍ତି ଆଜି ? ଆପଣଙ୍କର ନିଶ୍ଚୟ ଭ୍ରମ ହୋଇଛି ନ ହେଲେ ମୁଣ୍ଡ ବିଗିଡ଼ିଛି । ମୋ ନାଁ କାର୍ତ୍ତିଦେବ୍, ମୁଁ ଆପଣଙ୍କୁ କେବେ ଚିହ୍ନିନାହିଁ କି ଦେଖିନାହିଁ ।"

କାନ୍ଦି କାନ୍ଦି ପଦ୍ମୋଦଣୀ କହିଲା "ହଉ, କାର୍ତ୍ତିଦେବ୍ ହୋଇଥା, କାର୍ତ୍ତି କର, ବାପ ଅଜାଙ୍କ ନାଁ ପକାଅ, ମୁଁ ଯାଉଛି, ଫଳ ପାଇବଲି ।" କଇଁ କଇଁ ହୋଇ କାନ୍ଦି ପକାଇ କହିଲା "ଯାଉଛି ଥାଅ ।"

କେତେ ଲୋକ ତା ପାଖକୁ ଆସିଲେ । ପଚାରୁଛନ୍ତି କଣ ହେଲା ? କଣ ହେଲା ? ସେ ଜବାବ୍ ଦେଉ ନାହିଁ । ଆଖି ଦିହାତ ହଲେଇ ବାଟ ଅଡ଼ୋଉଛି । କେତେ ଲୋକ ଘେରି ଗଲେଣି ଦେବ୍‌ଙ୍କୁ, ପଚାରୁଛନ୍ତି ଏସବୁ କି କଥା । ଦେବ୍ ବୁଝୋଉଛନ୍ତି । କୁଆଡ଼ର ପାଗଳୀ ସ୍ତ୍ରୀଲୋକଟିଏ ଆସି ତାଙ୍କୁ କହୁଛି ତୁ ମୋର ସ୍ୱାମୀ ତୋର ଛୁଆ ବାଟେ ଅନେଇଁଛନ୍ତି । ଆଛା ମଣିଷ, କହିଲେ ବୁଝୁନାହିଁ । ପଚାର ଏ ଲୀଜାକୁ । ଲୀଜା ବୁଝୋଉଛି । "କାଲିଠୁଁ ସେ ଆସିଲାଣି, ଆଇଲୀନ୍ ଘରେ ରହିଛି, କହୁଛି ସ୍ୱାମୀକି ଖୋଜି ଆସିଛି । ସ୍ୱାମୀ ନା କାନାଳିଚରଣ୍ ଶର୍ମା, ଘର ଓଡ଼ିଶା ଏଠି ଚାକିରି କରେ, କଣ ସୁପର ଏକ୍‌ଜିକ୍ୟୁଟିଭ୍ ଚାକିରୀ । ଚାରିମାସ ହେବ ସ୍ୱାମୀ ଚିଠି ଦେଇନାହିଁ, ତେଣୁ ସେ ଓଡ଼ିଶାରୁ ଏତେ ବାଟ ଖୋଜି ଆସିଛି । ଆମେ କହିଲୁଁ ଦେବ୍‌କୁ ପଚାରିବା ସେବି ଖୋଜିବ । ଓଲଟି ଦେବ୍‌କୁ କହୁଛି ଏଇ ସେ—"

ଦେବ୍ ବୁଝୋଉଛି "ନିଶ୍ଚୟ ପାଗଳୀ, ନ ହେଲେ ଏତେ ବଡ଼ ଭୁଲ ହୁଅନ୍ତା କାହିଁକି ?"

ପଦ୍ମୋଦଣୀ କାନ୍ଦି କାନ୍ଦି ସତେ ଅବା ଭାଙ୍ଗି ପଡ଼ୁଛି, ତାକୁ କୁଣ୍ଢେଇଧରି ଆଇଲୀନ୍ ନେଇଯାଉଛି । ସ୍ନେହରେ ଫୁସ୍ ଫୁସ୍ କରି କାନ ପାଖେ ଗାଳି ଦେଉଛି "ଛି ଛି । ଏତେ ଲୋକଙ୍କ ଆଗରେ ! ଏମିତି ପିଲାଙ୍କପରି କାନ୍ଦିଲେ ହେବ ନା ? ଲୋକେ କହିବେ ଅଭଦ୍ର, ପାଗଳ । ମୁହଁ ପୋଛ, ଆସ ଚାଲି ମୋ ବଖୁରିକୁ ।" ପଦ୍ମୋଦଣୀ ଆଖି ଅଧବୁଜା କରିଛି, ମୁହଁ ତଳକୁ ପୋତିଛି । ଆଇଲିନ୍ ପଛେ ପଛେ କାଠ କଣ୍ଢେଇ ପରି ଚାଲିଛି । ଘରେ ପଶି କବାଟ ବୁଜି ଖାଷ ହୋଇ ଆଇଲୀନ୍ କହିଲା,

"ଶେଷରେ ବିଚରା ଦେବକୁ ଧରି ପକେଇଲ ତୁମ ହଜିଲା ସ୍ୱାମୀ ବୋଲି । ଆଶ୍ଚର୍ଯ୍ୟ ।"

କାନ୍ଦ କାନ୍ଦ ପଦ୍ମୋଦଣୀ କହିଲା "ସେ ଦେବ୍ ନୁହେଁ, ସେଇ ମୋ ସ୍ୱାମୀ । ପୈତୃକ ନାଁ କାଙ୍ଗାଳି ଚରଣ ଦେବତା, ବ୍ରାହ୍ମଣ ବୋଲି ଲେଖନ୍ତି ଶର୍ମା । ଘର ଛାଡ଼ି, ଘରୀଣୀ ଛାଡ଼ି, ପୁଅ ଝିଅ ତିନିହିଙ୍କି ଛାଡ଼ି ସେ ଏଠି ହୋଇଛନ୍ତି କାର୍ତ୍ତିଦେବ, ବୁଝିଲି । ପୁଣି ବିଭାହେବେ । ହଉନ୍ତୁ ।"

"ତୁମେ କିଛି ଜାଣି ନାହଁ ଭଉଣୀ, ଦେବ୍ କେବେ ଓଡ଼ିଶା ଦେଖିନାହିଁ । ଘର ରାଜସ୍ଥାନ, କ୍ଷତ୍ରିୟ, ପଢ଼ିଲା ଇନ୍ଦୋରରେ ଆଉ ଆମେଦାବାଦରେ । କାମ କରୁଥିଲା ହରିଆନାରେ, ବଦଳି ହେଲା ଏ ଦୂର ଦକ୍ଷିଣକୁ । ମତେ ସବୁ କହିଛି । ଲାଜରା ହେଲା ପରି କହିଲା, "ହଁ ମୁଁ ତାର ସବୁ କଥା ଜାଣେ । ଆଗ ମୋ ପାଖକୁହିଁ ବେଶି ଆସୁଥିଲା ତ, ଯେଉଠୁ ଲୀଳା ସଙ୍ଗେ ବାହାଘର ପ୍ରସ୍ତାବ । ଲୀଳା ମୋର ଅତି ଆପଣାର ।"

"ଥାଉ ତୁମ ଦେବ୍ ତୁମମାନଙ୍କ ପାଖେ" ପଦ୍ମୋଭଣୀ କହିଲା, "ତାର ଇଚ୍ଛା ନାହିଁତ ତାକୁ ମୁଁ ତୁମମାନଙ୍କଠୁଁ ଛଡ଼ାଇନେବାକୁ ଆସିନାହିଁ । ମୋ ସ୍ୱାମୀ କେବେ ଇନ୍ଦୋର କି ଆମେଦାବାଦ ଯିବାର ମୁଁ ଜାଣିନାହିଁ । ସେ ପଢ଼ିଥିଲେ ରେଭେନ୍ସା କଲେଜରେ କଟକରେ, ମୁଁ ଏମ୍. ଏରେ ନାଁ ଲେଖାଇଲା ବର୍ଷ ସେ ଏମ. ଏ ପାଶ୍ କଲେ । ମୋ ଆସିବା ଉଦ୍ଦେଶ୍ୟ ସଫଳ ହୋଇଛି । ମୁଁ ତାଙ୍କୁ ଦେଖିଲି, ଭଲ ଅଛନ୍ତି ଦେଖିଲି, ଆଜିତ ମୁଁ ସଞ୍ଜ ଗାଡ଼ିରେ ନିଶ୍ଚୟ ଫେରିଯିବି । ପିଲାଏ ପଚାରିବେ, ଲୋକେ ପଚାରିବେ, କଣ କହିବି ଯେ ।" ପୁଣି ସେ କାନ୍ଦିଲା ।

ଆଇଲୀନ୍ କହିଲା "ଅସମ୍ଭବ କଥା । ଅସମ୍ଭବ କଥା ।" ପୁଣି ସାନ ପିଲାକୁ ଆଦେଶ ଦେଲା ପରି କହିଲା ।

"ଦେଖ ଭଉଣୀ । ମଣିଷ ହୋଇଥିଲେ ନିଜର ଦୁଃଖ ଛାତି ଭିତରେ ଚାପି ଲୁଚେଇ ରଖିବାକୁ ପଡ଼େ । ଦୁଃଖହିଁ ଆମ ମଣିଷଙ୍କର ଚରମ ସଂପଦ, ଶ୍ରେଷ୍ଠ ମହକ, ଅତି ଗୋପନ, ନିଭୃତ, ଆପଣାର । ଦୁଃଖହିଁ ଆମ ରୂପ । ପଦାରେ ଦେଖେଇଲେ ମର୍ଯ୍ୟାଦା ଯାଏ । ମୁଁ କହୁଛି । ଆଗ ପଶ ଏ ଗାଧୁଆ ଘରେ, ମୁହଁ ସଫା କର, ବାଳ କୁଣ୍ଡା, ଲୁଗା ସଜାଡ଼, ସବୁ ପ୍ରସାଧନ ଉପକରଣ ଅଛି, ବ୍ୟବହାର କର, ତାପରେ ହସି ହସି ପଦାକୁ ବାହାର, ତାପରେ କଫି, ଯାଅ—"

ସତକୁ ସତ ପନ୍ଦର ମିନିଟ୍ ପରେ ସେ ଟିକିଏ ସତେଜ ହୋଇ ପଦାକୁ ବାହାରିଲା । କଫି ଆସିଲା । ତିହେଁ କଫି ପିଇଲେ ।

ବାହାରେ ସତେଜ ହେଲେ ବି ପଦ୍ମୋଭଣୀର ମନ ଭିତରେ ହା' ପଶି ଯାଇଥାଏ, ବକା ହୋଇ ବସିଥାଏ । ଯେତେବେଳେ ମଝିରେ ମଝିରେ ମନ ଭିତରେ କିଛି ଭାବି ହେଉଥାଏ ସେ ଭାବୁଥାଏ "ଏ କଣ ହେଲା ।" ଖାଲି ଏଇ ତିନିପଦ । ତାରି ଲାଞ୍ଜ ଧରି ଭଉଁରି ବୁଲୁଥାଏ—"ମୋ ଆଖି କଣ ଭୁଲ ଦେଖିଲା ? ତାଙ୍କରି ପରି କିନ୍ତୁ ସେ ନୁହନ୍ତି, ଏଇଆ କଣ ସତ ? ନା ସତେ କଣ ମୁଁ ପାଗଳ ? ଭାବୁଛି ମୁଁ ପାଗଳ ନୁହେଁ, କିନ୍ତୁ ପ୍ରକୃତରେ ପାଗଳ ? ନା ସେ କଣ ବଦଳି ଗଲେ ? ମଣିଷ କଣ ଏତେ ପିଶାଚ ବି ହୁଏ ?......କିନ୍ତୁ ଯାହା ହଉ, ମତେ ଦମ୍ଭ ହେବାକୁ ପଡ଼ିବ—ଯେ ପର କହିଥିଲା ଆଉ ଖୋଜିବ, ନାଁ ଗାଁ ତାଲିକା ଖୋଜିବ......ଅଉ କି ଖୋଜା ?.....ନାହା ପାଇଁ ଏତେ କଥା ଶେଷରେ ସେ ଏଇଆ କଲା !........ ଦମ୍ଭ ଧରିବାକୁ ପଡ଼ିବ, ଆହା ପିଲା ଦୋଟି ।"

ଆଇଲୀନ୍ କହିଯାଉଛି, "ମଣିଷର ଏଭଳି ଭୁଲ ବି ହୋଇଥାଏ । ତୁମେ ତୁମ ସ୍ୱାମୀ କଥାହିଁ ସବୁବେଳେ ଭାବୁଛ, ଆଖି ଆଗରେ ତାଙ୍କରି ରୂପହିଁ ନାଚୁଛି । ଯେଉଁଠି

ତାଙ୍କ ଚେହେରା ସଙ୍ଗେ ସାମାନ୍ୟତମ ସାଦୃଶ୍ୟ ପାଇଲା । ତୁମ ମନ ଭାବିଲା ସେଇ ଗୋଟା ପୁଅଟା ସେ । ହୁଏତ ଦେବ୍ ଚେହେରାରେ ସେମିତି କିଛି ଥିବ । ସାଦୃଶ୍ୟ ନଥାଇ ପୁଅଟା ଭାବୁଥିବା ରୂପ ପଦାରେ ଦେଖିଲା ଭଳି ଲାଗିବା ଅସମ୍ଭବ ନୁହେଁ । ଗୋଟାଏ ରୂପକୁ ଭାବୁ ଭାବୁ ସୃଷ୍ଟିଆଡେ ସେଇ ରୂପ ଥିବାପରି ଦିଶିପାରେ । ତୁମେ ବହୁତ କଷ୍ଟ ଖେଳିଲଣି, ସ୍ୱାମୀ କଥା ଭାବି ଭାବି ଏତେ ସରି । ଦେବ୍ ବିଚରା ଭାରି ବିବ୍ରତ ହୋଇଥିବ । ଲାଜ ବି । ତୁମର ଦୋଷ ନାହିଁ । ତୁମେ କଣ ଜାଣିକରି ଭୂଲ୍ କଲ ଯେ ଦୋଷୀ ହେବ ? ଅପ୍ରାତିକର । ତେବେ ସେମାନେ ବୁଝିବା ଉଚିତ । ତୁମ ସ୍ୱାମୀଙ୍କ ବିଷୟରେ ଅନୁସନ୍ଧାନ ଚାଲିଛି । ଖାତା ପତ୍ର ଦେଖି ମତେ ଖବର ଦେବାକୁ ମୁଁ ସଂପୃକ୍ତ କର୍ମଚାରୀମାନଙ୍କୁ କହି ଦେଉଛି । ଅବଶ୍ୟ ଏ କୋଠାରେ ଯଦି ସେ ଥିବେ । ନହେଲେ କାଲି ମୁଁ ଆଉ ଦୁଇ କୋଠାକୁ ଯାଇ ଲୋକଙ୍କୁ ଭେଟିବି । ତୁମେ ଆସିବା ଦରକାର ନାହିଁ, ଘରେ ରହିବ ।'' ପଟୋଉଣୀକୁ କିଛି ଶୁଝୁ ନ ଥାଏ । ମନରେ ଦୁଇଟା କଥା । ''ମୋର ଏଇଆ ହେଲା ଶେଷରେ ? ନା ନା ଦମ୍ଭ ହେବି ।''

ଆଇଲିନ୍ ଗମ୍ଭୀର ହେଲାପରି ଦିଶୁଥାଏ । କଥା କହୁଛି କିନ୍ତୁ କଥାରେ ସରସତା ନାହିଁ । ଯୁକ୍ତି ଦର୍ଶାଉଛି କିନ୍ତୁ ଯୁକ୍ତିରେ କେଉଁଠି ଶିଥିଳତା ଆସିଲାଣି । ଯେତେ ଭାବିଲେ ମନେ ପଡୁନାହିଁ ଯେ ଅଡୁଆଟା କେଉଁଠି । ମନେ ପଡିଗଲା । ଦେବର ସେ ମୁହୂର୍ତ୍ତକର ବିଳୋଳିତ ଭାବ, ଯେତେବେଳେ ଏ ଝିଅଟି ସହିତ ସେ ମୁହାଁମୁହିଁ ହୋଇଥିଲା, ସେହି ଟିକିଏ କେମିତି ଚମକିଲା ପରି, ପରେ କେମିତି ଭୟ ।

''ନା ସେଇଟା ମୋ ନିଜ ଆଖିର ଭ୍ରମ ? ନିଶ୍ଚୟ ଭ୍ରମ ।'' ତଥାପି ତାକୁ ଅଡୁଆ ଅଡୁଆ ଲାଗୁଥାଏ । କେତେବେଳୁ ନିଜ ଅଜାଣତରେ ଆଖି ଯାଇ ଲାଖି ରହିଥାଏ କାନ୍ଥର ସେ ଛବିଟା ଉପରେ । ଦେବ୍ କଥା ମନେ ପଡୁଛି । ଖାଲି ଚମକିଲା ସେତିକି ନୁହେଁ । ଏ ସ୍ତ୍ରୀଲୋକ କହୁଛି ତାଙ୍କ ଦେବତା ଥିଲା ଶର୍ମା ହେଲା, ଏ ଜଣକ ଦେବ୍ । ଏ ସ୍ତ୍ରୀଲୋକଟି କହୁଛି ସେ ଅନେକ ଦିନ ହେଲା ଆସିଲାଣି ଦେବ୍ କେବେ ହରିଆନାରୁ ଆସିଲା ? ଗଣେ । ହଁ ଆନ୍ଦାଜ ବି ହେବ । କାହିଁ ଓଡ଼ିଶା ଆଉ କାହିଁ ରାଜସ୍ଥାନ । ଅସମ୍ଭବ । ଦେବ୍ । ଦେବ୍ ତାର କଣ ? ଦୀର୍ଘଶ୍ୱାସ ପକାଇଲା ଦେବ୍ ଆଉ ଦେବତା ଶର୍ମା । କିନ୍ତୁ ଦେବ୍‌କୁ କଣ ସେ ଚିହ୍ନି ନାହିଁ, ତା ଭିତର ଆଉ ବାହାର ? ମନ ଭିତରୁ କିଏ ଯେପରି କହୁଛି, ଦେବ୍ ପାପେ ପାଉ । ପୁଣି ସେ ଉଦ୍‌ଭଟ ଚିନ୍ତାକୁ ଦାବୁଛି । 'ଆହା ବିଚରା ଦେବ୍ ।' ଆଉ ଏ ବିଚରା ସ୍ତ୍ରୀଲୋକଟି, ତାର ଦୁଃଖ କଣ ମିଛ ? କିନ୍ତୁ ତ ଚିହ୍ନଟ ନିଶ୍ଚୟ ଭୁଲ । ହୁଏତ କାନାଳିରେ ଶର୍ମା ଏଠି କେହି ନାହିଁ, ଆଉ କେଉଠି ଥିବ । ଯେଉଁଠିଆଉ ସେ ଗୋଟାଏ ଅନ୍ୱେଷ । ସଂସାରରେ ମଣିଷ ବି ରହିବେ ଅମଣିଷ ବି ରହିବେ । କିନ୍ତୁ ଏ ସ୍ତ୍ରୀଲୋକ ଗୋଟାଏ ପୁରୁଷକୁ ଏତେ ଭଲ ପାଇବ କାହିଁକି ?

ତେଣୁ ଭୋଗୁଥିବ ସେ ଭଲ ପାଇବା ଯୋଗୁଁ ଶାସ୍ତି, କେହି କ୍ଷମା କରି ପାରିବେ ନାହିଁ । ନାକ ଟେକି ଦେଇ ଆଇଲୀନ୍ ମନ୍‌ପିଲ୍ଲୀ ତା ଚିନ୍ତାକୁ କବାଟ କିଳି ପଦାରେ ରଖିବାକୁ ଚେଷ୍ଟା କଲା । ଫାଇଲ୍ କାମରେ ମନ ଲଗାଇଲା ।

ସାତ୍ୱେ ତିନି । ଟେଲିଫୋନ୍ ବାଜିଲା । କାନରେ ଦେଉ ଦେଉ ମନ୍‌ପିଲ୍ଲୀ ପଥର ହୋଇଗଲେ । କଣ କହି ଆସୁଥିଲା କହିଲା ନାହିଁ । ପଟୋଉଣୀ ଆଡକୁ ଗୋଟାଏ ଚଞ୍ଚଳ ଚାହାଣୀ ଛାଡି ଦେଇ ସ୍ତବ୍ଧ ହୋଇ ଖବର ଶୁଣିଲା । ହଲ୍ ଘରର କାଗଜ

ସମ୍ବାଦ ମିଷ୍ଟର୍ ପିଷାରେଟିଙ୍କ କାନରେ ପଡ଼ିଥିଲା । ସେ ଦେବ୍‌ର ସହକର୍ମୀ ଉଚ୍ଚତର ପଦ ପାଇଁ ଦେବର ପ୍ରତିଦ୍ୱନ୍ଦ୍ୱୀ । ନିଜେ ସେ ଗଲେ ମିଷ୍ଟର ଘୋରପାଣ୍ଡେଙ୍କ ପାଖକୁ । ଘୋର-ପାଣ୍ଡେ କର୍ମଚାରୀ ନିଯୁକ୍ତି ବିଭାଗର ଉପରିକ । ତା'ପରେ ଦେବ୍‌ର ନଥି ଦେଖାଗଲା । ଓଡ଼ିଶାର ଲୋକ । ଓଡ଼ିଶାରୁହିଁ ବଦଳି ହୋଇ ଆସିଛି । ତା ନାଁ କାଙ୍ଗାଳିଚରଣ ଶର୍ମା । ଆସିଲା ପରେ ଆଫିଡେଭିଟ୍ କରି ନୂଆ ନାଁ ନେଇଛି 'କାର୍ତ୍ତିଦେବ' । ପିଷାରେଟି ପୂରା ସମ୍ବାଦଟି ଚାରିଆଡ଼େ ପ୍ରଚାର କରିଦେଲେ । ହଲ୍‌ଘରେ ବହୁତ କର୍ମଚାରୀ ଏକାଠି ହେଲେ । ସ୍ୱୟଂ ଜଣେ ବଡ଼ ଉପରିକ ମିଷ୍ଟର ଗଉଡ୍ ସେଠିକି ଦେବକୁ ଡ଼ାକଇ ନେଲେ, ପିଷାରେଟି ଡାକେଇ ନେଲେ ଲୀଳାକୁ । ସେଇଠି, ଦେବ୍‌କୁ ପଚରାଗଲା, ସେ ଲୀଳାକୁ କ୍ଷମା ମାଗିଲା, ସମସ୍ତଙ୍କୁ କ୍ଷମା ମାଗିଲା । ତଥାପି ଲୋକଙ୍କ ରାଗ ଅଟକିଲା ନାହିଁ । ଓଃ କି ଭୟଙ୍କର ରାଗ । ହେଲା ମାଡ଼ । ଖୁବ୍ । ପିଷାରେଟି ନ ଥିଲେ ତ ଦେବ୍‌କୁ ଲୋକେ ମାରି ପକେଇଥାନ୍ତେ । ଲୀଳା ପାଗଳପରି କାବା ହୋଇ ଯାଇଛି । କିଟୀ ତାକୁ ତ ବଖରାକୁ ନେଇ ଯାଉଛି । ଟେଲିଫୋନ୍‌ରେ କହୁଛି ସେରା । ସେ ବି ସେଠି ଥିଲା । ଲିଜା ସଙ୍ଗେ କିଟୀର ବଖରାକୁ ଆସି ଫୋନ୍ କରୁଛି ।

ବହୁ କଷ୍ଟରେ ଅଭଲୀନ୍ ତାର ଲୁହ ସମ୍ଭାଳିଲା । ଲାଗିଲା ଦୁନିଆ ଓଲଟ ପାଲଟ ହୋଇଯାଉଛି । ପଡ଼ୋଉଣୀକି କିଛି ନ କରି ଧଡ଼କିନା ଉଠିପଡ଼ି ସେ କବାଟ ଖୋଲି ପଦାକୁ ବାହାରିଗଲା । ମନ ଭିତର କାନ୍ଦି ଉଠୁଛି "ଲୀଳା । ଲୀଳା ।"

ଚାରିଟା ବାଜିବ କବାଟ ଖୋଲିଲା । ଭିତରେ ପଶି କବାଟ ଆଉଜେଇଲା ତାର ସ୍ୱାମୀ । ବୁଲିପଡ଼ି ଠିଆ ହେଲା । ମୁଣ୍ଡବାଳ ଅଳରା । ଦେହ ସେଥା ଦିଶୁଛି । ଡାହାଣ ଆଖି ଉପର ଫୁଲିଛି । ବାଁପଟ କପାଳରେ ଅବୁ ଓ ରକ୍ତ । ଗାଲ ଠାଏ କଟି ଯାଇଛି । ଆଖି ନାଲି ପଡ଼ିଛି । ଅଧୁ ଅଧୁ କହିଲା "ଚାଲ ଯିବା" । ସ୍ୱରରେ ବିରକ୍ତି ଓ କ୍ଳାନ୍ତି । ପଡ଼ୋଉଣୀ ତାକୁ ଡରି ଡରି ଅନାଇଲା କିଛି କହି ପାରିଲା ନାହିଁ । ତୁନିତାନି ତା ପଛେ ପଛେ ଗଲା ।

———

# ଚଳପୁରୀ

( କ୍ଷୁଦ୍ର ଉପନ୍ୟାସ )

ନଈ ଉତୁରୁଥିଲା । ତୋଟା, ଜଙ୍ଗଲ, ଅଟମା ଥାଇ ଥାଇ ଦୁଲୁକା ପବନରେ ହଲି ଯାଉଥିଲା ଆଉ ପତ୍ର ଡାଳରେ ଧରାପଡ଼ିଥିବା ବର୍ଷଣା ପାଣି ଟପ ଟପ ହୋଇ ଝଡ଼ି ହୋଇ ପଡ଼ୁଥିଲା । ଦିନ ସରନ୍ତି ବେଳେ ଯେଉଁ ଟିକିଟିକି ନାନା ଜାତି ଚଢ଼େଇ ବୋବାନ୍ତି ଚାରିଆଡ଼େ ସେହିମାନେ କିଚିରି ମିଚିରି ହେଉଥିଲେ ।

ଫଟକ୍ ଘର ଭିତରେ ଝରକା ପାଖେ ନଈ ଆଡ଼କୁ ଅନେଇ ଠିଆ ହୋଇ ଚନ୍ଦ୍ରମା କାନ୍ଦୁଥିଲା । ଖଣକ୍ ସେ କାନ୍ଥରୁ ସେ କାନ୍ଥ ସେ କାନ୍ଥ ଏ କାନ୍ଥରୁ ପାହୁଣ୍ଡରେ ଦୂରତା ମାପିଲା ଭଳି ଏକରେ ସେକର ଚାଲୁଥିଲା ।

କାନ୍ଦୁଥିବା ଚନ୍ଦ୍ରମା ଆଗରେ ଠିଆ ହୋଇପଡ଼ି ଅଟକି ରହି ଚାଣକ୍ କହିଲା—

"କାନ୍ଦନା ଟୋକି, ମୋ କଥା ଶୁଣ୍ । ତୁ ଆଉ ମୁଁ ହୋଇ ଯେଉଁ ସଂସାର କରିବା, ଏ ଖଣ୍ଡ ମଣ୍ଡଳରେ ସେହି ହେବ ସବୁଠୁ ଶ୍ରେଷ୍ଠ ସୃଷ୍ଟି । ତାଠୁଁ ବଳି କିଛି ରହିବ ନାହିଁ ।" ପୁଣି ସେ ପାହୁଣ୍ଡ ପକେଇ ପଛକୁ ଚାଲିଗଲା । ଚନ୍ଦ୍ରମାକୁ ତା ନିଜ କାନ୍ଦ ସହଜ ଅଭ୍ୟାସ ଭଳି ଆବେଇ ଯାଇଥିଲା । ଯେପରି ନିଶ୍ୱାସ ମାରିଲା ପରି ଅତ୍ୟନ୍ତ ସ୍ୱାଭାବିକ, ତାତ୍ପର୍ଯ୍ୟହୀନ । ତାରି ଭିତରେ ସେ ଅନ୍ୟ ବିଷୟ ଭାବି ପାରୁଥାଏ । ଅଥଚ କାନ୍ଦୁଥାଏ । ଚାଣକ୍ ମଝିରେ ମଝିରେ ଏମିତି କେତେ ପଦ କହି ସାରିଛି । କିନ୍ତୁ ଏକଣ ମଣିଷ କଥା କହୁଛି ? ନା ଯେମିତି ଦୂରରୁ ଶୁଭୁଥିବା ଘଡ଼ଘଡ଼ି । ଦୈବ ବାଣି । ଆଃ । କି ନଈ । କାହିଁ [illegible]ା ଆରପାରି ? ସେ କ'ଣ ମେଘ ନା ସେପାଖ ଅତଡ଼ା ଓ ଜଙ୍ଗଲ ? କି ସ୍ୱାଧୀନତା । କି ପୂର୍ଣ୍ଣତା । ଉଛୁଳି ଉଛୁଳି ଚାଲିଛି ପ୍ରକାଣ୍ଡ ପ୍ରକାଣ୍ଡ ଢେଉ ଗଡ଼େଇ ଗଡ଼େଇ । ଅସନ୍ତା ନାହିଁ ଏବେ ମାଡ଼ି ? ସେଉଠୁ ନିର୍ଣ୍ଣିତ ।

କିନ୍ତୁ ଶୁଣିଲା କିଏ ଏ ଚାଣକ୍‌କୁ ? ସବୁ ଏଇ ନଈ ।

ମଲା, ଢାଅନ୍ତା, ଢାଅନ୍ତାରେ ମଲା, ସବୁ ଡୁଇ । ଆଉ ତେବେ ମୁଁ ଆଶ୍ରା କରିଥିଲି ମୋ ମା' ବୋଲି ।

ଚନ୍ଦ୍ରମା ଅହୁରି ଫୁଲି ଫୁଲି କାନ୍ଦିଲା । ସତେ ଅବା ନଈ ତା ବୋଉ । ଚମ୍ପା ଫୁଲ ପରି ଗୋର । ଢଳଢଳ ଡାଉଲ ମଣିଷ, ବୟସ ତାକୁ ଅହୁରି ଫୁଟେଇଛି, ଝାଉଁଳି ନାହିଁ । ବଡ଼ ବଡ଼ ଆଖି, ରାଈ ଅଖିପରି, ନିରୀହ, ଲୁହଭରା । ସେ ମୁହଁ ସେ ଆଖି ଟେକୁ ହୋଇଛି ସନ୍ତାନ ପାଇଁ ସ୍ନେହରେ କାନ୍ଦିବାକୁ । ବର୍ଷେ ତ ହୋଇନାହିଁ, ବାହା କରି ଦେଇଥିଲା, କାନ୍ଦି କାନ୍ଦି ବିଦା କଲା, ଦ୍ୱିରାଗମନ ପାଇଁ, ଆଉ ଦେଖି ନାହିଁ । ଶୁଣିବଣି । କଣ ସେ କରୁଥିବ ଯେ ।

ପୁଣି ସେ । ସାମ୍ନାରେ । ବାଟ ରୋକିଛି ।

"ଅଝଟ ହନା, କାନ୍ଦନା । କାନ୍ଦିବାର କଣ ଅଛି ? ତୋର-ମୋର ଯେଉଁ ସନ୍ତାନ ହେବେ, ସେମାନେ, ସେମାନଙ୍କ ନାତି ପଣନାତି, ସେହିମାନେ ହେବେ ଏ ଦେଶର ସବୁ"—

ଚିଚିଁରେଇ ଉଠିଲା ଚନ୍ଦ୍ରମା "ମୁଁ ମରିବି ମୁଁ ମରିବି"—

"ମରୁ ତ ଥିଲୁ । ଆଉ ଦଣ୍ଡେ, ସେଉଠୁ ତୁ ନ ଥାନ୍ତୁ"—

"ମୁଁ ମରିବି ମୁଁ ମରିବି"—

"ତୁ ପାଗଳ । ତେମେ ସମସ୍ତେ ପାଗଳ । ସତେ ତୁମେ ମରିବାକୁହିଁ ଯୋଗ୍ୟ" । ଛାତି ଫୁଲେଇ କହିଲା "ମୁଁ ନ ଆସିଥିଲେ ମରିଥାନ୍ତୁ । ଆଉ ଏ କେଁ କେଁ କାନ୍ଦ, ମୁଁ ମୋଟେ ଭଲପାଏ ନାହିଁ । ଯାହା ଭଲ ପାଏ ନାହିଁ ନିଜ ହାତରେ ତାକୁ ସଫା କରେଁ, ତୁମମାନଙ୍କ ପରି ହାତଟେକି ବାଟୋଇକି ଅନାଏ ନାହିଁ । ଆରେ ତତେ ମାରିଦେବା ତ କେଡ଼େ ସହଜ—"

ଚନ୍ଦ୍ରମା କାନ୍ଦୁଥାଏ । କାନ୍ଦି କାନ୍ଦି କହିଲା "ସେଇଆ କର, ସେଇଆ କର ତମ ଗୋଡ଼ତଳେ ପଡ଼ୁଛି, ଏକା ଥରେ ଦିଅ ମାରି, ଏ ଛନ୍‌ପଟରୁ ଉଦ୍ଧାର ପାଏଁ" ପାଗଳ ପରି ସେ ତା ପାଦତଳେ ମୁଣ୍ଡିଆ ମାରିଲା ।

ହାତ ଧରି ଟେକି ନିଜ ଦେହକୁ ଆଉଜେଇ ଆଣି ଗୁଣକେ କହିଲା "ମୋ ପ୍ରିୟତମା । ଶୁଣ୍ । ମୁହଁ ଟେକ୍ । ଦେଖ୍ ଏଇ ନଈ ବାଲି । ଯାହା କହିଛି ନିଶ୍ଚୟ ସତ ହେବ । ଆମ ଘରକଣ୍ଟୋର ଏଇ ଯେଉଁ ଭୂଇଁ, ଆମର ଉପ୍ଜଲ, ଦେଖିବୁ ସେଇ ହେବ କେମିତି । ଏ ଜଙ୍ଗଲ, ଏ ଡଳାଭୂଇଁ, ଏ କାଦୁଅ, ଅନ୍ଧାର, ଖାଲ କୁଦ, ଏଇ ଝଲସିବ ନୂଆ ଦୁନିଆଁର ଅଲୁଅରେ । ଓଃ । ଦେଖ୍ ଦେଖ ଗୁଣକ ସଙ୍ଗରେ ସ୍ୱପ୍ନ ଦେଖ । ଅନା ନଈରେ କେତେ ଡଙ୍ଗା, କେତେ ଜାହାଜ । ଥଳରେ କେତେ କୋଠା, ଗହଳି, କେତେ ଅଲୁଅ. ଧରିଛନ୍ତି ଫୁରିଆଡ଼୍ ମଣିଷ, ଗାଡ଼ି, ଜାହାଜ, ଏ ମାଟି ଲୁଇଁ ଧନ୍ୟ ହେଉଛନ୍ତି, ସେମାନେ କହିବେ ଚନ୍ଦ୍ରମା ଆଉ ଗୁଣକ୍ ବୋଲି ଥିଲେ ଯୋଡ଼ିଏ, ତାଙ୍କରି ପ୍ରେମରୁ ଜାତ ଏ ନୂଆ ସୃଷ୍ଟି, ଦେଖ୍ ଦେଖ୍ '—

ଚନ୍ଦ୍ରମା ଶେଷଚେଷ୍ଟା କଲାଭଳି ମାରିଥିଲା କୁଦାଏ ନଈ ଆଡ଼ର ଝରକା ଆଡ଼କୁ । ଝରକାର ଲୁହା ଚେଲିଂରେ ମୁଣ୍ଡ ପିଟି ହୋଇ ରକ୍ତ ଧାରେ ଝରିଥିଲା । ଆକୁଳ ହୋଇ ଚିତ୍କାର କରିଥିଲା ନଈକି ଅନେଇ "ମା' ମାଲୋ । ମା' ମାଲୋ । ମୁଁ ମରିବି ମୁଁ ମରିବି" ।

ରୁଣକ୍ ଆଉ ତାକୁ ଧରିବାକୁ ଚେଷ୍ଟା କଲାନାହିଁ । ମୁହଁଟା ଗୋଟାଏ ବିଚିତ୍ର ଭଙ୍ଗୀରେ କେମେଇ ରହିଲା । ଆସକ୍ତ , ଘୃଣା, ଦୟା ରାଗ ସବୁ ଗୋଳି ହୋଇଯାଇଥିଲା ସେ ଭଙ୍ଗୀରେ ।

ତୁନି ହୋଇ ଠିଆହୋଇ ବିଲିବିଲେଇଲା ପରି କହିଥିଲା—

"କାହିଁକି ତୁମେ ସବୁ ଏତେ ମରିବାକୁ ଝୁରିହୁଅ ମତେ ଆଶ୍ଚର୍ଯ୍ୟ ଲାଗୁଛି । ଯେତେ ଯାହା କରୁଛ ଦେଖୁଛି,—ସବୁ କରୁଛ ଆପଣା ଦେହ ହିତ ପାଇଁ, ଦେହ କେମିତି ନୀରୋଗ ରହିବ ଆଉ ତୁମେ ସବୁ ବଞ୍ଚିଥିବ ଶହେ ବିଶାଶହେ ବର୍ଷଯାକେ । ଧନୀ ହେବାକୁ ଯେତେ ଯାହା ଉପାୟ, କେଉଁଥିରେ ତ୍ରୁଟି ନାହିଁ । ସ୍ୱେରି ଭବେଇତି ନ ହେଲେ ଧନରେ ପାଟିପଡ଼, ଏତେ ଧନ ଆଉ କୋଉଠି ଦେଖିନାହିଁ । ସୁଖ କରିବା ବି ଉଣା କିଛିଏ ? ଖାଇ ପିଇ ଖେଳି ଦେଇ ନାଚ ତାମସା କରି ଗୀତ ନାଚ ପାଠ ପଢ଼ାରେ ମହା ଆରମ୍ଭରେ ଅଛ, ମାଟି ଏତିକି ଉର୍ବର ପାଣି ଏତେ ପ୍ରଚୁର ଜଳବାୟୁ ଏତେ ସୁଖକର ଯେ ବେଶି ନଖଟିଲେ ବି ଅର୍ଜନ ଗଦାଗଦା । ଅଥଚ କି ଆଶ୍ଚର୍ଯ୍ୟ ; କି ଆଶ୍ଚର୍ଯ୍ୟ । ଖାଲି ମନେ ମନେ ଭାବୁଚ କେମିତି ମରିବି" ।

ଯେହି ଅକୁଳ ଚିତ୍କାର, "କାହିଁକି ମରିନାହିଁ ଲୋ ମୁଁ । ମୋର କି ଦଶା ହେବ" ।

'ଶୁଣ୍, ଆଉ ମୁଁ କିଛି କହିବି ନାହିଁ । ମରିଥିଲେ ପାଉଁଶ ହୁଅନ୍ତୁଣି । କାହା ପାଇଁ ମରିବାନ୍ତୁ ? ଯଉଁ ମୁର୍ଦ୍ଦାଟେ ଲଦା ହୋଇଥିଲା, ତାହାରି ପାଇଁ ? ଯୋଉ ଲୋକ ବୁଢ଼ାର ଧର୍ମର ନାଁ କହି ତତେ ଜୀଅନ୍ତା ନିଆଁରେ ପୋଡ଼ିବାକୁ ଆଣିଥିଲେ ସେହି ବୁଢ଼ାକଙ୍କ ପାଇଁ ? ସେହି ବୁଢ଼ାଙ୍କ ତଳେ ମରିବାକୁ ମନ କରୁଚୁ ? ଦେଖ୍ ମତେ, ଅନ । ମୁଁ—ରବ୍ ରୁଣକ୍—ଜବନ୍ ତସ୍କ ରୁଣକ୍—ମୁଁ ମଣିଷ । ମୋର ତର ଭୟ ନାହିଁ । ମୋ କଥା ଯେ ନମ ନନ୍ତି ତାଙ୍କୁ ଦୟା ମାୟା ନାହିଁ । ତାଙ୍କୁ ମରଣ-ଯନ୍ତ୍ରଣା ଦେଇ ଶିକ୍ଷା ଦେବାଲ ମତେ ଖୁସି ଲାଗେ, ତାଙ୍କ ଆର୍ତ୍ତ ଚିତ୍କାର ଶୁଣିଲେ ମୋର କ୍ଷୁଧା ବଢ଼େ । ମୋ ହୁକୁମ୍‌ରେ ଯାହାଙ୍କୁ ଗଛରେ ବାନ୍ଧି ପିଟି ପିଟି ଦଣ୍ଡ ଦିଆଯାଏ, କିଏ ମାଡ ଖାଉ ଖାଉ ମରେ ଯେ ଦଣ୍ଡ ଦିଆହୁଏ ମୁଁ ଖାଇ ବସିଲା ବେଳେ ମୋ ଖାଇବା ଘର ଝରକା ସେପାଖେ । ଗୋଟାଏ ଡାଳି, ଗୋଟାଏ ସିଠି ବନ୍ଧୁକ ଧରି ଖଣ୍ଡା ଉନ୍ମେଇ ମୋ ଜୁଆନ୍ ମାନେ ଧାଇଁ ଆସନ୍ତି । ଦେଖେ ଏ ଦେହକୁ, ଯାହା ଅଣ୍ଟା-ଯାକେ ତୋ ମୁଣ୍ଡ, ତାହାକୁ ଦେଖିଛୁ କେବେ ମୋଠୁଁ ବଳି ? କେଉଁ ମୋଗଲ୍, କେଉଁ ଦେଶୀ ପହିଲ୍‌ମାନ୍ ଏ ଦେଶର କେହି ଲଢୁଆ ମଣିଷ, ଠିଆ ହବ ଜବର୍ ରୁଣକ୍ ଆଗରେ" ?

ଆପଣା କଥାରେ ଉତ୍ତେଜିତ ହୋଇ ରୁଣକ୍ ଦେହକୁ ଟାଙ୍ଗି ଦେଲା । ଗୋଟା ସୁନ୍ଦା ନାକି, ଏତେ ବେହେସ, ଏତେ ଛାତି, ଏତେ ମୋଟ ମୋଟ ଡେଙ୍ଗା ଗୋଡ଼, ଚଳୁଆ ପଞ୍ଜୁର ଶରୀର,—ଗୋଟାଏ ଉଗ୍ର ବଣ୍ଣ ବେକ ଫୁଲେଇ ଠିଆ ହୋଇଛି ମଣିଷ ଆକୃତିରେ । କଡ଼ୋ କହର ହୋଇ ବହଳ ଅଲର ବାଳ, ନିଶ ଦାଢ଼ୀ, ପାତି ମାଙ୍କଡ଼ ପରି ମୁହଁର ରଙ୍ଗ ଆଉ ଭାବ, କି ମନୋଭାବ ଏ ଖୋଳ ଉହାଡ଼ରେ ଅଛି କିଏ କହିବ ? ତୁଛା ହାତ ଚଳେଇ ଦେଲେ ଯେ ମଣିଷଟାଏ ମାରିଦେବ ମିଛ ନୁହେଁ ।

ଚନ୍ଦ୍ରମା ଭୟରେ ମୁଗ୍ଧ ହୋଇ ଅନାଇଲା, କାନ୍ଦଣା ବନ୍ଦ ହୋଇଗଲା । କୋରଡ଼ ଭିତରୁ ନେଳି ସମୁଦ୍ର ଉହାଡ଼ରୁ ରୁଣକର ନୁନିଆଁ ଆଖି ଖୋଷି ନେଲା ତା

ମୁହୂର୍ତ୍ତକର ବିହ୍ୱଳତାକୁ ସେତିକିବେଳେ, ସେଇ ନେଳିଆ ଆଖିରେ ଅଲୁଅ ଝଟ୍ କଲା । ଘୁଣକ୍ ବେକକୁ ଆଗକୁ ପଛକୁ ଝାଙ୍କିଲା । କହସୁରୁମ ବଢ଼ିଥିବା ଝାଲୁଆ ହାତକୁ ମୁଠେଇ ତା ଆଡ଼କୁ ବଢ଼େଇ ଖଙ୍ଗିଦେଇ ବାହାର କଲା ବଡ଼ ଗୋଲ ମାଂସ ପିଣ୍ଡୁଳା ଟାଏ, କହିଲା—

“ମୁଁ ଚିହ୍ନେ ଏଇ ହାତକୁ । ମୁଁ ଚିହ୍ନେ ମୋ ସଳଖ ବନ୍ଧୁକକୁ । ମୋ ବାଟ ସଫା କରିବ ସେଇ । ଭୀରୁ ଗୁଡ଼ାକ ଜୀବନ ଜୀବନ କହି ଡରି ଡରି ପଳାନ୍ତି, ମୁଁ ଜୀବନ ମରଣ ଖବି ଧନି ହୁଏ ନାହିଁ । ଏତିକି ବୁଝେ । ମୁଁ ଅଛି, ବଳ ଥିବା ଯାକେ ଥିବି ଯେତେବେଳ ଯାଏ ଅଛି ବଳ ଖଟେଇବି । ଆଉ କାହାର ସାହାସ ଅଛି ମୋ ଆଗକୁ ଦେଖିବି ।”

ଧୁମ୍ କରି ଭୂଇଁରେ ଗୋଇଠା ମାରିଲା ।

ଚନ୍ଦ୍ରମା ଭୟରେ ଚିଚ୍ଚ ରେଇ ହାଉଳି ହୋଇ କାନ୍ଦିଲା ।

ଘୁଣକ୍ ଘାଗଡ଼ା ଗଳାରେ କହି ଲାଗିଥାଏ ।

“ଏ ବଣରେ ପଟାଳିଆ ବାଘ ବୁଲନ୍ତି ପରା । ଅସୁଛନ୍ତି କେହି ଏ ପାଖକୁ ? ଜାଣନ୍ତି, ଘୁଣକ୍ ପଟାଳିଆଠୁଁ ବଳି ଭୟାନକ ; ଚିତା ବାଘଠୁ [illegible]ଳି ଶିକାରୀ । ତାର ଦିନ ନାହିଁ ରାତି ନାହିଁ ଖରା ନାହିଁ ବର୍ଷା ନାହିଁ କେହି ଅଟକେଇବେ ନାହିଁ ତାକୁ । ତୁମ ଲୋକ ଡରି ମରନ୍ତି ପରା, ସବୁ ଅଛେ ଭୂତ ପ୍ରେତ, ଡାଆଣି ଚିରିଗୁଣି; ଦେବତା, —ଜୀବନ ଶୋଷ ଖାଇଯିବେ । ଘୁଣକ୍ ଆଗକୁ ଅସୁଛନ୍ତି କେହି ? ସେଗୁଡ଼ା ମିଛ କଳ୍ପନା । ପିଲାଙ୍କୁ ଡରେଇବା ଗପ । କିନ୍ତୁ ଘୁଣକ୍ ଭଲଡ଼ା ଟେକିଲେ ଗାଁ ଗଣ୍ଡା ଉପରେ କେହି ହୋଇ ପଡ଼େ ନିଆଁ; ତୋପରୁ ଏଡ଼େଏଡ଼େ ଗୁଳି ଛୁଟେ, ସେଗୁଡ଼ାକ ଆଦୌ ମିଛ ନୁହେଁ । ମୁଁ କହୁଛି କେହି ଡର ନାହିଁ ; ଆମେ ଆସିଛୁ ବେପାରତ କରିବୁଁ ତୁମର ଭୟ ଛଡ଼େଇବୁ, ତୁମକୁ ରକ୍ଷା କରିବୁ, ଆସ ଆମର ଶରଣ ନିଅ, ନିର୍ଭୟରେ ଆମ ତୋପର ଛାଇ ତଳେ ଘର ବାନ୍ଧି ରହ, ଜିନିଷ ତିଆରି କର, ଆମକୁ ବିକ, ସୁନା ନିଅ, କଉଡ଼ି ନିଅ, ତୁମର ଗୋଡ଼ ଟଳୁଛିତ ଆମ ଗୋଡ଼ରେ ଆଉଜି ଠିଆ ହୁଅ, ଅର୍ଦ୍ଧଉଳିଆ ଶାସନ ଆଉ କେଉଁ ଦିନ ହେବ ? ଖାଲି ପମା ଖୋଳଟାଏ, ବେଳ ଆସିଲେ ମାଡ଼ିବୁଁ ବିଧାଏ, ଦେଖିବି ଏ ଦେଶ ଆମର । ସେଇ ଘୁଣକ୍ ମୁଁ ତତେ କଥା ଦଉଚି । ତୋ ସୁନ୍ଦର ମୁହଁକୁ ମୁଁ ଭଲ ପାଉଛି । ତୋର କେହି କିଛି ଅନିଷ୍ଟ କରି ପାରିବେ ନାହିଁ, ତରରେ ପ୍ରଶଂସା ଗାଇବେ ।”

ଚନ୍ଦ୍ରମା ଗୋଟା ସୁନ୍ଧା ଥରୁଥାଏ । ବିବର୍ଣ୍ଣ ମୁହଁରୁ ଲୁହ ବୋହି ଯାଉଥାଏ । କାନ୍ଦୁଛି ତ କେତେ ଦିନୁଁ । ଆଗ ଅନ୍ଧାରରେ ଯେତେବେଳେ ତା ସ୍ୱାମୀ ବିଛଣା ଧରିଥିଲା, ତାପରେ ଗଲା କାଲି ରାତିରୁ, ଯେତେବେଳେ ସେ ଦୀପ ନିଭିଗଲା, ସେଉଠୁ ଆଜି ସକାଳ କଅଁଳ ଧୋଧୁଆ ବେଳୁ ଯେତେବେଳେ ହଠାତ୍ ସେ ଧରା ହୋଇ ଏଠିକି ଆସିଲା । ଶାନ୍ତି ପାଇଥିଲା ମରଣକୁ ଅପେକ୍ଷା କରି ମଶାଣିରେ ବସିଥିଲାବେଳେ; କି ଗୌରବ, କି ଶାନ୍ତି । ତା'ପରେ ଏ କଣ ? କାନ୍ଦି କାନ୍ଦି ଗୁହାରି କଲାପରି କହି ଗଲା —

"ତୁମେ କିଏ ମୁଁ ତମକୁ ଚିହ୍ନେ ନାହିଁ । ଆମେ ନିରୀହ ମଣିଷ, ମୁଁ ବ୍ରାହ୍ମଣ ଘର ଝିଅ । ଧର୍ମ ଛଡ଼ା ଆମର କିଛି ନାହିଁ । ସେହି ଧର୍ମ ରକ୍ଷା କରି ମୋ ସ୍ୱାମୀର ମୁର୍ଦ୍ଦାଟିକୁ କୋଳରେ ଧରି ମୁଁ ଯୁଇ ଉପରେ ବସି ଠାକୁରଙ୍କୁ ଡାକୁଥିଲି । ଆମ ଲୋକେ ମନ୍ତ୍ର ପଢ଼ୁଥିଲେ । ଆଉ ଟିକେକେ ନିଆଁ ଲଗେଇଥାନ୍ତେ । ତାଆନ୍ତାରେ ସତୀ ହୋଇ ସତୀର ମର୍ଯ୍ୟାଦା ଘେନି ମୁଁ ଏ ତୁଚ୍ଛ ସଂସାରରୁ ଉଭେଇ ଯାଇଥାନ୍ତି । କାହିଁକି ତୁମେ ମତେ ଓଟାରି ଆଣି ମୋ ଜାତି କୁଳ ଧର୍ମ ନଷ୍ଟ କଲ ? କୁଆଡ଼ର କିଏ ତମେ ? ତୁମେ କଣ ମଣିଷ ନୁହଁ ? କହିଲ, ସ୍ୱାମୀ ତ ମଲା ଆଉ ମୋର କଣ ରହିଲା ବଞ୍ଚିବି କାହିଁକି ? ସ୍ୱର୍ଗକୁ ଯାଉଥାନ୍ତି, ତୁମେ ମତେ ନରକରେ ଘାଣ୍ଟିବାକୁ ରଖିଲ ? ମତେ ମାରିପକା ମାରିପକା ତୁମ ଗୋଡ଼ ତଳେ ପଡ଼ୁଛି । ନଇଲେ ଛାଡ଼ି ଦିଅ ମୁଁ ଗଙ୍ଗାରେ ଝାସ ଦିଏଁ ।"

ଏତେବେଳକେ ସେ ତାକୁ କଥା କହିଛି । ତାକୁ କାନ୍ଦଣାରେ ଶୁଣି ଶୁଣି ବି କି ହୃଦୟ ମଣ୍ଡା ମିଠା ସ୍ୱର । ଓ । ଏ ସୁନ୍ଦର ପ୍ରତିମା ମରିବାକୁ ଚାହେଁ ।

ମରିବାକୁ ନଦେବାରୁ ଏ ପୁଣି ଦୋଷ ଦେଉଛି । କି ପାଗଳ । ମଣିଷ ଯାକୁ କଣ କରି ବୁଝେଇ ପାରିବ ? ଦେହ ବଳର ଭାଷା ବି ଏ ବୁଝେ ନାହିଁ । କଣ ବୁଝେ ? କିନ୍ତୁ ବୁଝେଇବାକୁ ପଡ଼ିବତ ।

ଚାର୍ଣକ୍ ଦିଥର ଛେପ ଢୋକିଲା । ତାର ପଥୁରିଆ ସ୍ନାୟୁଗୁଡ଼ାକ ବି ସତେ ଯେମିତି କାଦୁଅ ସନ୍ତସନ୍ତିଆ ହୋଇଯାଉଛି । ସେ ତାକୁ ରେକୁଛି ପ୍ରାଣ ପଣେ । କହିଲା "ମୁଁ ଇଂରେଜ୍ । ମୋ ଦେଶ ବହୁତ ବହୁତ ଦୂର । ତୁମ ଧର୍ମ, କୁଳ, ଜାତି ମୁଁ ବୁଝେନାଇଁ, ମାନେ ନାଇଁ । ମୋ ଦେଶର ଲୋକଙ୍କର ବି ଗୋଟାଏ ଧର୍ମ ଅଛି, କହନ୍ତି ଗଅଡ୍ ବୋଲି ଜଣେ କିଏ ଅଛନ୍ତି ସାରା ସୃଷ୍ଟିର ମାଲିକ, ତାଙ୍କ ପୁଅ ଜନ୍ମ ହୋଇଥିଲେ ମେରୀ ମା ପେଟରୁ । ସବୁ ରବିବାର ସମସ୍ତେ ଗୋଟାଏ ଘରେ ରୁଣ୍ଡି ଗଡ଼ଙ୍କ ନାଁ ଡାକି ସ୍ତୁତି କରନ୍ତି । ଯାଇଥିବି କେତେଥର, କାଳେ ଗଡ୍ ଆସିବେ, ଆସନ୍ତି ନାହିଁ, କେହି ତାଙ୍କୁ ଦେଖି ନାହିଁ, ମୁଁ ବି ମାନେ ନାହିଁ, ଯାଏ ନାହିଁ ଆଉ ସେଠିକି । କହେଁ ଗଡ୍ ଯଦି କେଉଁଠି ଅଛନ୍ତି ଥାଆନ୍ତୁ । ଚାର୍ଣକ୍ ବି ଅଛି । ଚାର୍ଣକର ଏ ଶରୀର, କେଡ଼େ ବଡ଼ ଯା ଆକାର, କେତେ ନିଦା, କେତେ ଯା ଭୋକ, ଯେ ଖୋରାକ୍ ଚାହେଁ ; ମାଂସ, ରୁଟି, ମଦ । ଯତ୍ନ ଚାହେଁ । ଯାର କେତେ କେତେ ପ୍ରକାର କେତେ ଆବଶ୍ୟକ ଅଛି । କେତେବେଳେ ଏ କଣ ମାଗେ । ନ ଦେଲେ ଏମିତି ତାଜା ରହିବ ନାହିଁ । ନଷ୍ଟ ହେବ । ଆଉ ମୋ କାମରେ ଆସିବନାହିଁ । ଏ ଭାଙ୍ଗିଲେ ମୁଁ ନଥିବି । ତେଣୁ ଯାର ଯେତେ ଯାହା ଦରକାର ସବୁ ଚାର୍ଣକ୍ ନିଜେ ଗୋଟେଇ ଆଣେ; କାହାଠୁଁ ଛଡ଼େଇ ଆଣେ । ଗଅଡ଼ ତ ଦିଅନ୍ତି ନାହିଁ କେବେ । ଗଅଡ୍ ସ୍ତୁତି ଘରର ପାଦ୍ରିଟା କହେ, ଚାର୍ଣକ ଗଡ୍ଙ୍କ ଶତ୍ରୁ । ସଇତାନ । ସେ ଗଡ୍ ପିଛା ସବୁବେଳେ କୁଆଡ଼େ ଶତ୍ରୁଟା ଲାଗିଥାଏ, ଗଡ୍-ଓଲଟା ଓଲଟା କଥା କହେ, ବିରୋଧୀ କାମ କରେ । ମୁଁ କୁଆଡ଼େ ସେଇ । ମୁଁ ବି ମଣିଷ ସଇତାନ୍, ତେବେ ମଣିଷ ଗଡ୍ କିଏ ? ପାଦ୍ରି ? ମୁଁ କହେଁ । ଡାକ୍, ତୋ ଗଅଡ୍ଙ୍କୁ ମୋ ଆଗରେ ଠିଆ କର୍ ।

ମୁଁ ଗଡ୍ ତ ନୁହେଁ କେବେ, ସଇତାନ ବି ନୁହେଁ, ପଚାରିବା ସଇତାନ ତୁ କି ମୁଁ । ମୁଁ ମଣିଷ । ଗଡ୍ଙ୍କର କେହି ନୁହେଁ, ମୋ ବାପା ବି ଚାର୍ଣକ, ତାଙ୍କ ପୁଅ ମୁଁ । ମଣିଷ ହୋଇ ମୁଁ ସହି ପାରିବି ନାହିଁ ଯେ ଅନ୍ଧ ବିଶ୍ୱାସରେ ବାୟା ହୋଇ

ଅନ୍ୟମାନଙ୍କ କୁହାରେ ପଡ଼ି ଜଟେଣ୍ଟ ମୋରି ଆଣି ଅଗରେ ନିଆଁ ଲଗେଇ ହୋଇ ଆତ୍ମହତ୍ୟା କରିବ । ମୁଁ ଯାହା ଠିକ୍ ବୋଲି ଭାବିଥାଏ ମୋ କର୍ତ୍ତବ୍ୟ ସେଇଆ । ଇଂରେଜ ଜାତି କର୍ତ୍ତବ୍ୟ କରିବାରେ କେବେ ହେଳା କରିନାହିଁ । ମନରେ ଏତିକି କ୍ଷୋଭ ରହିଗଲା, ଯେ ମୂର୍ଖାମୀର ପାଖେ ଯେ ଯେଉଁ ଲୋକ ଗୁଡ଼ାକ ବୁଢ଼ୀ ତଟେତ ନିଆଁରେ ପୋଡ଼ିବାକୁ ବସିଥିଲେ ସେଥିରୁ କେତେଟାକୁ ନିଆଁରେ ପକେଇ ପାରିଲି ନାହିଁ, ପଳେଇଗଲେ ।”

କିନ୍ତୁ ପୁଷ୍ପି ଚନ୍ଦ୍ରମାରବ ନିଘା ଚହଲି ଯାଇ ସାରିଥିଲା ତା ଆପଣା ଉପରକୁ, ପୁଷ୍ପି ଗୋଟାଏ ବିଭୀଷିକା ଉପରକୁ, ଆଉ ସେ ସ୍ପେନ୍ସରର କଥା ଶୁଣୁ ନଥିଲା । କାନ୍ଦି କାନ୍ଦି ହୁରି ପକାଇ ଥିଲା—

“ମୁଁ ବ୍ରାହ୍ମଣ ଘର ଝିଅ, ମୋ ଧର୍ମ ! ମୋ କୁଳ ! ମୋ ଇଜ୍ଜତ୍ ! ମତେ ଛାଡ଼ି ଦିଅ, ମୁଁ ମରେଁ—”

ସ୍ପେନ୍ସର୍ ଭାବିଲା ପରି ରହିଲା । ମରଣ ଫୁସୁଲଉଛି ଜୀବନକୁ, ମତେ ବାଟ ଛାଡ଼ି ଦେ । ନା, ତୋର ବେଳ ଆସିନାହିଁ । ବେଳତ ସ୍ପେନ୍ସରର । ସ୍ପେନ୍ସର ଭାବିଲା ଓ ଧୈର୍ଯ୍ୟ ଧରି ଅପେକ୍ଷା କଲା । ଶାନ୍ତ ବିଶ୍ଵସ୍ତ ସ୍ଵରରେ କହିବାକୁ ଚେଷ୍ଟା କଲା, ସେ ବୁଝାଇବାକୁ ଚାହେଁ । କହିଲା—

“ସେ ପଚ୍ଛ କଥା ଭୁଲି ଯା । ଶୁଣ୍ । ନିଆଁ ଜଳିଲା, ତୁ ବଞ୍ଚିଗଲୁ । ତୋ ଧର୍ମ ତୋ କୁଳ ତୋ ଇଜ୍ଜତ ସବୁ ଧରି ତୁ ପାଉଁଶ ହୋଇଗଲୁ । ଶୁଣ୍, ଏକା ତୁ ନାହୁଁ, ତୋ ଦେଶ ବି ପାଉଁଶ ହୋଇଛି । କେତେ ସହସ୍ର ଆକ୍ରମଣ ଆଉ ଅତ୍ୟାଚାର ? ଗ୍ରୀକ୍ ଆସିଲେ ମାଇଲେ । ପଠାଣ ଆସିଲେ ମାଇଲେ । ମୋଗଲ ଆସିଲେ ମାଇଲେ । ନିଜ ନିଜ ଭିତରେ କେତେ ହଣାହଣି ମରାମରି । କେତେ ଖଣ୍ଡ ତନାଏତ । ଛିଡ଼ିଛି ବୋଲି ପତାକାଟାଏ ଉଡ଼େଇ ଦେଇ ବାଡ଼ା ବଢେଇ ଦେଲେ କିଛି ହୁଏ ନାହିଁ । ଭିତରଟା ଥିଲେ ତ । ଯାଉ, ଯେଉଁ ତୁ ଟୋକି ମଣିଷଟା ଥିଲୁ ବ୍ରାହ୍ମଣ ସେ ମରିଛି । ସେ ଦେଶ ସେ ଧର୍ମ ସେ ଅସୁର ସବୁ ମରିଛି । ଆଉ ଏଇ ଯେଉଁ ତୁ ଠିଆ ହୋଇଛୁ । ସେ ଭିନେ ଲୋକ, ନୂଆ ଯୁଗରେ ନୂଆ ହୋଇ ତାର ଜନ୍ମ । ତୁ ହେବୁ ଇଂରେଜ ଜବ୍ ସ୍ପେନ୍ସର୍ର ଘରଣୀ—”

ଫେର୍ ତାର ଚିତ୍କାର “ତୁମ ଗୋଡ଼ ତଳେ ପଡ଼ୁଛି—ତୁମ—” ଏକା ଜିଦି । ଏକ ମୁହୂର୍ତ୍ତ ବୁଝା ବୁଝି ପଟ ନାହିଁ, ପାଦତି ବି ତାକୁ କମ୍ ବୁଝଇ ନାହିଁ, ‘ବିଶ୍ଵାସ କର’ । ସ୍ପେନ୍ସର ତରତର ଭାବିଗଲା । କିନ୍ତୁ ମନକୁ ଆୟତ୍ତ ନକଲେ ଶରୀର ସିନା ମିଳିବ ପ୍ରେମ ମିଳିବ କାହୁଁ ? ସୁଖ ମିଳିବ କାହୁଁ ? ଏତେ ସୁନ୍ଦର । ଏତେ ସୁନ୍ଦର ସେ । ମୂର୍ଚ୍ଛିତ ବା କେଉଁ କି ? ନା ସେ ବୁଝିବା ଦରକାର । ଶୁଣୁ ସେ—

“ଶୁଣ୍, ବୁଦ୍ଧିମତୀ । ଯେଉଁ ଅତୀତପାଇଁ ତୋର ଏତେ ଲଜ୍ଜା ସେ ତତେ ଚିହ୍ନି ପାରିବ ନାହିଁ । ପିନ୍ଧିବୁ ସାୟା, ବ୍ଲାଉଜ, ସେମିଜ ନ ହେଲେ ଗାଉନ, ଖାଇବୁ ଅରୁଆ ଭାତ ଆଉ ଫାଉଲ କରି, ଟେବୁଲ ଉପରେ, ପୁଣି ଏକ୍ରେ ଚେକେନ, ପିଇବୁ ଫଳରସ କି ଅଦା ରସ ମିଶେଇ ବ୍ରାଣ୍ଡି, ହାଇ ହିଲ୍ଡ ଯୋତା ପିନ୍ଧିବୁ, ବବ୍ ହେୟାର୍ ରଖିବୁ । ଭ୍ୟାନିଟି ବ୍ୟାଗ ଧରିବୁ, ଓଠରେ ନଖରେ ନାଲି ରଙ୍ଗ ମାରିବୁ । ସିଗାରେଟ ଟାଣିବୁ । କଟ୍ କଟ୍ କହିବୁ ଇଂରେଜି ମିଶା ଦେଶୀ ବୋଲିରେ ମାଈଁ ଡାଲିଂ—”

କିଏ ସେ ? କିଏ କହୁଛି ? ଚନ୍ଦ୍ରମାକୁ ଲାଗିଲା ମଣିଷ ଏ ନୁହେଁ । ଏଠି କେହି ନାହିଁ । ସବୁଆଡ଼ ଖୋଲା, ସବୁ ଦିଶୁଛି, ସେହି କ୍ଷେତ୍ର, ବିଲ, ବଣ, ନଈ, ଆକାଶ, ସେହି ମଣିଷ, ସେହି ସମାଜ, ଅଥଚ ଆଗୁଳ ଘରିଆଡ଼େ, ଆଉ ଏ ଯାହା ଶୁଭିଲା ଏ ସେହି ଦୂରର ଘଡ଼ ଘଡ଼ି, ଅଶରୀରୀ ସ୍ୱର, ତାହେଲେ ଏଇ କଣ ସତ୍ୟ ?

ଚନ୍ଦ୍ରମା ମୂର୍ଚ୍ଛିତା ହୋଇ ପଡ଼ିଲା ।

ଜବ୍ ଚାର୍ଣକ୍ ଆସ୍ତେ ତାକୁ ତଳେ ଶୁଆଇ ଦେଲା ।

ଆଣ୍ଠୁମାଡ଼ି ବସି ରହିଲା ତା କଡ଼ିରେ ତା ମୁହଁକୁ ଅନେଇଁ ।

ଚନ୍ଦ୍ରମାର ମୂର୍ଚ୍ଛା ଭାଙ୍ଗିଲା । ଅନେଇଲା ।

ଚାର୍ଣକ୍ ଆସ୍ତେ ଆସ୍ତେ କହିଲା "ମୋତେ କ୍ଷମା କର୍, ଯଦି କଷ୍ଟ କଥା କହି ତୋ ମନରେ କଷ୍ଟ ଦେଲି । ସବୁ ଭୁଲିଯା । ମତେ କ୍ଷମା କର୍ । ମୁଁ ତତେ ଭଲ ପାଏଁ । ମୁଁ ଭିକ ମାଗୁଚି, ମତେ ଭଲ ପା । ନଇଲେ ମୋ ଜୀବନ ବୃଥା । ଦୟା କର୍ ? ନଇଲେ ଦେଖ । ଏଇ ମୁହୂର୍ତ୍ତଠୁଁ ମୁଁ ବି ଆହାର ଛାଡ଼ିଲି । ମରିବାକୁ ଚାହୁଁଛୁ ? ଗଙ୍ଗାରେ ? ଚାଲ୍ ଦିହେଁ ଯାକ ଡେଇଁବା । କିନ୍ତୁ କାହିଁକି ? ମଣିଷ ଆମେ, ପରସ୍ପରକୁ ସୁଖୀ କରି ପାରିବା ନାହିଁ ? ବହୁତ ସ୍ତ୍ରୀଲୋକ ଦେଖିଥିଲି । ହୃଦୟ ଦେଇ ଭଲ ପାଇ ନ ଥିଲି ଏଭଳି କାହାରିକି । ନୂଆ ଜୀବନ ଆରମ୍ଭ ମୋର ଓ ତୋର ।"

ଚନ୍ଦ୍ରମା ଆତ୍ମହତ୍ୟା କଲା ନାହିଁ । ଇତିହାସରେ ରହିଗଲା, ଯେଉଁ ବିଧବାଟି ସତୀ ଯାଉଥିଲା, ଜବ୍ ଚାର୍ଣକ ମଶାଣିରୁ ତାକୁ ଓଟାରି ନେଇ ଚାଲି ଯାଇଥିଲା, ସେ ସେ ପୁଣି ତାର ସ୍ତ୍ରୀ ହୋଇ ଘର କରିଥିଲା । ବାରକ୍‌ପୁରରେ ଚାର୍ଣକ୍ ଘର ତୋଳିଥାଏ ବଜାର ବସେଇଥାଏ, ତେଣୁ ବାରକ୍‌ପୁରର ପୁରୁଣା ନାଁ 'ଚାର୍ଣକ୍' ।

ସେଇଠୁ ସେ ଯା ଆଯ କରେ ଉଲୁବେରିଆ, ଜାଗା ବାଛିବ, ବଙ୍ଗଦେଶରେ ଇଂରେଜଙ୍କ ବେପାର କେନ୍ଦ୍ରକୁ ହୁଗୁଳୀରୁ ସେଠିକି ଉଠେଇ ନେବ, ସେଇଥିପାଇଁ । ଏତେଦିଅ ସେତେଦିଅ ବୋଲି ହୁଗୁଳୀରେ ମୋଗଲ ଶାସକଙ୍କର ଭାରି ଉତ୍ପାତ, ନିରାପଦ ସ୍ଥାନ ଦରକାର । ଉଲୁବେରିଆ ପ୍ରାୟ ଠିକଣା ହୋଇ ସାରିଥିଲା ।

କିନ୍ତୁ ଯାଉ ଯାଉ ଗଙ୍ଗାକୂଳରେ ଠାଏ ପ୍ରକାଣ୍ଡ ବରଗଛ । ଜବ୍ ଚାର୍ଣକ୍ ଗଛମୂଳେ ବସି ଦମ ନିଏ, ଝାଳମାରେ । କୁଆଡ଼ୁ କୁଆଡ଼ୁ ସେଠିକି ବେପାରୀ ଆସି ରୁଣ୍ଡ ହୁଅନ୍ତି, କିଛି ବେଉସା ବି କରିନିଏ । ଜାଗା ଟି ଭାରି ସୁବିଧା । ସେଣ୍ଟ ସ୍ଥଳ । ପାଖେ ଗଙ୍ଗା, ଆଉ ଆର ପାଖେ ସନ୍ତସନ୍ତିଆ ପାଟ ଭୂଇଁ । ଶତ୍ରୁ ଦାଉରୁ ବର୍ତ୍ତି ହେବ । ସମୁଦ୍ରକୁ ପାଖ । ଜାଗାଟା ନାଁ ସୂତାନଟୀ, ଏବର କଲିକତାର ପତ୍ତିଲି ମୂଳଦୁଆ ସେଇ, ଚାର୍ଣକ ସେତେବେଳେ କିଛି ଦିନ ପାଇଁ ହୁଗୁଳିରୁ ସେଠିକି ଡେରା ଉଠେଇ ଆଣିଥିଲା ୧୫୮୬ରେ; ପଛେ ବର୍ଷକ ପାଇଁ ୧୬୮୮ରେ, ସେଉଠୁ ସବୁଦିନ ପାଇଁ ୧୬୯୮ ଅଗଷ୍ଟରେ ୧୬୯୬ରେ ବର୍ଷକୁ ବାରଶ ଟଙ୍କା ଖଜଣା ଦେଇ ଇଂରେଜ ସୂତାନଟି, କଲିକତା, ଗୋବିନ୍ଦପୁର ଏ ତିନି ଗାଁକୁ ପଟା ନେଲେ, ନାଁ ରଖିଲେ ଫୋର୍ଟ ଉଇଲିଅମ୍; ଇଂରେଜଙ୍କ କ୍ୟାଲ୍‌କାଟା ।

ସେତେ ସତେ ସେଇଠି ରୂପ ନେଲା ଗୋଟାଏ ନୂଆ ସଂସ୍କୃତି, ଭାରତୀୟ ଓ ଇଂରେଜୀ ମିଶାମିଶି; ନାଁ କଲା, ବ୍ୟାପିଲା; ସେଉଥିରେ ଭାରତର ନୂଆ ଯୁଗ ନିଜ ମୁହଁ ଦେଖିଲା । ଠିଆ ହେଲେ କୋଠା ମାଳ ମାଳ ଗାଡ଼ି ମାଳ ମାଳ ଆଲୁଅ ମାଳ ମାଳ ।

ଯୁଗେ ଯୁଗେ ଦେଶ ତାର ବିରୋଧୀ ଲୋକଙ୍କୁ ବାଧା ଦେଇଛି । କିନ୍ତୁ ଯେଉଁଠି ପ୍ରଶ୍ନ ଉଠନ୍ତୁ ନାଡ଼ି ଧରି ମରିଯିବି କି ପରନୀତିକୁ ଆଦରି ବଦଳି ଯାଇ ବଞ୍ଚି ରହିବି, ସେହି ଜୀବନ ମରଣ ସନ୍ଧିସ୍ଥଳରେ ସମସ୍ତେ କେବେ ମରଣକୁ ବାଛି ନେଇ ନାହାନ୍ତି । ରଜପୁତ ନାରୀ ଗୀତ ଗାଇ ଗାଇ "ଜହର" ନିଆଁରେ ଝାସ ଦେଇଛି ଓ ଅଥଚ ରଜପୁତ ଜେମା ମୋଗଲମାନଙ୍କ ଘରଣୀ ବି ହୋଇଛନ୍ତି । ଜୀଅନ୍ତା ମଣିଷ ବଞ୍ଚିବାକୁ ଖୋଜିଛି ଅତି ସ୍ୱାଭାବିକ ସହଜ ଭାବେ, ସଂକଟରେ ପଡ଼ି ସତ୍ୟପୀର ପୂଜା କରି ଉଧୁନି ପାରିଛି, 'ସଂକଟ ତାରିବେ ବାବା ସତ୍ୟନାରାୟଣ ।"

ଚନ୍ଦ୍ରମା ପାଇଁ ହିନ୍ଦୁ ସମାଜ ଲୁହ ଟୋପାଏ ଢାଳିବାର ଶୁଣା ନାହିଁ । କେବେ ଖବର ରଖିନାହିଁ ସେ କିଏ, କାହା ଝିଅ, କାହା ଭାରିଜା, କାହା ବୋହୂ, କୋଉ ଗାଁର, ତାର ପିଲା ଝିଲା ଥିଲେ କି ନାହିଁ, ଲୋକେ ତାକୁ କଣ ବୋଲି ଡାକୁଥିଲେ ।

ଯେମିତି ଖବର ରଖେ ନାହିଁ କିଏ କିଏ ସତୀ ଗଲେ, କି ଖାଇବାକୁ ନପାଇ ମଲେ ତାଙ୍କର କାହାରି ।

କେହି କାହା ଖବର ରଖେ ନାହିଁ ।

କଲିକତା ହୋଇଥିଲା ଇଂରେଜ ଭାରତର ରାଜଧାନୀ ପରେ ବହୁ ପୁରୁଷ ପରେ ଦିଲ୍ଲୀକୁ ଉଠାଯିବା ଯାଏ । ବଙ୍ଗଦେଶ ଭିତରେ ଭାରତ ଆଉ ପୃଥିବୀ ଯାକର ନାନା ଲୋକ ଥାଉ ବିରାଟ ମହାନଗରୀ, ବହୁତ ଦୂରକୁ ଦୂରକୁ ଶହ ଶହ ଯୋଜନକୁ ବୋଲି ନାନା କ୍ଷେତ୍ରରେ ତାର ପ୍ରଭାବର କିଛି ପଡ଼େ, ରାଜଧାନୀ ଦିଲ୍ଲୀ ଗଲା, କିନ୍ତୁ କଲିକତାର ସେହି ପୁରୁଣା ପ୍ରଭାବ ରହିଲା ନାନା ରୂପରେ, ଆହୁରି ବଢ଼ିଲା ସେ ସହର, ଆହୁରି ବିଶାଳ ଓ ସଜ୍ଜିତ ହେଲା ।

ସେ ସହରରେ ହି ତୁହାଇ ତୁହାଇ ପିଟିଲା ଭାରତୀୟ ମୁକ୍ତି ସଂଗ୍ରାମର ତୋଫାନ, ମହାତ୍ମା ଗାନ୍ଧୀଙ୍କ ଜୟଧ୍ୱନି, ପୁଣି ଜୀବନଦାବୀ ଗୁପ୍ତମାରୁ ସହିଂସ ବିପ୍ଳବୀଙ୍କ ବୋମା ଶବ୍ଦ, ବନ୍ଧୁକ ଶବ୍ଦ । ଆସିଲା ସାମ୍ପ୍ରଦାୟିକ ହାଣକାଟ ବେଳ, ସେ ସହର ରକ୍ତସ୍ନାନ ହେଲା । ପୁଣି ଭାରତୀୟ ସ୍ୱାଧୀନତାର ଆଶା ଓ ଆନନ୍ଦ ଉନ୍ମତ୍ତତା, ବାରମ୍ବାର ଆଶା ନିରାଶା, ପ୍ରତିଶ୍ରୁତି ଓ ଅବିଶ୍ୱାସ, ଭାଷଣ ଓ ଆଚରଣର ପରସ୍ପର ବିରୋଧ, ସଂଘର୍ଷ, ନିତି କେତେ ନୂଆ ବାଟ, ସବୁ ବିରୋଧ ସବୁ ସଂଘର୍ଷ ହତ୍ୟା ଝାଟିଯାଳ ରହିଗଲା ବିଶାଳ କଲିକତା ମହାନଗରୀ, ତଥାପି ଛିଡ଼ିଲା ନାହିଁ ବଢ଼ିଲା, ବଢ଼ୁଛି, ଆହୁରି ବଢ଼ିବ ।

ଚନ୍ଦ୍ରମା ଗୁଣକ ଏ ପୃଥିବୀ ଛାଡ଼ି ଚାଲିଯିବାର ଅଢ଼େଇ ଶହରୁ ବେଶି ବର୍ଷ ହୋଇଥାଏ । ଆଉ ଗୋଟିଏ ଚନ୍ଦ୍ରମା ଦକ୍ଷିଣରୁ କଲିକତା ବୁଲି ଆସିଥାଏ ତା ସ୍ୱାମୀ ସଙ୍ଗେ, ଆଞ୍ଜିନେଇଲୁ ବ୍ୟବସାୟୀ ସଂସ୍ଥାର କର୍ମଚାରୀଟିଏ, ଉଚ୍ଚ ଶିକ୍ଷିତ, ବିଦେଶ ବୁଲିଛି, ବିଭା ହେଇଛି ଦି ବର୍ଷ ହେବ, ଚନ୍ଦ୍ରମା, ବିଦୁଷୀ, ଚମତ୍କାର ବୋଲେ ତ୍ୟାଗରାଜ କୃତି, କୁଚିପୁଡ଼ି ଓ ଭରତ ନାଟ୍ୟମ୍ ଅତି ସୁନ୍ଦର ନାଚେ, ଦରିଦ୍ର ଗୃହସ୍ଥ ଘର ଝିଅ, ସଞ୍ଜୀବ ରାଓ ଗୁଣ ଦେଖି ବାଛି ବୋହୂ କରିଛନ୍ତି ।

ଅଦ୍ଭୁତ ପରାକ୍ରମୀ ଏ କଲିକତା, ଚନ୍ଦ୍ରମା ବହିରୁ ପଢ଼ିଛି, ଖବର କାଗଜରୁ ପଢ଼ିଛି । କେତେ ବିପ୍ଳବ କେତେ ଆନ୍ଦୋଳନ ସେଠି ଗତ ଅଢ଼େଇଶ ବର୍ଷ ଭିତରେ ମୁଣ୍ଡ ଟେକିଛି । ଗୀତ ନାଚ ମଉଜିଆ ମଣିଷ, ହଠାତ୍ କେଉଁ ଖବରେ ମାତିଉଠି ଉତ୍‌କ୍ଷିପ୍ତ ଅବସ୍ଥାକ ହୋଇ ଉଠନ୍ତି । ଖାଲି ଆମର ଦାବୀ । ଆମର ଦାବୀ । ଖବର ଉନ୍ମାଦନାରେ ଏକାଠି ହୁଅନ୍ତି, ହେଣ୍ଡାଲ ଛାଡ଼ନ୍ତି, ମୁଣ୍ଡ ଗଲେ ଯାଉ, ଖବରି ଥାଉ । ଯେମିତି ସେମାନଙ୍କର ଖୁବ ଉନ୍ମାଦନାମୟ ଗୀତଗୁଡ଼ିକ । ଚନ୍ଦ୍ରମା ତା ଭାଷା ବୁଝେ ନାହିଁ, ଅନୁଭବ କରେ ସେ ଭାଷା ଉଦ୍ଦାମରେ ପାଗଳ ବିହ୍ୱଳତା, କେତେ ସରଳ, ଅଥଚ କେତେ ଉଦ୍‌ଭଟ ତାର ଆବେଗ ।

ସେହି କଲିକତା ଦେଖି ସେ ଯାଉଛି, ଜୀବନରେ ପ୍ରଥମଥର । ସେ ଦେଖିବେ, —ସେ ପଢ଼ିଛି,—କୁଆଡ଼େ ବାମପନ୍ଥୀ ସରକାର, ସେମାନେ ଗରିବର ବନ୍ଧୁ । ଭଲ ତ । ଗରିବ ନୁହେଁ କିଏ ? ଦେଶରେ କେଇଟା ବା ଧନୀ । ଗରିବଙ୍କର ମଙ୍ଗଳ ହେଲେ ଦେଶରହିଁ ମଙ୍ଗଳ । ତେବେ—ନକ୍ସଲପନ୍ଥୀ ? ନରହତ୍ୟା ? ଉଗ୍ର ବିଦେଶୀବାଦ ? "ଧନିକମାନଙ୍କୁ ମାରିପକା,—ବଳ ଖଟେଇବା ଦରକାର,—ସଭ୍ୟତାର ଜନ୍ମ ବନ୍ଧୁକର ନଳି ଭିତରୁ' । ସେ କି ଭଲି ?

ଆସିବା ଆଗରୁ ସେ ବିଷୟରେ ବି ସେମାନେ କଥାଭାଷା ହୋଇଥିଲେ । ଚନ୍ଦ୍ରମା କହିଲା "ସମସ୍ତଙ୍କ ଆଖିରେ ତାଙ୍କ ନିଜ ମତର ଯଥାର୍ଥତା ଥାଏ । ଅପର ଲୋକ ଆଖିରେ ପଡ଼େ ଭୁଲ୍ । ଯେମିତି ଭଗତ୍ ସିଂ । କିନ୍ତୁ ଏକଥା କଣ ମିଛ ଯେ ଏ ଦେଶରେ ଏପରି ଶୋଷକ ଅଛନ୍ତି ଯେ ମଣିଷଙ୍କୁ ହାତରେ ନ ମାରି ଭାତରେ ମାରନ୍ତି ତିଳ ତିଳ କରି ମାରନ୍ତି, ମଣିଷ ଦେଖେ କେଉଁଠି ହେଲେ ତା ପାଇଁ ଠାବ ନାହିଁ ?"

' କିନ୍ତୁ ସେଥିପାଇଁ ତୁମେ କଣ ନରହତ୍ୟାକୁ ସମର୍ଥନ କରିବ ?"

"ତୁଣ୍ଡରେ ସମର୍ଥନ କାର୍ଯ୍ୟରେ ସମର୍ଥନ ଦିଟା ଭିନେ କଥା, କେତେ କଥା ଆମେ ଭାବୁଁ କିନ୍ତୁ କରିବାକୁ ହାତ ଯାଏ ନାହିଁ, ଅଥଚ ଅନ୍ୟମାନେ ଆମ ପାଇଁ କରିଦିଅନ୍ତି । ଯେ ବିପଦ ଭିତରେ ପଶନ୍ତି, ଅଯନା କାମ କରନ୍ତି, ଆମର ଉପକାର କରନ୍ତି ଆମେ ପୁଣି ଖୋଜୁଁ ତାଙ୍କଠି ବାଗ୍ମୀ, କୋମଳତା, କରୁଣା, ନ ପାଇଲେ ଚିଡ଼ୁଁ, ଯେମିତି ଗଣ୍ଡଗୋଳ ଦମନକାରୀ ଅସ୍ତ୍ରଧାରୀ ପୁଲିସ୍‌ଗୁଡ଼ିକ । ଭାରି ଗୋଳମାଳିଆ । କଣ ଆଉ କହିବି" ?

"ଠିକ୍ କଥା କହିଲ ଚନ୍ଦ୍ରମା, ସରଳ ସାଧାରଣ ମଣିଷର ନିରାହ ସ୍ୱାକାରେକ୍ତି । କିନ୍ତୁ ମଝି ବାଡ଼ ଉପରେ ତ ସବୁଦିନେ ବସି ରହିହେବ ନାହିଁ, ଓହ୍ଲେଇବାକୁ ପଡ଼ିବ ଏପାଖକୁ ବା ସେପାଖକୁ ।

"କଲିକତା ତ ବାହାରିଛେଁ, କିନ୍ତୁ ଏ ନକ୍ସଲାଇଟ୍ ହତ୍ୟାକାଣ୍ଡ ଖବର ଯେ ଖବର କାଗଜରେ ବେଳେ ବେଳେ ଦିଏ, ସେକଥା ବି ମୁଁ ଭାବେଁ । ତୁମେ ଏତେ ସହରେ ବୁଲୁଛ—"

ବସ୍ତୁତଃ କଲିକତା ଯିବାକୁ ହଠାତ୍ ଭାବ ଝୁଙ୍କ ପଛଆଡ଼େ ଲୁଚିଥିଲା ଏହିଭଳି କିଛି କାରଣ, ନିଜ ଆଗେ ଧରା ପଡ଼ିଗଲା, ସେ ବିବ୍ରତ ହେଲା, ସ୍ୱାମୀ ଆଗରେ ଧରା ପଡ଼ିଗଲା, ସେ ଝଲଝଲ ହସରେ ଅଦ୍ଭୁରି ଲୋଭନୀୟ ଦିଶିଲା ।

"ଓଁ ସେଇ କଥା ।" ଅଞ୍ଜିନେଇଲୁ କହିଲା, "କାହାକୁ କିଏ ହତ୍ୟା କଲେ ଏଭଳି କେତେଟା କାହାଣୀ । କିନ୍ତୁ କେଉଁଠି କାହା ଉପରେ ମଟର ଚଢିଲା ସେ କାହାଣୀମାନଙ୍କ କଥା ତ କହିଲ ନାହିଁ । ଦେଖ, କଲିକତା କହିଲେ ଗୋଟାଏ ସହର ନୁହେଁ, ସତେ ଯେମିତି ମାଳ ମାଳ ସହର ଏକାଠି ଗୁନ୍ଥା ହୋଇଛି । ଅସୁମାରି ଜନତା ଅସୁମାରି ଇଲାକା । ଏଭଳି ଦୁର୍ଘଟଣା ଲକ୍ଷେ ଲୋକରେ ଜଣକୁ ହୁଏ କି ନହୁଏ, ସେ ପୁଣି କୁଆଡ଼େ କୁଆଡ଼େ । ଆଉ ମାରିବେ ବି ଯାହାକୁ, ଭୁଲ ହେଲେ ବି କାରଣ ତ କିଛି ଥିବ । ଭବି ଠିକଣା କରିଥିବେ ତ ଆଗରୁ ? ପିଛା ତ ନେଇଥିବେ ସେଥିପାଇଁ ଆମର ଚିନ୍ତା କଣ ?"

"ନା ଚିନ୍ତା ନାହିଁ, ତେବେ ଶୁଣିଲେ ମନଟା କେମିତି ହୁଏ ।"

"କିଛି ନାହିଁ । ଆମେ ବି ଖଟି ଖାଇବା ଲୋକ, ମାର୍କାମରା ଧନୀ ନୋହୁଁ ।"

"ଉତ୍‌କ୍ଷିପ୍ତ ଜନତା ଏତେ ବାଛ ବିଚାର କରେ ଭାବୁଛ ? ଯେତେଯେତେ ବିପ୍ଳବ ଘଟିଯାଇଛି ଇତିହାସରେ"—

"ସେଗୁଡ଼ାକ ନ ଭାବିବା ଭଲ । ଇତିହାସ ମୁଁ ବୁଝେ ନାହିଁ । ମେସିନ୍ ଚିହ୍ନେ । କାଣେ ଆଉ ଫଳ, ମପାଚୁପା । ସେମିତି ଭାବିଲେ ମଣିଷର ଜନ୍ମ ବେଳୁ ମଞ୍ଜି ଭିତରେହିଁ ମୃତ୍ୟୁ ଥାଏ । ଜୀବନ ତାଳ ପତ୍ର ମେଲେ ତ ମୃତ୍ୟୁ ବି । କେତେବେଳେ କେଉଁ ଫଳ ଭିତରୁ ତକ୍ଷକ ବାହାରିବ ତା କେହି କହିପାରେ ନାହିଁ । ନା, କଲିକତାରେ ସାଧାରଣେ ଜୀବନ ବିପନ୍ନ ହେବା ଖବର ମୁଁ କେଉଁଠି ଦେଖୁନାହିଁ ତ । ସବୁ ଠିକ୍ ଚାଲିଛି ନିୟମ ପ୍ରକାରେ ।"

ଆଶଙ୍କା ଆସିଥିଲା ଓ ଚାଲିଯାଇଥିଲା ।

"ମୁଁ କଣ କାହା ଶତ୍ରୁ" ? ଘୁଙ୍ଗୁଲେଇ ହୋଇଥିଲା ସେ ମନେ ମନେ । ମଶାଟାକୁ ଠାଇକିନା ଚଟକଣାରେ ମାରି ବାହୁ ଉପରୁ ପାପୁଲି ଟେକି ପାପୁଲିରେ ରକ୍ତ ଦେଖିଲା । ଦେଖିଲା ମଶାର ଚେପା ଶରୀରକୁ ।

"ଏ ମୋର ରକ୍ତ ଶୋଷୁଥିଲା । କିନ୍ତୁ କି ଦୋଷ ତାର ? ସେଇତ ତା ଆହାର । ସେଥିପାଇଁତ ତା' ଶରୀରର ଏ ବିଚିତ୍ର ଗଠନ । କିନ୍ତୁ ଯେତେ ପିମ୍ପୁଡ଼ି, ଯେତେ ପୋକଯୋକ ମୋ ପାଦତଳେ ମରନ୍ତି, ସେମାନେ ମୋର କି ଦୋଷ କରିଥାନ୍ତି ?

ଆଉ ଯେତେ ନଥିବା ନିଦରବି ପଲପଲ, ଚୁଲି ନାହିଁ, ଚାଳ ନାହିଁ, ଦି ଓଳିରେ ମୁଠାଏ ମିଳେ ନାହିଁ, ଅଥବା ଶୁଖା ଶୁଖା ମୁଠାକ ପାଇଁ ଖରରେ ବରଷରେ କେତେ ପରିଶ୍ରମ,— କଣ ମୁଁ କରିଛି ତାଙ୍କର ? ସେମାନେ ମୋର ବନ୍ଧୁ ନା ଶତ୍ରୁ ?

ସଂସାରରେ କେତେ ସମସ୍ୟା । ଭାବିଲେ ଆଉ କିଛି କରି ହେବ ନାହିଁ । ନ ଭାବିଲେ ଭଲ ।

ଶୋଷକ ନୋହୁଁ ତ ଆମେ । ନା ଆମେ ନୋହୁଁ । କିଏ, ତା ସଂପୂର୍ଣ୍ଣ ଅଜଣା ନୁହେଁ । ସେ । ସେମାନେ" ।

ଆଉ ସେକଥା ସେ ଭାବିନାହିଁ ।

ଉଦ୍ଧାଡାହାଡ ଘୂରିଛି । ବୁଢା କାଚ ଝରକା ପାଖେ ସେ । ସ୍ୱାମୀ ତାର ତାହାଣେ । ଦୁଇପାଖେ ଦୁଇ ଦୁଇ ହୋଇ ଆଗପଛ ହୋଇ ଧାଡ଼ିଗୁଡ଼ିଏ । କିଏ ବସିଛନ୍ତି ତାର ସେଣିକି ନିଘା ନାହିଁ । ସେ ଅଛି, କଡ଼ିରେ ତାର ସ୍ୱାମୀ, ପଦାରେ ଯେଉଁ ଅନନ୍ତ ଅନ୍ଧାରମୟ ଶୂନ୍ୟତା ଦିଶୁଛି ତହିଁରେ ତାର ବି ଦୃଢ଼ ଓ ସ୍ପଷ୍ଟ ସତ୍ତା ସେ ଅନୁଭବ କରୁଛି । ଆଗକୁ ଭାବିଲେ ବର୍ତ୍ତମାନକୁ ହିଁ ଦେଖିପାରୁଛି । ତେଣୁ ସବୁ ଆନନ୍ଦ, ଅଭୟ, ଆଶ୍ରୟ ।

"କେତେ ଭଲପାଏ ମୁଁ ୟାଙ୍କୁ ? ଯଦି କିଛି ଉପାୟ ଥାନ୍ତା ମିଶିଯିବାକୁ ସେ ଶରୀର ଭିତରେ, ମନ ଭିତରେ, ଆତ୍ମା ଭିତରେ । ଆଉ ମୁଁ ବୋଲି କିଛିନାହିଁ, ସବୁ ଖାଲି 'ସେ', ଆଉ ଏ ଅନ୍ଧାର ପରି ଚିକ୍କଣ ବିସ୍ତୃତି, ଶୂନ୍ୟ ଭିତରେ ବି ଅଣୁ, ଅଣୁ ଭିତରେ ବି ଆନନ୍ଦ, କି ଆନନ୍ଦ ।"

"ଦେଖ ଦେଖ ହେଇ ଦେଖ କଲିକତା—" କାନପାଖେ ଓଠ ଦେଇ ନଇଁପଡ଼ି ଆଞ୍ଜିନେଇଲୁ ଫୁସ୍‌ଫୁସ୍ କରି କହିଲା, "ହେଇ ଯେଉଁ ଆଲୁଅ ଦିଶୁଛି, ଯେତେ ଦୂରକୁ, ସବୁ ।"

ଚନ୍ଦ୍ରମାର ଦେହ ଶିର୍‌ଶିରେଇ ଉଠିଲା । ଆଖିରେ ଦେଖି ସେ ଭାବିପାରି ନଥିଲା, ମନ୍‌ମୀନ ବୁଡ଼ି ରହିଥିଲା ଅକାତ ପାଣିରେ । ଏଥର ସେ ଆଖିକି ଉଠିଲା ।

କଣ ସେ ଦେଖୁଛି ।

ବିରାଟ ରୂପ ଘେନି ଅନ୍ଧାର ଆତ୍ମପ୍ରକାଶ କରିଛି । ମୁଣ୍ଡ ଦିଶୁନାହିଁ, ହାତ ଗୋଡ଼ ଦେହ କିଛି ଦିଶୁନାହିଁ କିନ୍ତୁ ଶରୀର ତାର ଅଛି ଏ ତ ନିଶ୍ଚୟ । ସେଇତ ସେ ପିନ୍ଧିଛି ସରି ସରି ହୋଇ ମଣିମାଣିକ୍ୟ ହୀରାନୀଳାର ହାର, ନାନା ରଙ୍ଗର ଢ଼ିକିଢ଼ିକି ଦାଉ ଦାଉ, ଗଦା ଗଦା ଆଭରଣ ନାଇ ଝଟକୁଛି ।

ଚନ୍ଦ୍ରମାର କେଉଁ କଳ୍ପନାମୟ ଧ୍ୟାନ ସତକୁ ସତ ଏଠି ମୂର୍ତ୍ତିମତୀ ହୋଇଛି । ମନେ ମନେ କହିଲା,

"ଐଶ୍ୱର୍ଯ୍ୟମୟି । ଚମତ୍କାରିଣି । ପରମ ରୂପବତି । ମା-ମା-ମା—" ସେ ଦଣ୍ଡବତ ହେଲା ।

ଆଞ୍ଜିନେଇଲୁ ହସିଦେଇ ପଚାରିଲା, "କାହାକୁ ଦଣ୍ଡବତ ହେଲ ?" ଚନ୍ଦ୍ରମାର ଆଖିରୁ ଗଦ୍‌ଗଦ ତନ୍ମୟଭାବ ଛାଡ଼ି ଛାଡ଼ି ଆସୁଥାଏ, ହସି କହିଲା "ତୁମେ ବୁଝିପାରିବ ନାହିଁ, କଲିକତାର ଆତ୍ମାକୁ, କଲିକତା ମା'କୁ ।"

ଆଞ୍ଜିନେଇଲୁ କହିଲା "କଲିକତାର ଭାଗ୍ୟ । ଯେ ତୁମେ ତା ଆତ୍ମାକୁ ଭେଟିଲ । କଣ କହିଲା ?"

କିନ୍ତୁ ମୁଗ୍‌ଧ ହୋଇ ସ୍ୱାମୀର ମୁହଁକୁ ଚାହିଁ ରହିଲା ।

ମନେ ମନେ ଭାବିଲା,—ଭାଗ୍ୟବାନ୍ ମୁଁ ।

ଚନ୍ଦ୍ରମା କଲିକତା ଉପଭୋଗ କରିବ ।

ଏ ଐଶ୍ୱର୍ଯ୍ୟରେ ତାର ବି ଭାଗ ରହିବ, ତାର, ସେ ଦୁହିଁଙ୍କର, ସେମାନଙ୍କର ସନ୍ତାନମାନଙ୍କର । ସ୍ୱାଧୀନ ଭାରତ, ସୁନ୍ଦର ଭାରତ ଗଢ଼ି ହୋଇ ବଢ଼ି ବଢ଼ି ଉଠୁଛି । ଆଜିର ସମସ୍ୟା କାଲିକି ନଥିବ । ସେମାନେ ଯୁବକ ଯୁବତୀ, ସାମ୍ନାରେ ଜୀବନ ପଡ଼ିଛି, ଖଟିବାକୁ, ସୁଖସମୃଦ୍ଧିର ଯୋଗ୍ୟହେବାକୁ । ଚନ୍ଦ୍ରମା ଆସିଲାପରେ କେତେ ତା ଯତ୍ନ ନେଉଛି, କେତେଗୁଣ ବଢ଼ିଯାଇଛି ତା ଉତ୍ସାହ ଓ କାର୍ଯ୍ୟକୁଶଳତା ।

ସ୍ୱାଧୀନ, —ସ୍ୱାଧୀନ ଭାରତ, —ସ୍ୱାଧୀନତା ପରେ ସେମାନଙ୍କ ଜନ୍ମ । କେମିତି ଥିଲା ଏ ଦେଶ ଯା ପୂର୍ବରୁ, ପରାଧୀନ ଭାରତ, ଇଂରେଜଙ୍କ ଭାରତ ? ସେତେବେଳେ କଣ ଏ କଲିକତା ଏପରି ଥିଲା ? କଣ ଆଶା କରୁଥିଲେ ସେ ଲୋକେ ?

ତା ବାପା ସଞ୍ଜୀବ ରାଓ ସେ ଅମଳର ପୁରୁଣା କର୍ମଚାରୀ ଜଣେ, ଫଟୋରୁ ଦିଶେ ବଡ଼ ବଡ଼ ନିଶ ଥାଇ ଗମ୍ଭୀର ତଜ୍ଜାପୂର୍ଣ୍ଣ ମଣିଷ । ଏବେ ଧର୍ମପୁସ୍ତକ ପଢ଼ା, ଠାକୁର ପୂଜା, ସାଧୁ ସଙ୍ଗ ।

ପଚାରିଲେ କହନ୍ତି "ସେଇ ପରାଧୀନ ଭାରତରୁ ତୁମର ଜନ୍ମ ରେ, ଭୁଲିଯିବ ନାହିଁ ।"

ଦମଦମ୍ ଉଡ଼ାଜାହାଜ ଷ୍ଟେସନରେ ଓହ୍ଲାଇ ପଡ଼ିଲା ପରେ ଚନ୍ଦ୍ରମା କହିଲା "କଲିକତା ମା' ଉପରୁ ଦିଶୁଥିଲା ସିନା, ତଳେ ଆଉ ଦେଖା ଦେଉନାହିଁ ।"

ଟ୍ୟାକ୍‌ସି । ହୋଟେଲ୍ । ତିନି ମାହାଲାରେ ମନନାଖୀ ଟିକି ଚଢ଼େଇ ବସାଟିଏ, ଶୀତତାପ ନିୟନ୍ତ୍ରିତ, ଆରାମ । କବାଟ ଦେଲେ ସ୍ୱତନ୍ତ୍ର ପୃଥିବୀଟିଏ, ପଦା ସଙ୍ଗେ ଖବର ଦେଣନେଣ ବି ନାହିଁ ।

ଯା ଆଗରୁ କିଏ ଥିଲେ ଏ ଘରେ ? କିଏ ଶୋଇଥିଲେ ଏ ନରମ୍ ଗଦି ଉପରେ ? ଯେମିତି ପୃଥିବୀର ଚିନ୍ତା ଛାଡ଼ି, ସ୍ଥାନ ଦେଉଥାଏ ଅକଳନ ଯୁଗରୁ ଅକଳନ ପ୍ରାଣୀଙ୍କି, ପ୍ରତ୍ୟେକକୁ ନୂଆ ଲାଗେ ।

ଅନ୍ଧାର । ବିସ୍ମୃତି । ଚନ୍ଦ୍ରମା ସ୍ୱପ୍ନ ଦେଖୁଛି । ମା'ର ତାର ପୂରିଲା ପୂରିଲା ସୁନ୍ଦର ମୁହଁ । କେତେ ଜକଜକ ହାରସବୁ ନେଇଛି । ହସୁଛି । ହାରରୁ ବୋହୋଉଛି ରଙ୍ଗ ରଙ୍ଗ ଅଲୁଅ, ଦାନାକୁ ଦାନା ଗୁନ୍ଥା, ସରିକି ସରି । "ନେ ନେ ନେ, ଏ ସବୁ ତ ତୋ ପାଇଁ", ମା କହୁଛି ।

ସକାଳେ ସେ ସଡ଼କକୁ ଅନାଇଥିଲା । ଲାଗିଲା ସଡ଼କର ଗହଳିରେ କଣ ଚଞ୍ଚଳତା ଓ ତ୍ରସ୍ତତା । "କେଜାଣି ? ଏ କଣ ମୋ ମନର ଭ୍ରମ ?" ସେ ଭାବିଲା । ଆଞ୍ଜିନେଇଲୁକୁ ପଚାରିଲା—

"ଆଜି କିଛି ଗୋଳମାଳ ଲାଗିଛି କେଉଁଠି ?"

"କାଗଜରେ କି ରେଡ଼ିଓରେ ତ ନାହିଁ । କିଏ କହିଲା ?"

"ବଢ଼ି ଆସିଲେ ନଈରେ ଯେମିତି ଫେଣ ଆସେ, ସଡ଼କରେ ସେମିତି କଣ ଦେଖିଲାଭଳି ଲାଗିଲା ।"

ଆଞ୍ଜିନେଇଲୁ ହସିଲା । କହିଲା "ମଣିଷ ବଢ଼ି ଏ ସହରରେ ଦିନ ଭିତରେ ଅନେକ ଥର । କାହିଁ ? କେଉଁ ସହରରେ ନଥାଏ କି ? ଗୋଳମାଳ ଦେଖିଲ କିଛି ? ତା ବି କେତେବେଳେ ଲାଗେ, ଯାଏ, ପଟୁଆର ଗଲେ ଗର୍ଜନ ଛାଡ଼ି ଛାଡ଼ି, ତେଲା ବି ଗଲେ, ନୂଆ କଥା କଣ ?"

ଚନ୍ଦ୍ରମା କହିଲା "ଭାବୁଥିଲି –"

ଆଞ୍ଜିନେଇଲୁ କହିଲା "ମୁଁ ତ ମନା କରୁଥିଲି । ସହରଟାଏ ତ, ଦେଖିବ ଆଉ କଣ ? ତା ଛଡ଼ା, ତୁମର ବି ହେଲାଣି ତିନିମାସ, କହନ୍ତି ଏତେବେଳେ ପଦାଲୋକଙ୍କ ଦୃଷ୍ଟିପଡ଼େ ।"

ଚନ୍ଦ୍ରମା ଲଜ୍ଜିତ ହେଲା । କହିଲା "ଧ୍ୟାତ୍ ।"

"ମିଛ ନୁହେଁ । କହନ୍ତି ମଣିଷ ଏତିକିବେଳେ ଛାନିଆ ହ'ନ୍ତି, ଛାନିଆ ହେବା ଦେହକୁ ଖରାପ ।"

"ଛାନିଆ ଫାନିଆ ମୋର ନାହିଁ । ତୁମେ ତ ଅଛ । କିଏ ମତେ ଖାଇ ଯାଉଛି ? ବହୁକାଳୁ ଇଚ୍ଛାଥିଲା କଲିକତା ଦେଖିବି, ଇତିହାସରେ ଏତେ ପଢ଼ିଛି । ମାନ୍ଦ୍ରାଜ୍—ମାନେ ଇଂରେଜମାନଙ୍କ ଫୋର୍ଟ୍ ସେଣ୍ଟ୍ ଜର୍ଜ୍ ଅବଶ୍ୟ କଲିକତାଠୁଁ ବହୁତ ଆଗର । କିନ୍ତୁ କଲିକତାହିଁ ତ ଆଗ ହୋଇଥିଲା ଇଂରେଜ ଭାରତର ରାଜଧାନୀ । ଆଉ କି ଇତିହାସ । ଧନ୍ୟ ସେ ଜବ୍ ଚାର୍ଣ୍ଣକ୍, ନିଆଁଗିଳା ହୁଂକାପିଟା ହୁଣ୍ଡା ଗୁଣ୍ଡା ସିନା, ଢାଗାଟା ବାଛିଥିଲା ଭଲ ।"

"କେଜାଣି । ହୁଏତ ବାଛିଥିଲା ସେହି ହିନ୍ଦୁ ବିଧବା, ଯେ ସତୀ ଯାଉ ଯାଉ ଚାର୍ଣ୍ଣକ୍ ତାକୁ ଓଟାରି ନେଇ ବିଭା ହେଲା । ଜାଣିଛ ତା ନାଁ ?

"ନା"

"ତୁନି ହେଲ ଯେ ? ତୁମେ ସେ ସ୍ତ୍ରୀଲୋକ ବିଷୟରେ ଭାବୁଛ, ସତ କି ମିଛ ?"

"ଠିକ୍ କହିଛ ।"

"କଣ ଭାବୁଛ ?"

"ଗ୍ରହ ନ ଥିଲା, ଓଟରା ହୋଇ ଗଲା । କିନ୍ତୁ ନିଜେ ରାଜି ନ ହୋଇଥିଲେ କଣ ଚାର୍ଣ୍ଣକ୍‌ର ସ୍ତ୍ରୀ ହୋଇ ରହିଥାନ୍ତା ? ହିନ୍ଦୁ ସ୍ତ୍ରୀ, ସତୀ ଯାଉଥିଲା, ତାପରେ ଚାର୍ଣ୍ଣକ୍‌ର ଘରଣୀ, ଠିକ୍ ମିଶେଇ ପାରୁନାହିଁ ମୁଁ ।"

ଆଞ୍ଜିନେଇଲୁ ଜୋର୍‌ରେ ଜୋର୍‌ରେ ମୁଣ୍ଡ ହଲେଇଲା, କହିଲା

"ବୁଝିଲି । ତୁମ ମନରେ ଖାପୁ ନାହିଁ । ଯେମିତି ପୂର୍ବେ କିଏ ଥିଲା ସଦାଚାରୀ, ଆତ୍ମତ୍ୟାଗୀ, ପରର ସେବାକାର୍ଯ୍ୟରେ ଜୀବନ ଢାଳି ଦେଉଥିଲା, ପଛେ ହେଲା ଭୋଗବିଳାସରେ ବନ୍ଦୀ, ଦୁର୍ନୀତିଗ୍ରସ୍ତ, ନରାଧମ, ପତିତ, ଏମିତି ଭାବୁଛ ?"

"ଅଚ୍ଛା କର ନାହିଁ । କିନ୍ତୁ ଭାବ, ଅନ୍ୟ ଉପାୟ ନ ମିଳିଲେ ବା ସେ କଣ ନିଜ ହାତରେ ମରି ପାରି ନ ଥାନ୍ତା ?"

''ଜାଣେ ନାହିଁ । ତା ଅବସ୍ଥାରେ ପଡ଼ିଥିଲେ ଜାଣିଥାନ୍ତି ବା । କିନ୍ତୁ ବ୍ରେନ୍ ଓ୍ୱାସିଂ ମସ୍ତିଷ୍କ ଧୋଇଦେଇ ପ୍ରବୃତ୍ତି ପରିବର୍ତ୍ତନ, ଏଭଳି କଥାଟାଏ ବି ଅଛି । ସମସ୍ତେ ମରନ୍ତି ନାହିଁ । ପରିସ୍ଥିତିର ନାନା ପେଷଣରେ ପଡ଼ୁ ପଡ଼ୁ ମୁଣ୍ଡ ଭିତରଟା ସତେକି ଓଲଟି ପଡ଼େ, ମତ ବଦଳେ, ଭଲ ମନ୍ଦ ଧାରଣା ବଦଳେ । ତା ନ ହୋଇଥିଲେ ଅତେଇଶ ବର୍ଷ ଭାରତର ଲୋକ ଇଂରେଜ ଶାସନକୁ ସହି ନଥାନ୍ତେ ।''

ଚନ୍ଦ୍ରମା ହସିଦେଇ କହିଲା ''ତୁମେ ଯଦି ଇତିହାସ ବି ନେଇଥାନ୍ତ, ସେଥିରେ ବି ତୁମ ନଜରର ଥାନ୍ତା ମୋଟ୍ ବହୁତ ଉଚ୍ଚରେ । ଛାଡ଼ ସେ କଥା । କଲିକତା କହିଲେ ମନେ ପଡ଼ନ୍ତି କ୍ଲାଇଭ୍, ସିରାଜ୍‌ଉଦ୍ଦୌଲା, ପଲାସୀ, ଓ୍ୱାରେନ୍ ହେଷ୍ଟିଂସ୍, କର୍ଜନ୍—''

''ଆଉ ବନ୍ଦେ ମାତରଂ, ଅରବିନ୍ଦ, କ୍ଷୁଦୀରାମ୍, ନେତାଜୀ ସୁଭାଷ୍''

''ଆଉ ଶ୍ରୀରାମକୃଷ୍ଣ, ବିବେକାନନ୍ଦ, ରବୀନ୍ଦ୍ରନାଥ—''

''ଅନେକ ଅନେକ । ଅନେକ ମହାପୁରୁଷ, ମହତ୍ ଲୋକ, ଜ୍ଞାନୀ, ଗୁଣୀ । କିନ୍ତୁ ଖାଲି ସେତିକି ତ ନୁହେଁ । ଜ୍ଞାନ ବିଜ୍ଞାନର ନାନା ଶିଖା । ତା ସହିତ ଧନର, ସଂଗଠନର, ମହା ମହା କୋଟିପତି, ପ୍ରକାଣ୍ଡ ପ୍ରକାଣ୍ଡ କଂପାନି ଓ କାରଖାନା, ଅକଳନ ମଣିଷ, ଆଉ,—''

ଆଞ୍ଜିନେଇଲୁ ଗମ୍ଭୀର ହୋଇଗଲା, କହିଲା ''କଲିକତା ଗୋଟାଏ କିଛି ବୋଲି ନୁହେଁ । ଯେମିତି ସମୁଦ୍ର ଭିତରେ ଗୋଟାଏ ଆବର୍ତ୍ତ । ମନ୍ଥନରୁ ଅମୃତ କିଛି ବାହାରେ, ଆଉ ବାହାରେ ମାରାତ୍ମକ ବିଷ । ଗୁଣ୍ଡା, ଗୋଳମାଳ ହାଣକୋଟ ବି ବହୁତ ଦେଖିଛି ଏ କଲିକତା, ସେମାନେ ବି ତ ଏଇ ସହରର । କିନ୍ତୁ ସେ କଣ ଖାଲି ଏଠିକାର ବିଶିଷ୍ଟତା ଆଉ କେଉଁଠିକାର ନୁହେଁ ?''

''ଦେଖାଯିବ ତୁମ କଲିକତା କେମିତିଆ ।''

ତାପରେ ଚନ୍ଦ୍ରମା ଗାଇଲା ତ୍ୟାଗରାଜଙ୍କର କୃତିଟିଏ ।

ଆଞ୍ଜିନେଇଲୁ ଆଖି ପୋଛିଲା ।

ଦିନ ଚାରିଟା ବାଜିଥାଏ । ଶୀତ ଦିନର ଶୀତଳ ସୁନେଲି ଖରା । ସେମାନେ ଟ୍ୟାକ୍‌ସିକୁ ବିଦା କରିଦେଲେ । ଚନ୍ଦ୍ରମା ପିନ୍ଧିଥାଏ କମଳା ବର୍ଣ୍ଣର କାଞ୍ଚୀ ଶାଢ଼ୀ, ବାରହାତୀ ଦକ୍ଷିଣୀ ପାଟ, ତାର ଖୋଲା ଦକ୍ଷିଣୀ ଖୋଷାରେ ହଳଦିଆ ସେବତୀ ଫୁଲଗୁଡ଼ିଏ ଖଞ୍ଜା ହୋଇଥାଏ, ମୁଣ୍ଡରେ କୁଂକୁମ ବୁନ୍ଦା, ସିନ୍ଦୂର, କାନରେ ଧଳା ଧଳା ପଥର ଯୋଡ଼ିଏ, ବେକରେ ସରୁ ସୁନାହାର, ହାତରେ ସରୁ ସରୁ ସୁନାକାଚ ଦି ଦି ପଟ । ଆଞ୍ଜିନେଇଲୁ ପିନ୍ଧିଥାଏ ବାଇଗଣି ସୁଟ, ନେଳି ଟାଇ, ନେଳି ମୋଜା, କଳା ଜୋତା ।

ସେମାନେ ମନ କରିଛନ୍ତି ଚାଲି ଚାଲି କଲିକତା ଦେଖି ଦେଖି ଯିବେ, ଥକିଲେ ଟ୍ୟାକ୍‌ସି ଡାକିବେ, ତା ଆଗକୁ ଚାଲି ଚାଲି ଉପଭୋଗ କରିବେ କଲିକତାର ଜନତାଙ୍କ ସାନିଧ୍ୟ, ନାନା ଦୃଶ୍ୟ ।

ଟ୍ରାମ୍, କାର୍, ବସ୍, ସ୍କୁଟର୍, ମଣିଷ । ତଥାପି ଗହଳି ଭିଡ଼ବେଳ ଅଛୁରି ଡେରି ଅଛି, ସେତେବେଳେ ଅଫିସ୍‌ସବୁ ଛୁଟିହେବ, ଇସ୍କୁଲ ଛୁଟି ହେବ । ସଡ଼କ କରର ଦୋକାନୀ, ଠେଲା ଗାଡ଼ିବାଲା, ମୁଣ୍ଡବୋଝିଆ ବିକାଳି ସେଇ ଶୁଭ ମୁହୂର୍ତ୍ତକୁ ଅପେକ୍ଷା କରିଛନ୍ତି, ଶୀକାରୀ ଆଖିରେ ଗ୍ରାହକ କିନା ପଦାକୁ ଅନାଇ ଦେଇ ପୁଣି ଉଦ୍ବାହୁଛନ୍ତି ନିର୍ଲିପ୍ତ ହୋଇ ଅପେକ୍ଷା କଲାପରି । କୋଠାଘର ଦୋକାନ ଆଗରେ ଗରାଖି ଅଭାବ ନାହିଁ । କଲିକତା ଖାଲି ଚାକିରିଆଙ୍କ ଉପରେ ନିର୍ଭର କରେ ନାହିଁ । ପାର୍କମାନଙ୍କ ଆଡ଼କୁ ଲୋକ ଚାଲିଲେଣି ।

"ପ୍ରତିଦିନ କୋଟି କୋଟି ଟଙ୍କାର କାରବାର ଏଠି ଚାଲେ," ଆଞ୍ଜିନେଇଲୁ ଆପଣା ଭାଷାରେ କହିଲା । "କଲିକତା ଭାରି ବେପାରି ସହର ।"

"ସେଇଥିପାଇଁ ଏତେ ଯକାଯକି, ଏତେ ଅର୍ଦ୍ଧାଉଳିଆ, କଣ ଯେ ଯା ଚେହେରା ତାତ ମୁଁ ଠିକଣା କରି ପାରୁନାହିଁ ।" ଚନ୍ଦ୍ରମା କହିଲା, "ଆଚ୍ଛା ଦେଖ, ସତେ ଯେମିତି ସାମ୍ନାରେ କରରେ ହତା ବୋଲି କିଛି ନାହିଁ, ରାସ୍ତା ଦାନ୍ତରେ ଘର ଦୁଆର ମୁହଁ, କରରେ ଆଉ କାହା ଘର, ଲଗାଲଗି । ଆଚ୍ଛା କହିଲ ଗଛଗୁଡ଼ାକ କାହିଁ ?"

"ଗଛ ଅଛି ପାର୍କରେ, ବଗିଚାରେ, ତୋଟାରେ ଜଙ୍ଗଲରେ, ଆଉ କୋଉଠି ଥିବ ଭାବୁଛ ?"

ଉଭୟେ ହସିଲେ । ଚନ୍ଦ୍ରମା କହିଲା "ବଗିଚାରେ ତ ନିଶ୍ଚୟ ଥିବ, ବଗିଚା କାହିଁ ?"

"ଯାହା ବଗିଚା ତା ଘରିକାଛ ଭିତରେ ଥିବ, ଆଉ କୋଉଠି ?"

"ସେକଥା ବି ଭାବୁଥିଲି ।"

"କାହିଁକି ?"

"ଆମ ଆଡ଼େ ଏପରି ନାହିଁ । ପ୍ରତି ଲୋକର ଗଛ ଆଉ ବଗିଚା ସହର ଗୋଟାକଯାକର ସୌନ୍ଦର୍ଯ୍ୟ ବଢ଼ାଏ । ଏଠି ବ୍ୟକ୍ତି ନିଜ କଥାହିଁ ବେଶି ଭାବେ ବୋଧହୁଏ, ସର୍ବସାଧାରଣଙ୍କ ପାଇଁ ବଗିଚା ଓ ପାର୍କତ ଗୋଟିଏ ଅଲଗା ଅନୁଷ୍ଠାନ, ଏଠି ବି ଅଛି ସେଠି ବି ଅଛି ସବୁ ସହରରେ ସେ ।"

"ପଦାରେ ଫଳ ଗଛ କି ଫୁଲ ଗଛ ରଖିଲେ ବାଟର ବାଟୋଇ ଯଦି ଛିଣ୍ଡେଇ ନେଇଯିବେ ?" ଆଞ୍ଜିନେଇଲୁ କହି ହସିଦେଲା ।

"ତା ବି ସତ । ସେଥିପାଇଁ ବି ସଂଯମ ତାଲିମ୍ ଦରକାର । ବ୍ୟକ୍ତିଗତ ସମ୍ପତ୍ତି ଏଠି ନିରାପଦ ନୁହେଁ ।"

ସତେ ଯେମିତି କଲେଜ ପଢ଼ୁଆ ଛାତ୍ରଛାତ୍ରୀ ଯୋଡ଼ିଏ, ଟପୁର ଟାପୁରୁ ଗପି ଗପି ଯାଉଛନ୍ତି ।

ଫୁଟ୍‌ପାଥ୍ ବାଁ କରେ ଗୋଟାଏ ପାର୍କର କାଛ । ତିନିକରୁ ବଡ଼ ବଡ଼ କୋଠାସବୁ ଉହୁଁକି ରହିଛି, ନଅ ମାହାଲା, ଅଠମାହାଲା, ଛ'ମାହାଲା । ଇଟା

ସିମେଣ୍ଟ ଲୁହାର କର୍କଶ ସୃଷ୍ଟି । କେତେ ଖୁଣ୍ଟ, କେତେ ତାର । ପାର୍କ ଭିତରେ ଠାଏ ଠାଏ ତେଙ୍ଗା ତେଙ୍ଗା ଝଙ୍କା ଝଙ୍କା ଗଛ, ତଳେ ଛନ ଛନିଆ ଶାଗୁଆ ଘାସ, ଏଠି ସେଠି ସୁନ୍ଦର ବୁଦାଗୁଡ଼ିଏ, ଅଳ୍ପ ଅଳ୍ପ ବଗିଚା । ସେହି ଡିଆ ଢାଅନ୍ତା ସତେଜ ଦୃଶ୍ୟ ଦେଖି ଦେଖି ସେମାନେ ଚାଲିଛନ୍ତି, ଖାତଦିନର ଖବରେ କ୍ଲୋରୋଫିଲ୍ ଝଲସି ଉଠୁଛି ।

ଚନ୍ଦ୍ରମା ସେହି ପୁରୁଷ କଥାର ଖିଅଧରି ପଚାରିଲା ।

"ଏଠି ଏତେ ଠେଲାପେଲା କାହିଁକି ? କଣ ଖାଲି ଗହଳି ବୋଲି ? ମୁଁ ତ ଭାବୁଛି ସୁନ୍ଦର ଭାବେ ଏ ଗହଳି ନିୟନ୍ତ୍ରିତ ହୋଇ ପାରନ୍ତା, ଖାଲି ସାମାନ୍ୟ ଧୈର୍ଯ୍ୟ ଥିଲେ । ସମସ୍ତେ ସତେକି ଏକାବେଳକେ ନିଜ କାମ କରେଇ ନେବାକୁ ଚାହାନ୍ତି । ମୁଁ.....ମୁଁ.... ମୁଁ.....ଆଗ ମୁଁ, ବାଙ୍ଗାଲୋର୍ କି ମାଡ୍ରାଜ ସଙ୍ଗେ ତୁଳନା କଲ ।"

"ସେସବୁ ସାନ, ଏ ଯେ କେତେ ବଡ଼, କେତେ ଲୋକ, ତର କାହିଁ ?"

"କିନ୍ତୁ ଠେଲାପେଲା ହେଲେ ସମସ୍ତଙ୍କର କେତେ ଅସୁବିଧା ?"

ଆଞ୍ଜେନେଇଲୁ ହସିଲା, କହିଲା "ଅଭ୍ୟାସ, ସ୍ୱଭାବ ସ୍ଥାନକୁ ସ୍ଥାନ ଭିନେ । ଏ ସହରର ବୁଦ୍ଧିମାନ ଲୋକ ହୁଏତ ସେଠିକି ଗଲେ ଭାବିବ, ଏ ଲୋକଗୁଡ଼ାକ କେତେ ଓଲୁ, କେତେ ଅଳସୁଆ, ଆଗ ଲୋକର ପାଳି ସରିବାଯାଏ ପଛରେ ରହି ଅପେକ୍ଷା କରିଛନ୍ତି ନା । "ଛାଡ଼ । ଆଉ କେତେ ଚାଲିବ ? ହେଲା ତ ଦଶ ମିନିଟ୍ । ଟ୍ୟାକସି ଧରୁଁ ।"

"ନା ନା, ଆଜି କେମିତି ପିଲାଦିନ ମନେ ପଡ଼ୁଛି ଏ ପାର୍କକୁ ଦେଖି । ଇଚ୍ଛା ହେଉଛି ବୁଲେଁ ତା ଭିତରେ, ଖୋଜେଁ, ଆବିଷ୍କାର କରେଁ ।"

"କାହାକୁ ?"

"ଆଗ ମୋ ନିଜକୁ ।"

ଦିହିଙ୍କର ହସ ଏକାଠି ବାଜି ଉଠିଲା, ମୁକ୍ତ, ସୁନ୍ଦର, ଲୀଳାୟିତ ।

ଆଉ ଠିକ୍ ସେତିକିବେଳେ ଘଟିଗଲା ସେ ଘଟଣା । ପାର୍କର ଫାଟକ ପାଖକୁ । ଖଣ୍ଡେ ଛାଡ଼ି ପାର୍କ କାଛକୁ ଲାଗି ଆଉ ଗୋଟାଏ ସାନ ଘରର ଫାଟକ । କୁଆଡ଼ୁ ପହଞ୍ଚି ଯାଇଥିଲେ ସେମାନେ । ଆଞ୍ଜେନେଇଲିକୁ ଧରି ସାରିଥିଲେ । ତା ପାଟି ଭିତରେ ଅସନା କନା ମେଞ୍ଚାଏ, ମୁହଁରେ ବନ୍ଧନ୍, ପ୍ରତି ହାତ ପ୍ରତି ଗୋଡ଼ ଧରା । ଅବିକଳ ସେହିପରି ଚନ୍ଦ୍ରମାକୁ, ଆଉଠାଏ, ପାଟି ଫିଟିବ ନାହିଁ, ହାତ ଗୋଡ଼ ହଲିବ ନାହିଁ । ମୁହୂର୍ତ୍ତକେ ଉଭେଇଗଲା ତା ଶରୀରରୁ ତା କାଞ୍ଚୀ ଶାଢ଼ୀ, ତା ବ୍ଲାଉଜ୍, ସାୟା, ସାମାନ୍ୟ ଗହଣା ଯାହା, ତା ଜୋତା, ସବୁ । ସେପଟେ ଆଞ୍ଜେନେଇଲୁ ଶରୀରରୁ ତା ପ୍ୟାଣ୍ଟ , କୋଟ୍, ମୋଜା, ଜୋତା, ତା କମିଜ ବିଦା ହେଲା । ଚନ୍ଦ୍ରମାର ନଗ୍ନ ଶରୀରକୁ ମାଡ଼ି ରଖିଲେ ଆଉ କୋଠାର ଫାଟକର ଖିଲାଣରେ ଚାପି ଧରି । ତାପରେ ଆସିଲେ ମାଡ଼ି ଗୋଟାକୁ ଗୋଟା ମଣିଷ-ପଶୁ ।

ଥାଟି ଫିଟୁ ନାହିଁ । ମୂର୍ଚ୍ଛିତ ଶରୀର । ଅଧା ଚେତାରେ ଆଖି ଖୋଲୁଛି ବୁଜି ହେଉଛି, ସେ ଆଖି ଦେଖୁଛି ମୃତ୍ୟୁଠୁଁ ଆହୁରି ଭୟାନକ କଣ । ଦେହସାରା ଖଣ୍ଡ ଖଣ୍ଡ ହୋଇ ଯାଉଛି ଘୃଣାରେ, ଯନ୍ତ୍ରଣାରେ, ଭୟରେ, ଅପମାନରେ, ଦେହ ନୁହେଁ ଯନ୍ତ୍ରଣା ଓ ଅପମାନର ପଞ୍ଜରା । "ମା ମାଲୋ, ମୁଁ ମରିବି—ମୁଁ ମରୁନାହିଁ କାହିଁକି ?" ପୁଣି ମୂର୍ଚ୍ଛା ଯାଉଛି ।

ଯେମାନେ ଚାଲିଛନ୍ତି, ଭଦ୍ର ନାଗରିକ, ମୁହଁ ବୁଲେଇ ନେଇ ଚାଲି ଯାଉଛନ୍ତି । ସେମାନେ ଦେଖୁଛନ୍ତି, କୋଠା ଉପରୁ, ପ୍ରତି ଦୁଆର ମୁହଁରୁ, ପ୍ରତି ଝରକାରୁ, ଭଦ୍ର, ସୁସ୍ଥ ନାଗରିକ । ଦିଟା ପୁଲିସ୍ ଗାଡ଼ି ସଡ଼କରେ ଗଲା, ଚେତାର ଖଞ୍ଜା ହୋଇଛି, ଦେଖି ପାରିନାହିଁ ବୋଧହୁଏ, ନୁହେଁ ? ବନ୍ଧୁକୀ ବି ବସିଥିଲେ ତ । ପୁଲିସ୍ ଗାଡ଼ି ଛକରେ ଠିଆ ହେଲାଣି ପଛ କରି, ଏଠୁ ଖଣ୍ଡେ ଦୂରରେ ।

ସରଳ ବିଶ୍ୱାସ ଉପରେ, ନିରାହତା ଉପରେ, ବିଜୟ ସଂପୂର୍ଣ୍ଣ ହୋଇଛି । କିଏ କୁଆଡ଼େ ଉଭେଇ ଗଲେଣି । ରାସ୍ତା ମଝିରେ ଠିଆ ହୋଇ ଟଳି ଟଳି ସବୁଆ ହାତଟାଏ ଟେକିଛି ଧଡ଼ିଆ ଯୁବକଟାଏ, ଆର ହାତରେ ମଦ ବୋତଲ । ଚାରିଧାର ହୋଇ ଅଟକି ଠିଆ ହୋଇଛି ସବୁ ମାଡ଼ି, ତା ପଛକୁ ତା ପଛ । ସେ ଆହୁରି ମଦ ପିଉଛି । ସେ ନ ଛାଡ଼ିବା ଯାକେ ଅପେକ୍ଷା କରିବାକୁ ପଡ଼ିବ, ସେମାନଙ୍କର ଅଭିଜ୍ଞତା ଅଛି । ଦିଶୁଛି ଏକ, ପ୍ରକୃତରେ ସେ ଗୋଟାଏ ଥାଟର ମୁଣ୍ଡିଆଳ ।

ସେ ତୁଷ୍ଟ ହେଲାଣି, ବାଟ ଦେଲାଣି, ଚାଲିଗଲାଣି ।

ଯୋଡ଼ାଏ କ୍ଷତବିକ୍ଷତ ରକ୍ତାକ୍ତ ମଣିଷ ଦେହ, ଜଣେ ଯୁବକର ଜଣେ ଯୁବତୀର, ଫୁଟ୍‌ପାଥ୍ ଉପରୁ ଡାକ୍ତରଖାନାକୁ ବୋହି ନିଆଗଲାଣି । ସେଇଠି ଜଣା ପଡ଼ିବ, ଜୀବନ ଅଛି କି ନାହିଁ, ଯଦିବା ପ୍ରାଣ ଥିବ, ବଞ୍ଚିବେ କି ନାହିଁ ।

ସଡ଼କରେ ସବୁଦିନଭଳି ଭିଡ଼, ଗାଡ଼ି, ମଣିଷ, ଅଛିଣ୍ଡା ସୁଅ, ସବୁଦିନ ପରି ପାଟି ଚହଳ, ନାନା ଶବ୍ଦ । କେତେ ଚେହେରା, କେତେ ବେଶ, ପ୍ରକାର ପ୍ରକାର, ହସ, ଖୁସି, ଆଗ୍ରହ, ଉତ୍‌ପ୍ରେକ୍ଷା । ଯେ ବି ଗୋଟାଏ ନଈ । ଏତିକିବେଳେ ଏ ନଈରେ ଜୁଆର ଆସେ । କ୍ଷଣକ୍ଷଣକେ ନୂଆ ପାଣି ଆସେ, କ୍ଷଣକ୍ଷଣକେ ପୁରୁଣା ପାଣି ଉଭେଇ ଯାଏ । ଟିକିଏ ଆଗରୁ ଏଡ଼େ ବିଭତ୍ସ ଏଡ଼େ ଅଶ୍ଳୀଳ ବର୍ବର ପାଶବିକ ନିଷ୍ଠୁର ଅପବିତ୍ର କରୁଣ ଘଟଣା ଘଟିଗଲା ଏଠି । କିଏ କହିବ ? ଲୋକେ ଲଟକିଛନ୍ତି, ଠେଲାପେଲା ହେଉଛନ୍ତି, ଯକାଯକି ହୋଇ ବସିଛନ୍ତି, ଚାଲିଛି ଟ୍ରାମ୍, ବସ୍, କାର୍‌ମାଳ । ସୁନ୍ଦର ମହାନଗରୀ । ସବୁଦିନେ ସମୃଦ୍ଧ । ଏଥର ଆଲୁଅ ଜଳିବ । ପୁଣି ଉପରୁ ଦିଶିବ ସରି ସରି ରଙ୍ଗ ପଥରର ହାର । ଆଉ ହାର ଢାଙ୍କି ହୋଇ ତମସାର ବିସ୍ମୟକର ରୂପ ।

———

# ମନର କଥା

ଆଷାଢ଼ ରାତିର ବହଳ କଳା ଆକାଶ ତଳକୁ ଓହ୍ଲାଇ ପଡ଼ି ଦୃଷ୍ଟି ଅଟକାଇ ହୋଇଛି ଯେପରି ମୁଣ୍ଡ ଉପରେ ଗୋଟାଏ ନୂଆଁ ଶିଆ ଅଟୁ, ତାହାରି ତଳେ,—ନାନା ରଙ୍ଗର ଆଲୁଅ ଖଞ୍ଜା ଖଞ୍ଜି ଆଉ ମେଞ୍ଚା ମେଞ୍ଚା ମଣିଷ ।

ଦୂରରେ ଗହଳି ଆଉ ରଙ୍ଗ ରଙ୍ଗ ଆଲୁଅ ଆଡ଼କୁ ଚାହିଁ ଏକୁଟିଆ ଡ୍ରାଇଭ ରାତ୍ରି ଚାଳକ ବେଦବ୍ୟାସ ଅନୁଭବ କଲା ତାରି ପୃଥିବୀ ଅତି ସଂକୀର୍ଣ୍ଣ ଆଉ ସଙ୍କୁଚିତ ହୋଇ ଆସୁଛି । ନିଶ୍ୱାସ ଅଟକି ଯିବ, ତଣ୍ଟି ଚିପି ହୋଇ ଆସୁଛି । ଏଥର ସାମ୍ନାରେ ବଡ଼ ଫାଟକ ପାଖ ହେଲାଣି, ବାଁ ହାତରେ ଷ୍ଟିଅରିଂ ଚକକୁ ଆସ୍ତେ ମୋଡ଼ି ଦେଲା ।

ବେଦବ୍ୟାସର ଭାବନା ଆଉ ଦୃଷ୍ଟି ଧକାଧକି ହୋଇ ସେହି ସଂକୀର୍ଣ୍ଣ ପରିସର ଭିତରେ ଆଗକୁ ପଛକୁ ଖେଳି ଲାଗିଲା । କଳା ଆକାଶର ତଳେ ଅତି ଅଳ୍ପ ଫାଙ୍କ । ସେଠି ସାମ୍ନାର ମଣିଷ ହିଁ ବଡ଼, ଆଉ କିଛି ବଡ଼ ନୁହେଁ । ସମସ୍ତେ ଯେପରିକି ସୁଅ ମୁହଁରେ ଟଣା ହେଲାପରି ଚାଲି ଯାଉଛନ୍ତି ସେହି ଫାଟକ ସେପାଖକୁ ରାସ୍ତାରେ କେହି ନାହିଁ । ଛକ ଉପରେ ଏକୁଟିଆ ପୁଲିସ୍ ତାର ବେଦୀ ଉପରେ ନିଶ୍ଚଳ ହୋଇ ଠିଆ ହୋଇଛି, ତା ସେ ପାଖକୁ ସେ ବଡ଼ ଘର, ପ୍ରସିଦ୍ଧ ଇଟା ଓ ଟାଇଲ ବ୍ୟବସାୟୀ ବ୍ରଜନାଥ ବିଶ୍ୱାଳଙ୍କର ।

ଆଜି ପରା ତାଙ୍କ ଝିଅର ବିଭାଘର ।

ଟୁନି ବିଭା ହେଉଛି ।

ଭାବି ଭାବି ହାଲିଆ ହୋଇ ଯାଇଥିବା ମନରେ ଏହି ବଡ଼ ଫାଟକ ପାଖରେ ବେଦବ୍ୟାସ ମନକୁ ମନ କହିହେଲା,—ଟୁନି ବିଭା ହେଉଛି । କଥାଟାକୁ ମସ୍ତିଷ୍କ ଗ୍ରହଣ କରିବାକୁ ନାରାଜ୍ । ଆହୁରି ନାରାଜ୍ ତାକୁ ସ୍ନାୟୁବାଟେ ଦେହର ଚାରିଆଡ଼େ ଖେଳାଇ ଦେବାକୁ, ଓଲଟି ମନେ ପଡ଼ୁଛି,—ଟୁନି ଅଛି । ଟୁନି ଥିବ ।

ଫାଟକ ବାଟେ ଭିତରକୁ ପଶିଲେ ବଡ଼ ଅଗଣା ସେପଟେ ଦୋତାଲା କୋଠା କରେ କରେ ଫୁଲ ଫୁଟା ଟେରି ଗଛ ଦିଧାଡ଼ି । ମଝିରେ ବାଙ୍କୁ ପଡ଼ିଛି ନାଲି ଫିତା ପରି ସରୁ ବାଟ, ହଠାତ୍ କୋଠା ଦେହରେ ଗୋଟିଏ ଛୋଟ ଦୁଆର ମୁହଁ, ପଶିଗଲେ ଚଉରିକଣିଆ ଅଗଣାକୁ ବେଢ଼େଇ ରଖି ଗୋଟିଏ ସାନ ଖଞ୍ଜା, ନିଛାଟିଆ, ସେହି ଟୁନିର ଖେଳ ଘର କି ଖିଆଲ ଘର । ଭିତର ଖଞ୍ଜାକୁ କବାଟ ଅଛି । ସେଇଠି ସକାଳେ ସେ ଗୀତ ମାଷ୍ଟରଙ୍କଠୁଁ ଗୀତ ଶିଖୁଥିଲା, ଦିପହରରେ ଦିଜଣ 'ସାର୍' ଆସୁଥିଲେ ପାଠ ପଢ଼େଇବାକୁ । ସେଇଠି ସଞ୍ଜ ବୁଢ଼େ ଲଟା ଗୋଲାପର ଦେଉଳ ପରି କୁଞ୍ଜକୁ ପିଠି ଆଡ଼େ ରଖି ଆରାମ ଚୌକି ଉପରେ ବିଛେଇ ହୋଇ ପଡ଼ିଥିବ ଟୁନି, ଆସ୍ତେ ଆସ୍ତେ ଗୋଡ଼ ହଲେଉଥିବ, ହୁଁ କରି କହିବ ।

"ଗେଣ୍ଡୁଭାଇ ଆସିଗଲ କି ? ଏତେ ଡେରି କାହିଁ ? ବସ ।" ସତେ ଯେପରି ସେ କେତେବେଳୁ ପାଖରେ ବସିଥିଲା, ହଠାତ୍ ବିନା ବଚନିକାରେ ଥଟା ଲଗେଇ କହିବ, —

"ଶୁଣ ଗେଣ୍ଡୁ ଭାଇ । ତୁମେ ପୁଣି ବଡ଼ ପାଶ୍ କଲାବାଲା ଡାକ୍ତର । ମଡ଼ା କାଟୁଥିବ । ଜୀଅନ୍ତା ଲୋକଙ୍କ ବେକରେ ଛୁରୀ ଦଉଥିବ, ଏତେ ଛାତି ତମର । କିନ୍ତୁ ତମରି ଏ ତକ ତକିଆ ଚେହେରା, ତୋଫା ଗୋରା, ତମର ଏ ପାନପତ୍ର ପରି ଧାର ମୁହଁ, ସରୁ ବାଙ୍କ ଓଠ, ଢଳ ଢଳ ଆଖି, ଆଉ ତମର ଏ ଗହଳ ଆଉ ଲମ୍ବାବାଳ ଯେତେଥର ମୁଁ ଦେଖେ ମୋତେ ଭାରି ଲୋଭ ହୁଏ, ଭାବେ, ମୋର ଏମିତି ଥାଆନ୍ତା କି ? ତମ ଓଠ ସତେକି ବାଟ ଚାହିଁ ବସିଛି ଲିପଷ୍ଟିକକୁ, ଆଖି କଜଳକୁ, ସରୁ ଗୋଜିଆ ଟିପ ନେଲ୍‌ପଲିସକୁ, ମାଲୋ, କି କଅଁଳ ହାତ ! ଆଣିଲ ଚିପି ଦେବି, ଚିପିଦେଲେ ରକ୍ତ ବାହାରି ପଡ଼ିବ ଅଇଛା—"

ବୋଉ ଥିବେ ।

"କେତେ ଫାଜିଲ୍ ହଉ ଥାଉ ଲୋ ଟୁନ ! ମୋ ଭାଇ ହେବେ ପରା ଗେଣ୍ଡୁର ବାପା ? ଭାଇଟାକୁ ଏମିତି ହଟହଟା କରି କଥା କହୁଛୁ, ତୋଠୁ ବଡ଼ ସେ—"

"ଆଃ ! ଭାରିଟାଏତ !—ମିଛ କରୁଛୁ ବୋଉ, ଦେଖିଲୁ ତାଙ୍କ ହାତକୁ, କେତେ ନରମ—"

"ଜାଣିଲୁ ଟୁନି, ଯାହାକୁ ତୁ କହୁଛୁ ନରମ। ହାତ ମିଡ଼ଓ୍ୱାଇଫ୍ରିରେ ତାର ପ୍ରୟୋଜନ ବେଶୀ, ଅପରେଶନ ଫ୍ରିରେ । ଡାକ୍ତର ଯାଉଁଲେ, ଆଶ୍ୱାସ ଦିଏ, ରୋଗ ଭଲ କରେ, ତା ହାତ ହୋଇ ନାହିଁ ପଂଝା ଲଢ଼ିବାକୁ କି ଖୁନ୍ଦା ମାରିବାକୁ ।"

"କିନ୍ତୁ ତମ ନିଶଟା ଦେଖିଲେ ଯେ ନାଇଁ ସେ କହିଦବ ତମେ ଲଢ଼େଇକି ବାହାରିଚ ।" କାନ୍ଧ ଉପରେ ହାତ ଥୋଇ ଦେଇ ଗେହ୍ଲେଇ ହୋଇ କୋବଲେଇବ, ଦେଖେଁ ଆଉଥରେ ବୁଲା ମୁହଁଟି, ବୋଉ ଦେଖୁଛୁ କେମିତି ମୁହଁ ଲୁଚେଇଉଛନ୍ତି ? ତମେ ଏ ନିଶର ଲମ୍ବ ଓସାର କେତେ ଦିନରେ ଥରେ ଲେଖାଁ ବଦଳାଅ କହିଲ ? ମୁଁ ତ ଭାବୁଚି ଚନ୍ଦ୍ର ସାଙ୍ଗରେ ଯାର କିଛି ସମ୍ପର୍କ ଅଛି, ମାନେ,—ଭୂଗୋଳରେ ଟିକିଏ ପରିବର୍ତ୍ତନ ଦରକାର, ଜହ୍ନ ଯେ ଖାଲି ସମୁଦ୍ରକୁ ଓଟାରି ଓଟାରି ପୁନେଇଁ ଦିନ ବଡ଼ ଜୁଆର କରାଏ ତା ନୁହଁ, ଓଟାରେ ଆମ ଗେଣ୍ଡୁଭାଇଙ୍କ ନିଶକୁ ବି, ଚନ୍ଦ୍ରକଳା ସାଙ୍ଗେ ସାଙ୍ଗେ ସେ ବି ବଢ଼ୁଥାଏ ଛିଡ଼ୁଥାଏ ।"

ସତେକି ସାମ୍ନା ଆଉ ଜଳିପଡ଼ି ତା ଉପରେ ଅଜାଡ଼ି ହେଉ ହେଉ ହଠାତ୍ ଆପଣାକୁ ରୋକି ନେଇଛି, ମୁହଁ ଉପରେ ତାହାରି ନିଶ୍ୱାସ, ଆଖି ଉପରେ ତାରି ଦୃଷ୍ଟି, ହସିଦେଇ କହିବ "ତୁମେ ମୁହଁ ବୁଲେଇଥା, ମୁଁ ତୁମ ନିଶ ଓଟାରେଁ—"

"ତୁ କଣ ଚନ୍ଦ୍ର ?"

"ତୁମେ କଣ କହୁଛ ?"

ଛାତି ହୋଇ ଗ୍ଲଳି ଯାଉଛି, ଦେହରେ ଢେଉ, କେଡ଼େ ଦିଶେ ସୁନ୍ଦର ସେ ସେତିକିବେଳେ । ମନହୁଏ ଧାଇଁଯାଇ ଅଟକାଏଁ, ଦୁଇ ତ୍ରିଭୁଜକୁ ଏକାଠି ମିଳେଇଲା ପରି ଲଖାଇ ରଖେଁ ଆପଣାଠିଁ ।

ଗ୍ଲହିଁ ରହିଲେ ମଣିଷ ଦେହ ମନେପଡ଼େ ନାହିଁ, ଦି ବର୍ଷ କାଳ ପରିଶ୍ରମ କରି ଘୋଷି ଘୋଷି ମଣିଷ ଦେହର ଯେତେ ହାଡ଼ ଗୋଡ଼ ସେ ଚିହ୍ନିଥିଲା, ଶବଚ୍ଛେଦ ଦେଖି ଛବି ଆଙ୍କି ଶୋଉଥିଲା ବେଳେ ସୁଦ୍ଧା ଛାତି ଉପରେ ଅଚିହ୍ନା ମଣିଷର ମୁଣ୍ଡ ଖପୁରି ଥୋଇ ବହି ସଙ୍ଗେ ମିଳେଇ ମିଳେଇ ଯେତେ ଟିକିନିଖି କରି ଚିହ୍ନିଥିଲା ସେ ମଣିଷ ଦେହକୁ ସବୁ କାହିଁ ଭୁଲି ହୋଇଯାଏ । ଚୁନିର ଦେହ ଆଉ ଚୁନିର ରୂପ ସତେକି ଡାକ୍ତରୀ ଶାସ୍ତ୍ରର ବର୍ଣ୍ଣନା ବାହାରେ, ଭିନ୍ନ ତାର ଗଠନ, ଏକଦମ ସ୍ୱତନ୍ତ୍ର ।

କଇଁଫୁଲରେ ଜହ୍ନରାତି ମିଶି ତାର ଦେହର ବର୍ଣ୍ଣ । ତତଲା ଦେହକୁ ଛାଇତଳିଆ ଗହୀର ପୋଖରୀର କଳାଢ଼ୁମର ପାଣିର ନିମନ୍ତ୍ରଣ ପରି ତାର କଳା ଡୋଳା ଦୋଉଟି ।

ତାର ହାତ ଗୋଡ଼ ଲତା ବିଶେଷ ।

ତାର ଦେହ ଦିନବେଳେ ଫୁଲ ଫଳ କଇଁ, ରାତି ହେଲେ ନିଦୁଆ ଢେଉ ।

ବଣ ଉହାଡ଼ରେ ଲୁଚିଲା ଛାପିଲା ଅଚିହ୍ନା ଟିକି ଫୁଲର ବାସ୍ନାପରି ତାର ଦେହର ସୌରଭ ।

ଏପରି ଲେଖିଲେ ହୁଏତ ବୃଦ୍ଧ ପରୀକ୍ଷକ ବଦ୍ଧେଇଦ୍ଦାଲା ଡକ୍ଟର ପାନିକାକରେ ନମ୍ବର ପରିବର୍ତ୍ତେ ଥୋଇ ଦେବେ ମହାଶୂନ୍ୟର କଣିକାଏ, କିନ୍ତୁ ଚୁନିର ଅନ୍ୟ ଉପାଦାନ ସେ ଭାବି ପାରେ ନାହିଁ । ତାର ସମଷ୍ଟି ନାହିଁ ଗ୍ରେ'ସ ଆନାଟୋମିର ମୋଟା ବହିରେ, ହୁଏତ କବିତା ବହିରେ କିଛି କିଛି ଥିବ । ବେଦବ୍ୟାସ ଅନେକ ଥର ଦୀର୍ଘଶ୍ୱାସ ପକାଇ ଭାବିଛି କେବଳ ବାପାଙ୍କ ସଉକ୍ ମେଣ୍ଟାଇବା ପାଇଁ କଷ୍ଟ କରି ଡାକ୍ତରି ନ ପଢ଼ି ସେ ଆଟ୍‌ସ ପଢ଼ି କାବ୍ୟ କବିତା ଚିହ୍ନିଥିଲେ ହୁଏତ ଜୀବନକୁ ପାଇଥାନ୍ତା ଆହୁରି ନିକଟରେ; ସଂସ୍କୃତି ଓ ସାହିତ୍ୟ ନ ଜାଣିଲେ ବି ବହି କିଛି କିଛି ଦେଖେ, ପୃଷ୍ଠା ଓଲଟାଏ, କବିତାର ପୃଷ୍ଠପୋଷକ ବୋଲାଏ ଆଉ ଖବର ରଖେ ଯାବତି ଯେତେ କବିମାନଙ୍କର । ବନ୍ଧୁ ମେଳରେ ବଡ଼ ପାଟିରେ କହେ—

"ମୁଁ ଡାକ୍ତର ସତ, କିନ୍ତୁ ମୋର ଏ ପୋଥି ଉପରେ ସନ୍ଦେହ ହୁଏ, ସବୁ ଏଠି ଫସିଲାଇଜ୍‌ଡ୍, କନ୍‌ଜରଭେଟିଭ୍ ଓ ଅବ୍‌ଶୋଲିଟ୍, କିନ୍ତୁ ମଣିଷ ଦେହର ବି ଯେଉଁ ରେଲେଟିଭ୍ ଇଣ୍ଟରପ୍ରିଟେଶନ୍ ଆମେ ଜୀବନରେ ଦେଖୁଁ ତା ପାଇଁ ଏଠି ସ୍ଥାନ ରଖି ନାହାଁନ୍ତି ।"

ଏକା ସେ ନୁହେଁ, ସହପାଠୀ ଆଉ କେହି କେହି ତାଙ୍କର ଛାତ୍ର ବି କବିତାରେ ଆପଣା ଅନୁଭୂତିର ସତ୍ୟ ପାଉଥିଲେ ।

ସେହି ଟୁନି ତାର ଜୀବନକୁ ନୂଆ ଅର୍ଥ ଦେଇଥିଲା । ଟୁନି ଗୀତ ଗାଉଥିବ, ଲୁଚି ଲୁଚି ଗଛ ଉହାଡ଼ରେ ଠିଆ ହୋଇ ସେ ଶୁଣିବ । ଟୁନି ଅଛି ତ, ଯିବ କୁଆଡ଼େ ?

ଆଲୁଅ ଜଳ ଜଳ ବଡ଼ ଅଗଣାରେ ଧାଡ଼ି ହୋଇ ଥୁଆହୋଇଥିବା ଜାତି ଜାତି ମଟରଗାଡ଼ି କରରେ ଆପଣା ଜୀପ୍ ଗାଡ଼ିଟି ଡେରି ଦେବାକୁ ବୁଲାଇଲା ବେଳେ କରୁଣ କାନ୍ଦଣାରେ ମନ ଭିତରେ ତୋଫାନ ଛୁଟିଲା, ମନେ ମନେ ଝାଙ୍କି ହେଲା,—ଟୁନି ଆଉ ନାହିଁ, ଟୁନିର ବିଭାଘର ସରିଲାଣି ଦିନ ଗୋଟାଏ ବେଳୁ, ଆଜି ରାତି ପାହାନ୍ତାରେ ହୁଏତ ସେ ବିଦା ହୋଇଯିବ, ଟୁନି ନାହିଁ, ଟୁନି ନାହିଁ ।

ଦୁନିଆଁଟା ଯାକ ତଳ ଉପର ହୋଇ ଓଲଟପାଲଟ ହୋଇ ଆଉଟି ହୋଇଗଲା ଆଖି ଆଗରେ, ସବୁ ଗୋଳିଆଗୋଳି ହୋଇ ଗୋଟାଏ ପ୍ରବାହ, ସେଠି କାହାରି କିଛି ବିଶେଷ ଅର୍ଥ ନାହିଁ । ସେହି ଭଉଁରି କରରେ ସେ ନିଜେ ଖାଲି ଖଣ୍ଡେ ପଥର, ଆଉ କିଛି ନୁହେଁ ।

ଘଡ଼ର ଘଡ଼ର ଜୀପ୍‌ଟା ବନ୍ଦ କରିଦେଇ ବେଦବ୍ୟାସ ଓହ୍ଲାଇଲା, ସତେ ଯେପରି ଠିଆ ଠିଆ ଖସିପଡ଼ିଲା ପରି ।

ଭରିଶହ ଲୋକଙ୍କ ପାଟି ଯେପରିକି ଯଥେଷ୍ଟ ହେବନାହିଁ । ତେଣୁ ଲାଉଡ଼୍‌ସ୍ପୀକର ଲାଗି ହୋଇ ରେଡ଼ିଓ ଗର୍ଜୁଛି ରାଷ୍ଟ୍ରଭାଷାରେ ପରୁଷ ଧ୍ରୁପଦ ସଙ୍ଗୀତ,—

"ଆ ଆ ଆ ଆ ଆ ଆ ଆ..... ..... ...

ଶାଁବରିଆ ତେରେ ହ୍ରୁଁ ଉଁ ଇଁ ଉଁ ଆଁ.....ଆଁ"—ନାକେଦମ୍ ହୋଇ ଧୁନ୍‌ରେ ମାତି ଲାଗି ପଡ଼ିଛନ୍ତି ସୁଦୂର ଦିଲ୍ଲୀ ସହରରେ । ଓସ୍ତାଦ୍ ଅମୀର ଆଲି ଖାଁ, ଦୁଇପାଖରୁ ଦୁଇଟା ଲାଉଡ୍‌ସ୍ପିକର୍ ବଢ଼େଇ ବଢ଼େଇ ସେହି ଶବ୍ଦ ପରଶୁଛି ।

କିନ୍ତୁ ତଥାପି ବେଦବ୍ୟାସର ଆଗମନ କେଇଜଣଙ୍କ ଆଖିରେ ପଡ଼ିଥିଲା । ପ୍ରଥମେ,—ତାର ସେ ଜୀପ୍‌ଗାଡ଼ି ଖଣ୍ଡିକ ପାଇଁ, ତିନିଜଣଙ୍କ ହାତ ହୋଇ ସାରିଥିବା ପୁରୁଣା ଜୀପ୍ ଗାଡ଼ିଟିର ଅତି ବିକଟାଳ ଶବ୍ଦ ଆଉ ଧୂଆଁ, ସତେକି ଗାଡ଼ି ପଛରେ ଆଗ୍ନେୟଗିରିର ଉତ୍ପାତ ଲାଗି ରହିଛି । ଏଭଳି ଦୃଶ୍ୟ ସହଜେ ଆଖିରେ ପଡ଼େନାହିଁ । ତେଣୁ ଅନେକେ ଅନେଇଲେ ସେହି ଧୂଆଁ ଆଉ ଘଡ଼ଘଡ଼ିରୁ ଉଲ୍‌କା ଖସିଲାପରି ଓହ୍ଲାଇପଡ଼ି ଗାଡ଼ିକୁ ପିଠି ଆଉଜେଇ ସେ ଠିଆ ହୋଇ ରହିଲା, ଗୋରା ତକ ତକ ପାତଳ ଡେଙ୍ଗା ଲୋକଟି, ତାର ଧଳା ପ୍ୟାଣ୍ଟ ଆଉ ଅଧାହାତ ହାଓ୍ୱାଇସାଟ୍ ତାର ଠାଣି ସଙ୍ଗେ ଖାପି ଯାଉଛି, ସ୍ୱାଭାବିକ ଧଳାକୁ ମିଶାଇ ସେ ଦିଶୁଛି ଅତି ଧଳା ।

କିଏ ସେ ଯେ ?

ପଚାରି ବୁଝିବାକୁ କାହାରି ମନ ନାହିଁ, ଯେ ଜାଣେ ସେ ଜାଣେ, ନ ଜାଣିବା ଲୋକର ଗରଜ ନାହିଁ ।

ଲୋକେ ଆସୁଛନ୍ତି, ଉଦ୍‌ଭ୍ରାନ୍ତ ପରି ଘୁରି ବୁଲୁଛନ୍ତି, ଯାହାର ମନ ହେଉଛି ସେ ଚୌକୀରେ ବସୁଛି, ଯାହାର ଇଚ୍ଛା, ସେ ସତରଞ୍ଜିରେ ବସୁଛି, କିଏ ବା କେଉଁ କଣରେ ଠିଆ ହୋଇ ଦୃଶ୍ୟ ଦେଖୁଛି, ପୁଣି ବୁଲୁଛି ।

"ଆଜ୍ଞା ଆସନ୍ତୁ, ବସନ୍ତୁ" କହିବାକୁ ବ୍ୟବସ୍ଥା ନାହିଁ, କେହି ନାହିଁ ଯେ ଚିହ୍ନେଇଦେବ ପରସ୍ପରଙ୍କୁ । ଏଭଳି ଅସ୍ଥିର ଏ ଘରର ବିଶିଷ୍ଟ ବଡ଼ଲୋକିର ସ୍ୱଳିଚଳନରୁ କାହାର । ସାଧାରଣ ଦିନରେ ପୁଲା ପଦାରୁ କାହାର ତୁହାଇ ତୁହାଇ ପାଟି ଶୁଣିଲେ ଭିତରେ କାହାରିକି ମାଡ଼ି ପଡ଼େନାହିଁ । ଯେ ଚିହ୍ନାର ଜଣାର ସେ ବଳେ ଭିତରକୁ ପଶି ଆସିବ । ଏମାନେ କଲିକତାରେ ବଢ଼ିଛନ୍ତି, ଏ ଘରେ ଆଡ଼ ଉଦ୍‌ହାଳର ଲୁଚକାଳି ଖେଳ ନାହିଁ । ସେ ଚିହ୍ନାର ଜଣାର ନୁହେଁ ଅଥଚ ତାକୁଛି ସେ ନିଷ୍ଠୟ ଆସିଥିବ କେବଳ ତାର ଆପଣା କାମରେ । ସେ ଅପେକ୍ଷା କରିପାରିବ, ନହେଲେ ଡାକି ଡାକି ଫେରିଯାଇ ପୁଣି ଆଉ କେବେ ଆସିପାରିବ । ଖାନ୍ଦାନି ଘରେ ଜନ୍ମ ବ୍ରଜନାଥ ବିଶ୍ୱାଳଙ୍କର । ଦିପୁରୁଷ କାହାକରୁ ମାଲ ଖଲାସ କଲେ, ପୁରୁଷେ ବିକିଲେ ମଦ, ଅଫିମ, ଗଞ୍ଜେଇ । ଏ ପୁରୁଷରେ ମାର୍କାମରା ସ୍ପେଶାଲ୍ ଇଟା ଆଉ ଟାଇଲ୍ ଗଢ଼ା । ସହରରେ ମଫସଲରେ ସମସ୍ତେ ଖୋଜନ୍ତି କୋଠାଘର ତୋଳିବାକୁ । ଦେଶରେ ଧାନ ପଇସାରୁ ଝୋଟ ପଇସା ହେଲାଣି ବାରଗୁଣ । ସେଥିରୁ କିଛି ଭାଗ ତାଙ୍କ ଗନ୍ତାଘରକୁ ଆସିବ ସେ ଜାଣନ୍ତି । ଚିହ୍ନାଜଣା କଇଁଛ ମାର୍କା ତାପରେ ସ୍ପେଶାଲ ନାଁଟାରେ ଖାତିରିରେ ଅନ୍ତତଃ । ତେଣୁ ଲୋକଙ୍କର ଗରଜ ପଡ଼ିଲେ ବି ତାଙ୍କର ନାହିଁ ।

ତଥାପି ସେ ବିନୟର ଅବତାର ପରି ଖାଲି ଦେହରେ ଲୁଗା ଖଣ୍ଡେ ପିନ୍ଧି ଆପଣା ଘର ଆଗରେ ସାମ୍ନାକୁ ଚାହିଁ ଠିଆ ହୋଇଛନ୍ତି । ମଝିରେ ମଝିରେ ଟହଲୁଛନ୍ତି । ପାକଲା ଆମ୍ବ ପରି ଗୋରା, ବୟସ ବି ପାକଳ ହୋଇ ହେଲାଣି ପଚାଶ । କିନ୍ତୁ ସେ ସବୁଦିନେ ଦିଶନ୍ତି ଯୁଳିଶ ତଳେ । ଗରି ଗରି ହାତଗୋଡ଼, ଗଣେଶ ପେଟ, ବେଶୀ ଉଞ୍ଚ ନୁହନ୍ତି । ବଡ଼ ଗୋଲ ମୁଣ୍ଡରେ କୁଞ୍ଚୁକୁଞ୍ଚୁ କଳାବାଳ ମୁଣ୍ଡ ମଝିରେ ଦିଫାଳ ହୋଇ ଫିରେଇ ପଡ଼ିଛି, ସାଧାରଣ ଅବସ୍ଥାରେ ବି ହସିଲା ପରି ମୁହଁଟି । କେହି ପାଖକୁ ଆସିଲେ ହସିଦେଇ ନମସ୍କାର କରି ସେ କିଛିବାଟ ଆଗେଇଯିବେ, କିନ୍ତୁ ସମସ୍ତଙ୍କି ନୁହେଁ, ଲୋକ ବାଛି ।

ବେଦବ୍ୟାସ ଦୂରରୁ ତାଙ୍କୁ ଅନେଇଁ ଦେଇ ମୁହଁ ବୁଲେଇ ନେଲା, ଭାବିଲା,—ନା—ତା ଆଖିରେ ସେ ବି ନାହାନ୍ତି । ଶତ୍ରୁ ବୋଲି ନ ମଣିଲେ ଅନ୍ତତଃ କେହିନୁହେଁଠୁ ଅଧିକରେ ତାଙ୍କୁ ଗଣାଯାଇ ନପାରେ ।

ତାର ମୁଖାପରି ମୁହଁ, ଚମଡ଼ା ଟାଙ୍ଗି ହୋଇ ବିଛେଇ ହୋଇଛି, ବଡ଼ା, ବଢ଼ା ଆଖି, ଥୋମଣି ଉପରକୁ ଟାଲ ହୋଇଛି । ଟାଣି ଓଟାରି ଦୁନିଆଁ ପ୍ରତି ଏକ ବେଖାତିରି ଭାବ, ବେପରୁଆ, ମୁହଁର ମୁଖାତଳେ ମନର ତୋଫାନ ଚାପି ରଖିବାକୁ ପ୍ରାଣପଣେ ଚେଷ୍ଟା ।

କିନ୍ତୁ ତାକୁ ଥରେ ଚାହିଁଦେଲେ ବାରି ହୋଇ ପଡ଼େ ତାର ସେ ଚେଷ୍ଟା ବିଫଳ ହୋଇଛି । ସେ ମୁଖା ଉପରେ ଗଭୀର ବିଷାଦର ଛାଇ । ସେ ମୁହଁଟେକା କେବଳ ବୈରାଗ୍ୟର ଉଦାସ, ସେ ଆଖିରେ ଲୁହ ଜିକ୍ ଜିକ୍ ପଥର ହୋଇଛି । ଅଚିହ୍ନା ଲୋକ ବି ଥରେ ଚାହିଁଦିଏ । ଭାବେ ସବୁ ଏଠି ଠିକ୍ ନାହିଁ । ଚିହ୍ନା ଲୋକଙ୍କୁ ଚାହିଁ କରି ଆଗେ

ତାର ଅସ୍ୱାଭାବିକତା, ଯେ ସବୁଦିନେ କଥା ହସ ଓ ଭଙ୍ଗୀରେ ତରଳ ତରଳ ସେ ଆଜି ଖାଲି ଗୋଟାଏ ଜିଅନ୍ତା ମଡ଼ା, କଣ ଏ କଥା ? ଆଉ ଯେ ଜାଣେ ଏ କାହାଣୀ, ବେଦବ୍ୟାସଙ୍କୁ ଦେଖି ସେ ଚମକି ପଡ଼େ, ଦୀର୍ଘଶ୍ୱାସ ପକାଏ । କଥା ଅଶ୍ଳେ ନାହିଁ । ଦିଦି ଜଣ ହୋଇ ସେମାନେ ଟୁପୁରୁ ଟାପୁର ହୁଅନ୍ତି । ଜଣେ ଜଣେ ହୋଇ ତାର ପିଛା ନିଅନ୍ତି । ଦେଖନ୍ତି କଣ ତାର ହାବ ଭାବ ।

ବେଦବ୍ୟାସ ମଟରରୁ ଓହ୍ଳାଇ ଠିଆ ହେବା ମାତ୍ରେ ଚାରିପାଖରୁ ଦୂରରୁ ଦୂରରୁ ଗୋଟି ଗୋଟିକିଆ ଲୋକ ତାଙ୍କୁ ଦୃଷ୍ଟିରେ ଅନୁସରଣ କଲେ ।

ସେମାନେ ବି ଏଇ ପୃଥିବୀର ଲୋକ; ଅନେକେ ଚିହ୍ନାଅଭିଜ୍ଞ, ଶରତ୍ ବାବୁ ଧୀରେ ତାଙ୍କ ବନ୍ଧୁଙ୍କ ବେକକୁ ହାତରେ ବେଢ଼େଇ ଧରି ଦାବି ଦେଲେ । କାନ ପାଖରେ ଧୀରେ ଧୀରେ ମନ୍ତ୍ର ପଢ଼ିଲେ, "ଦେଖନ୍ତୁ କଣେଇ କିନା,– ସେହି ଲୋକଟା—"

ଆଙ୍ଗୁଠିରେ ଦେଖେଇ ଦେଲେ ।

ଅଜି ବାବୁ ଚାହିଁଲେ ଗୋଲ୍ ଗାଲ ଶରତ୍ ବାବୁଙ୍କ ମୁହଁକୁ, ସେ ମୁହଁରେ ଖାଲି ଗମ୍ଭୀର ରହସ୍ୟ ନାହିଁ, ଯେପରିକି ଆତଙ୍କ ବି ।

"କିଏ ସେ ?"

"ଡାକ୍ତର ବେଦବ୍ୟାସ ବଳବନ୍ତ ରାୟ"

"କଣ ହେଲା ?"

"ଓ, ଆପଣ ଜାଣନ୍ତି ନାହିଁ ।" ଶରତ ବାବୁ ଦୀର୍ଘଶ୍ୱାସ ପକାଇଲେ, ତା ପରେ ସଂକ୍ଷେପରେ ବୁଝାଇ ଦେଲେ । ଶରତ ବାବୁ ଦୁଃଖରେ ନିର୍ବାକ ।

"ଓଃ । ଅହା ବିଚରା" ଛଡ଼ା ଅନ୍ୟ ମନ୍ତବ୍ୟ ଦେବା ତାଙ୍କର ସାଧ୍ୟାତୀତ ।

ଅଜି ବାବୁ ବି ବେଦବ୍ୟାସଠିଁ ତଦ୍‌ଗତ । ତାଙ୍କର ବି ସହାନୁଭୂତି ପ୍ରଚୁର । କିନ୍ତୁ ଶରତ ବାବୁଙ୍କ ଠାଣୀହିଁ ଅଜି ବାବୁଙ୍କୁ ତାଟକା କରୁଛି ବେଶୀ । ମୁହଁରେ ତଟଗେ ନାହିଁ । ଆଖି ଚକ ଚକ । ମନେ ମନେ ସେ ନିଜେ ବେଦବ୍ୟାସ ହୋଇ ଯାଚିଛନ୍ତି । ଚାରିପାଖେ ଏତେ-ଲୋକ ଥାଉ ଥାଉ ଏକା ସେ ତାଙ୍କୁହିଁ ବାଛି ନେଇଛନ୍ତି । ଅଜାଣତାରେ ତାଙ୍କ ଅନ୍ତରରେ କେବଳ ବେଦବ୍ୟାସ, ବେଦବ୍ୟାସ । ସେ ଏହିପରି ଭାବୁଛି । ଏହିପରି ଭାବନ୍ତା, ଏମିତି ହୁଅନ୍ତା ତାର ହାବ ଭାବ । ଶରତ ବାବୁଙ୍କ ମନ ଗହୀରରେ ଅତୀତର ଏକ ଚିହ୍ନ ଦାଗ ହାକୁ ହାକୁ ହୋଇ ଉଠୁଛି । ସୁନନ୍ଦାକୁ ସେ ବିଭା ହେବା ପାଇଁ ଲୋଡ଼ିଥିଲେ । ବିଭା ହେଲା ଗୋବର୍ଦ୍ଧନ କବି ନୁହେଁ, ଶିଳ୍ପୀ ନୁହେଁ; ଖାଲି ଗୋବର୍ଦ୍ଧନ । ନଈବନ୍ଧର କଣ୍ଟ୍ରାକ୍ଟର । ଏମିତି ଲାଗିଥିଲା ସେ ଦିନ । ଦାଣ୍ଡବାଟେ ତାର ବାହାଘରର ସୋଭାଯାତ୍ରା ଗଲାବେଳେ ଶରତ ବାବୁ ତକିଆରେ ମୁହଁ ମାଡ଼ିଥିଲେ । ତାର ଗୋଟିଏ ଗୋଟିଏ ବାଣର ଭୁ ଯେପରିକି ତାଙ୍କ ଛାତିରେ ବିନ୍ଧି ଥିଲା । ବେଦବ୍ୟାସ ସେହି ଦୋତାଲା କୋଠା ଆଡ଼କୁ ଚାହିଁ ଠିଆ ହୋଇଛି । ବୁଲି ବୁଲି ଯେପରି ସ୍ଥାନ ନେଲେବି ଚୁମ୍ବକପରି ଓଟାରି ବୁଲେଇ ଧରୁଛି ତାଙ୍କ ମୁହଁକୁ ସେହି ଘରର ଟେଲି' ଦିଆ ଖୋଲା ଝରକା । ସେହି ସେ ମୁହଁର ଦିଗ । ଶରତ

ବାବୁଙ୍କର ବି ସେହିପରି । ସୁନନ୍ଦା କେବେ ଏ ଘରକୁ ଆସିନାହିଁ । କିନ୍ତୁ ଶରତ ବାବୁଙ୍କ ଚିତ୍ତବୃତ୍ତି ରୂପାନ୍ତରିତ ହୋଇ ଯାଇଛି । ସୁନନ୍ଦା ଶରତ ହୋଇଛି ଟ୍ୱିନ—ଗେଷ୍ଟ । ଅଜିବାବୁ ଏକାଉଣ୍ଟେଣ୍ଟ ।

ମୁଣ୍ଡ ବାଳରେ ପାଉଁଶ ଛଟା ଛଟି, ଶରତ ବାବୁଙ୍କ ସାମ୍ନାରେ ସବୁଜା ସର୍ବତ୍ ଗିଲାସେ ଧରି ଏ ଘରର ଚାକର ଠିଆ ହୋଇଛି, କହୁଛି "କିଏ ମାଗିଥିଲେ ସର୍ବତ୍ ? ବାବୁ ଆପଣ ?''

ଶରତ ବାବୁ ଶୁଣୁ ନାହାନ୍ତି । ଅଜିବାବୁ ହଠାତ୍ ମନେ ପକାଇଲେ ଅତୀତର ଗୋଟିଏ ସ୍ମୃତି ।

ଗାଁର ଝିଅ ବଲ୍ଲୀ ।

ସବାରି ଚଢ଼ି ଶାଶୁଘରକୁ ଗଲା ।

କେଉଁଠି ତା ଶାଶୁଘର ? ନାଁ ମନେ ନାହିଁ ।

ଅଜିବାବୁଙ୍କର ବି ଗୋଟିଏ ଛୋଟ ଦୀର୍ଘଶ୍ୱାସ ।

ଈଶ୍ୱର ସଦୟ, ଗଣି ବସିଲେ ସାନ ବଡ଼ ହୋଇ ତାଙ୍କର ଆଠଟି ସନ୍ତାନ । ବଡ଼ଟି ଆଇ. ଏ ପଢ଼େ, ତା ତଳଟି, ଝିଅ, ଆସନ୍ତା ବର୍ଷ ବାହାଘର କରିବାକୁ ହେବ । ଆପେ କ୍ଷୀଣକାୟ ହେଲେ ବି ସ୍ତ୍ରୀ ଚର୍ବି ନେସି ହୋଇ ଅଳ୍ପକେ ହାଁ ହାଁ ହୋଇଯାଆନ୍ତି, ଟିକିଏ ପରିଶ୍ରମ ପଡ଼ିଲେ ଛାତିରୁ କଣ ଉଠେ ।

ହଠାତ ଅଜିବାବୁ ଚିଡ଼ୋକ ହୋଇ ଉଠିଲେ, ମନେ ମନେ ଭାବିଲେ— "ଧୂର୍ତ୍ତ ତ କହୁଥିଲେ ବଲ୍ଲୀଟିକି ଅଜି ବିଷୟରେ କର । ନାଙ୍କର କଣ ହେବ ? ବାପା ସିନା ମୁହଁ ମୋଡ଼ିଲେ କହିଲେ ଅଜିର ପଢ଼ା ସରିନାହିଁ, ଅଇଲା କଣ ବାହାଘର ? ବିକମ ପାଶ୍ କରିବାକୁ ଅଛୁରି ଲାଗେ ବରଷେ, ତା ପରେ ଚେ ଚାକିରୀ କରିବ ।''

ଧୂର୍ତ୍ତ ଠିକ ବୁଝିଲେ ଏ ପ୍ରକାରାନ୍ତରେ ନାସ୍ତିବାଣୀ । ବିକମ୍ ନା ଛେନା ! ତିଥର ଫେଲ୍ ହୋଇ ଚାଳିଶି ଟଙ୍କାରେ ଚାକିରି ଧରି ମୁହଁ ଲୁଚେଇବାକୁ ପଡ଼ିଲା, ମୂଳରୁ କଣ ମୁହଁ ଫିଟେଇ କହି ହୋଇ ନ ଥାନ୍ତା, — ନା ମୋର ବଲ୍ଲୀ ଦରକାର । ଆଉ କେହି ନୁହେଁ, ନ ହେଲେ ନ ଚଳେ ? ବଲ୍ଲୀ ଆସିଲେ ତା ପଛେ ବିକମ୍ ଏମକମ୍ ଯୋଡ଼ କମ୍ କହ, ଆନେ ତ ଲେଟ୍ କମ୍ । ଭେରମୁହାଁ ମୂର୍ଖ, ପାଟି ଫିଟେଇବାକୁ ସାହସ ହେଲା ନାହିଁ । ମନକଥା ମନେ ମନେ ଉଡ଼ି ଗଲା ।" ଅଜିବାବୁ ବିରକ୍ତ ହୋଇ କହିଲେ, "ଦେଖନ୍ତୁ ଶରତବାବୁ ଏ କି ବିଡ଼ମ୍ବନା । ରାତି ସାଢ଼େ ସାତଟାକୁ ନିମନ୍ତ୍ରଣ ଥିଲା । ହେଲାଣି ଆଠି ସାଢ଼େ ନ । ଆଜି ଦିନସାରା ଗାଡ଼ି ଚାରିଟା ବାହାଘର ନିମନ୍ତ୍ରଣ ରକ୍ଷା କରି ସାରି ଏଇଟା ହେଲା ପାଞ୍ଚ । ଭାବିଥିଲି ଏଇଟା ସରିଲେ ଏଠୁ ହେଇ ଘରକୁ ଯିବି—''

ଅପ୍ରତ୍ୟାଶିତ ଭାବରେ ଅନ୍ୟମନସ୍କ ଶରତବାବୁ ହାଙ୍କିଲେ "ଲୋକେ ମୁହଁ ଖୋଲି କହିଲେ ସିନା ବୁଝନ୍ତା ? ଲୋକେ ମନେ ମନେ ଆପଣା ଚିନ୍ତା ଘୋଡ଼େଇ

ରକ୍ଷି ସନ୍ତୁଳି ହେବେ, କହିବେ ନାହିଁ କିଛି  ସେହିତ ଅଡୁଆ । ସଂସାରର ଦୁଃଖର ଅଧେ କାରଣ ସେହି—"

କଥାକୁ ଉତ୍ତର ଠିକ୍ ଆସିଲା ନାହିଁ । ତଥାପି ଅଜିବାବୁ କଥାର ଖିଅ ଧରି ପକେଇ କହିଲେ—"କହିବେ କେମିତି ? କହିଲେ ଲୋକେ ପାଗଳ  ଅବା ନ କହିବେ, ଅଭଦ୍ର ବୋଲି ନିଶ୍ଚୟ କହିବେ ? ସହି ଯିବାକୁ ପଡ଼ିବ ଚୁପ୍ ଚାପ୍, ସମାଜର ସବୁ ଅଦୋଉତି, ଅନ୍ୟ ରାସ୍ତା ନାହିଁ ।"

ଅଜିବାବୁ ଦୀର୍ଘଶ୍ୱାସ ପକେଇଲେ ।

ଶରତ ବାବୁ ମଳିନ ହସଟିଏ ହସିଦେଇ କହିଲେ—"ଲୋକେ ଚାହାନ୍ତି, ସମାଜ ଚାହେଁ, ଯେ ଆପଣ ଗୋଟାଏ ପ୍ରକାର ବ୍ୟବହାର କରିବେ । ତେଣୁ ଆପଣ ନିଜେ ଯାହା ଭାବନ୍ତୁ ଆପଣଙ୍କୁ ସେହିପରି ଚଳି ଅଭିନୟ କରି ଯିବାକୁ ପଡ଼ିବ ଯେତେଦିନ ଏ ସମାଜରେ ଅଛନ୍ତି । ସମାଜ ଚାହେଁ ଆମେ ହେବା ବାପା ମାଙ୍କର ସୁବୋଧ ସନ୍ତାନ, ସ୍ତ୍ରୀର ବାଧ୍ୟ ସ୍ୱାମୀ, ପିଲା ଛୁଆଙ୍କର ବୋଲକରା  କଥାରଖା ବାପା, ଆମକୁ ସେପରି ହେବାକୁ ହିଁ ପଡ଼ିବ । ମନକଥା କହିବା କି କରିବା ଅର୍ଥ ହାଟ ମଧ୍ୟରେ ବ୍ରହ୍ମଜ୍ଞାନ ବଖାଣିବା । ମନହେଲେ ଯୁଦ୍ଧା ଆପଣ ଯଦି ଗୋଡ଼ରେ ନ ଚାଲି ହାତରେ ଚାଲନ୍ତି ଆପଣଙ୍କୁ କ୍ଷମା କରିବ କିଏ ଯଦିଓ  ମୁଁ ସ୍ୱୀକାର କରିପାରେ କେତେ ପରିସ୍ଥିତିରେ ପାଦ ଅପେକ୍ଷା ହାତରେ ଚାଲିବାହିଁ ବେଶୀ ଖୋଜେ ଏ ମନ"—

ଉଭୟ ବନ୍ଧୁ କଥା ବୁଲେଇଦେଲେ ।

ଅଜିବାବୁ ଖୋଳିତାଡ଼ି ପଚାରି ବସିଲେ ବେଦବ୍ୟାସ ବିଷୟରେ ସବୁକଥା । ମୂଳରୁ ଆଗ,—"ବେଦବ୍ୟାସ । ବଡ଼ ବିଚିତ୍ର ନାଁତ । ସତେ  କଣ ଏଇ ମହାଭାରତ ଲେଖାଳି ।—ନା, ସେକାଳରେ ଥିଲା ବେଶୀ, ଆଜିକାଲିକା ପିଲାଗୁଡ଼ାକ ବଗୁଲିଆ ହେଲେ । ସେଇଥିପାଇଁ ତ ଏତେ ଛଟପଟ, ଖାଲି ଯୋର-ଯୋର—" ଅଜିବାବୁ ହୋମିଓପ୍ୟାଥି କରନ୍ତି,—"ଗାଲ ପଶିଯାଉଛି, ଶୁଖିଲା ମୁହଁ, ତେଜ ନାହିଁ, ଫୁର୍ତ୍ତି ନାହିଁ, ଛଟପଟ ହୋଇ ଭାସି ବୁଲିବାହିଁ ୟାଙ୍କର ଜୀବନ । ଯାହାହେଲା  ବାବୁ, କହିଲୁ ନାହିଁ କାହିଁକି ମୁଁ ସେଠି ବିଭାହେବି ?"

"କହିଥିଲା କହିଥିଲା ।"

"ବଡ଼ପାଟିରେ କହିନାହିଁ ।"

"ହୁଏତ ନୁହେଁ ।" ଶରତବାବୁ ହସିଲେ, କହିଲେ "ତଥାପି ତା ସଞ୍ଜମକୁ ଧନ୍ୟ କହିବେ, ଆସିଛି ତ । କେତେଜଣ ଏଭଳି ଜାଗାକୁ ଆସିବେ ?"

କେତେଠିଁ ତାରି ବିଷୟରେ ଚର୍ଚ୍ଚା । କଥା ଲୁଚାଛପା ନୁହେଁ । ସମସ୍ତେ ଜାଣନ୍ତି ସେ ଟୁନିକି ବାହାହେବା ପାଇଁ ଜିଦି ଧରିଥିଲା । ଟୁନିର ମତରେ  କିଛି ନାହିଁ । ହୁଏତ ବିଶ୍ୱାଳେ ତାକୁ ଜୋଇଁପଣକୁ ଉପଯୁକ୍ତ ମନେକଲେ ନାହିଁ । ହୁଏତ ତାଙ୍କର ଏକମାତ୍ର ଝିଅ ପ୍ରତି ତାର ଆସକ୍ତି ଫଳରୁ କୁକୁର ଧାଇଡ଼ି ତାଙ୍କ ମନରେ ଶତ୍ରୁତା ଉପୁଜାଇଥିଲା । ନାନା ମୁନିଙ୍କର ନାନା ମତ ।

କିନ୍ତୁ ସେ ଜାଣେ, ଦାଣ୍ଡଦୁଆର ମୁହଁବାଟେ ମୁହାଁମୁହିଁ କେବେ ସେକଥା ପକାଇବାକୁ ଆସିନାହିଁ । ପ୍ରସ୍ତାବ ଆସିନାହିଁ, ପ୍ରସ୍ତାବ ଉପରେ ବିଚାର ବା କାହୁଁ ହେବ ? ଆପଣା ମନ ପାଖେ ଆପେ ସେ କେବେ ଧରା ଦେଇନାହିଁ । ଉଡ଼ାରେ, ଉଡ଼ାରେ—ଜନମତ ବାଟେ କଥାଟା ଉଠିଥିଲା । ଜନମତ ହିଁ ଦେଇଛି ତାର ଉତ୍ତର,—"ମାଉସୀପୁଅ ଭାଇଟା ପରା । ଏଭଳି କଣ ହୁଏ ? ଏ ଅସମ୍ଭବ !" ଆଉ ଶେଷରେ ନେଡ଼ିଗୁଡ଼ କହୁଣୀକି ବୋହି ଆସିଲାପରେ,—

ସେତେବେଳେ ଆଉ ବାଟ ନଥିଲା ।

ସେମିତି କରୁଣ ମୁହଁ କରି ସିଗାରେଟ୍‌ଟାଏ କାମୁଡ଼ି ଧରି ବୁଲି ଲାଗିଛି ବେଦବ୍ୟାସ । କେତେଠି ଲୋକେ ହସୁଛନ୍ତି, କେତେଠି ନୀରବରେ ସହାନୁଭୂତି ଜଣାଉଛନ୍ତି, ଅଧିକାଂଶଙ୍କର ତା ବିଷୟକୁ ମନ ନାହିଁ, ହୋସ୍ ନାହିଁ, ଅନେକେ ବୁଲୁଛନ୍ତି । ଗଣ ସମୁଦ୍ରରେ ଜଣେ ।

କିଏ ପଚାରେ ?

ତଥାପି ପତଙ୍ଗ ଘୂରି ବୁଲିବ, ଆପଣାକୁ ପୋଡ଼ି ଖରଡ଼ି ଛଟପଟ ହୋଇ ବୁଲୁଥିବ ପ୍ରାଣ ଥିବା ଯାକେ । ବେଦବ୍ୟାସ ବୁଲୁଥିଲା ତ ।

ସେ ଡାକ୍ତର, ଆପଣା ଇଚ୍ଛା ଅନୁସାରେ ନୁହେଁ, ଅବସ୍ଥାଚକ୍ରରେ, କିନ୍ତୁ ତା ବୋଲି ସେ ଅନ୍ୟ କୌଣସି ଛାତ୍ରଠୁଁ କମ୍ ପଣ୍ଡିତ ନ ଥିଲା, ମେଡ଼ାଲ୍ ପାଇଥିଲା ତିନିଟା ବିଷୟରେ । ପାଶ୍ କରି ସାରି ବର୍ଷେ ରହିଲା ହାଉସ୍‌ସର୍ଜନ, ତା ପରେ ଏଇ ମନସ୍ତତ୍ତ୍ୱ ଓ ସାଇକୋଆନାଲିସିସ୍ ପ୍ରତି ଖୁବ୍ ଝୁଙ୍କ ଥିଲା ତାର, କାଙ୍କେର ପାଗଳା ଗାରଦ୍‌ରେ ସେ ବଳକା ମାସେ ଟ୍ରେନିଂ ନେଇଥିଲା, ସେଠି ଡ଼ାକ୍ତର କର୍ଣ୍ଣେଲ ଧୁଞ୍ଜିଭାଇଙ୍କ ସଙ୍ଗେ ଅନେକ ସମୟ କଟାଇଥିଲା ଏହି ଶାସ୍ତ୍ର ବିଷୟରେ । ତାପରେ କଲିକତା ଯାଇ ଅନ୍ୟ ଏକ ମନ ଡାକ୍ତର ପ୍ରସିଦ୍ଧ ମନୋବିଜ୍ଞାନୀ ଡାକ୍ତର ଗିରୀନ୍ଦ୍ରଶେଖର ବସୁଙ୍କ ପିଛା ନେଇଥିଲା ଦୁଇମାସ । ଏହାଛଡ଼ା ବାହାରେ ଯେତେଥର ବାୟାଲୋକ ଦେଖିଲେ ବେଳେ ବେଳେ ସେ ପିଛା ନିଏ, ଆଖିକି ଆଖି ପକାଇ ହାତରେ ମୁଦ୍ରାମାନ ଦେଖାଇ ସମସ୍ତ ଇଚ୍ଛା ଶକ୍ତି ପ୍ରୟୋଗ କରି କୋଶିଶ୍ କରେ ତାକୁ ମେସ୍‌ମେରାଇଜ୍ କରିବ । ଟ୍ରାନ୍‌ସରେ ଶୁଆଇ ପକାଇବ, ତାପରେ ବାହାର କରିବ ତାଠୁଁ ତା ମନ ଗହୀରେ କଥା, ତାରି ତୁଣ୍ଡରୁ । ହୁଏତ ସେ ସୁସ୍ଥ ହେବ । କିନ୍ତୁ ଆପଣା ମନ ଭିତରେ କେତେଗୁଡ଼ାଏ ଆତଙ୍କମୟ ଚିତ୍ର ଟୋଇନେବା ଛଡ଼ା ବେଶୀ ଦୂର ସେ ଅଗ୍ରସର ହୋଇପାରି ନାହିଁ । କୌଣସି ପାଗଳ ତାର ବଶ ମାନି ନାହିଁ । କେତେଥର ସେ ଗାଳି ଶୁଣିଛି, ଥରେ ଗୋଟିଏ ପାଗଳ ତାକୁ ଭଙ୍ଗା ବୋତଲ ଫୋପାଡ଼ିଥିଲା । ଆଉଥରେ ଗୋଟିଏ ପାଗଳୀ ଘଣ୍ଟାଏ ଘଣ୍ଟାଏ ପାଟି କରି କରି ତାକୁ ଗୋଡ଼େଇଥିଲା,—"ଆରେ ମୋ ପିଲାର ବାପା, ମୋ ପିଲାକୁ କଣ ଦେଲୁ ? ଦେଇଯାବା ଦେଇଯା—" ।

ବୃଥା ହଟହଟା ।

କିନ୍ତୁ ତା ସେ ମୂଳେଇ ଥିଲା ଆପଣା ରୁଚିରେ, କାହାରି କୁହାରେ ପଡ଼ି ନୁହେଁ । ଆଉ ତାକୁ ସେ ଭେଟଇଥିଲା ଆପଣାକୁ ଦେଖେଇ ହେବାପାଇଁ, ଜନଗୋଷ୍ଠୀର କଲ୍ୟାଣ ପାଇଁ ଆଦୌ ନୁହେଁ । କଥା କଥାକେ ଲିବିଡ଼ୋ, ଇଡ୍, ଡିପ୍ରେସନ୍,

ଫକ୍‌ସେସନ୍, ସବ୍‌ମେସନ, ଇଲେକ୍‌ଟ୍ରୋ, ଇଡ଼ିପସ୍, ନାସିସିଜ୍ମ । କଥାକେ କଥାକେ ଫ୍ରଏଡ୍, ୟୁଙ୍ଗ, ଧୂର୍ଜଟି ଭଟ୍ଟ, ଗିରୀନ୍ଦ୍ରଶେଖର ବସୁ । ବଡ଼ ବଡ଼ ନାଁ । ନ ଜାଣିବା ଲୋକ ଆଁ କରି ଅନାଏ । ଡାକ୍ତର ବେଦବ୍ୟାସ ତାର ସୁନ୍ଦର ମୁହଁକୁ ଗମ୍ଭୀର କରି ମୁଣ୍ଡ ହଲାଏ । ତୁଣ୍ଡରେ ଓଜନ କଥା ବି ବୈଶିଷ୍ଟ ଦିଏ ତାକୁ, ଆଦିମ ରଙ୍ଗର ଗାରିଗାରିକିଆ ପ୍ୟାଣ୍ଟ ଉପରେ ଝକଝକ୍ କାମିଜ୍ ପିନ୍ଧି ବେକରେ ଟୋପିଟୋପିକିଆ ସ୍କାର୍ଫ୍ ଗୁଡେଇ ସକାଳ ଖରାରେ ଫିଁ କିନା ସାଇକେଲରେ ଗ୍ଳଲିଗଲା ପରି, ସେହି ଲୋକଦେଖାଣିଆ ଉଦ୍ଦେଶ୍ୟ ଯୋଗୁଁ ତାର ନାଟୁଆ ପରି ଗ୍ଳଲି, ଅବସ୍ଥା ଦେଖି ବୀର ପୁରୁଷପରି, ସେଇଥିପାଇଁ ଗ୍ଳଲିଚଳନରେ ତାର ଛଇ ଛଟକି । ଯାହାକୁ କହନ୍ତି ସ୍ମାର୍ଟନେସ୍ । ସେଇଥିପାଇଁ ଅନେକଥର କେଲ୍‌ନାର୍ ହୋଟେଲ୍, କ୍ୱଚିତ୍ କେବେ ଛଅ ଆଉନ୍‌ସ ତଳେ ସାମାନ୍ୟ କିଛି ପାଇଁ 'ବ୍ଲୁ ବାର' 'ଗ୍ରୀନ୍ ବାର' ମଧ୍ୟ । ଏବଂ ସେଇଥିପାଇଁ ତାର ପେଲ୍‌ଟହ୍ୟାଟ୍, ଟପ୍ ହ୍ୟାଟ୍, ଗୋଲ ମୁହଁରେ ବାଂକ ଓଠ କଣରେ ମୋଟା କଳା ଚୁରୁଟ୍, ଯଦିଚ ଅତି କଡ଼ା ତାର ତଣ୍ଟିକି ସହେ ନାହିଁ ।

ଏବଂ ସେଇଥିପାଇଁ ତାର ଯାବତୀୟ କଷ୍ଟକର ପ୍ରସାଧନ—ମୁହଁ ପୋଡ଼ି ଉଠିଲେ ବି ଦାବି ଦାବି ଡାଞ୍ଚି ଡାଞ୍ଚି ଦାଢ଼ି ଖିଅର, ଆଉ ଅଦରକାରି ବାଳ ଧ୍ୱଂସ କରିବା ପାଇଁ ଯନ୍ତ୍ରଣାଦାୟକ ଲେପ ବୋଳା, ହେଉ ପଛେ ତହିଁରେ ସାନ ସାନ ଫୋଟକା, ବିଛଣାକୁ ପିମ୍ପୁଡ଼ିମାନଙ୍କ ସାଧାରଣ ନିମନ୍ତ୍ରଣ ଦେଇ ଦେହରେ ଲହୁଣି ମାଖି ନିଦ୍ରା, ଯେତେ ଚଟ ଚଟ ଲାଗୁ ସବୁଦିନ ମୁହଁରେ କ୍ରୀମର ପୁଟ । ଆଉ ସେଇଥିପାଇଁ ଦିନୁଁ ଦିନ ତାର ପ୍ରକାର ପ୍ରକାର ନିଶ-ବାଗିଆ । ଲୋକେ ଦେଖନ୍ତୁ ।

ମାହାଙ୍ଗା ଥାନାର ଗଣ୍ଡରୁ ଗଣ୍ଡ ମଫସଲ ଅକଣ୍ଡର ଗାଁରେ ଯେଉଁଠି କି ଦିପାଖେ ଘୁଅ ବଣ ଥାଇ ଖଣ୍ଡିଆ ଖାବଡ଼ା ପୁରୁଣା ଖଣ୍ଡାପରି କେରେନାଳି ବନ୍ଧ ଉପରେ ନଳିତା ବଣ ଧାନବିଲ ସନ୍ଧିରେ ସସ୍ତା ସେଠି ବିଶ୍ୱ ବଳବନ୍ତର କୋଠା ପିଟିଥିଲେ ଦେଖେଇ ହେବା ପାଇଁ ଯେତେ ନୁହେଁ ସେତେ ନିଆଁ ଦାଉରୁ ଖଣ୍ଡ ଦାଉରୁ ସଂପତ୍ତି ବଞ୍ଚେଇବା ପାଇଁ; କାରଣ ତାଙ୍କର ବିଶହ ଭରଣ ଧାନ ଆସୁଥିଲା । ଦେଢ଼ି ଲାଗୁଥିଲା । ବଳବନ୍ତରଙ୍କର ନାମଜାଦା ବନ୍ଧୁବାନ୍ଧବ ଅଛନ୍ତି ସବ୍ୟର ଯେତେ ମୁଖିଆ ମହଲାଏକ୍ ପୀଠବେ, ବିଷ୍ଣୁପୁରର ମଙ୍ଗରାଜ ଘରେ, ସାତ ବାଟିଆ ଭୂୟାଁ ଘରେ, ଛତ୍ରାବଜାରର 'ଛଟେଇ' ଘରେ, ଅସଂଖ୍ୟ ଜାଗାରେ—କେଉଁଠି ସେମାନେ ଜମିଦାର ମକଦମ୍ କେଉଁଠି ମହାଜନ, କିଏ ବେପାରି, କିଏ ବଡ ଚାକିରିଆ । ସେ ବି ଦେଖାଇ ହେବାପାଇଁ ନୁହେଁ, ବଡ଼ ବଡ଼ିଆମାନେ ବନ୍ଧୁ କରିଛନ୍ତି ବନ୍ଧୁ ଅଛନ୍ତି ।

ଯେତିକିତ' । ସେ କାହା ଦୁଆରେ ଠିଆ ହେବାକୁ ଯାଆନ୍ତି ନାହିଁ ଯଦିଚ ପୁଣ୍ୟ ପର୍ବକୁ ଭାରଓାର ଦେବା ନେବା କେଉଁ ବିଷୟରେ ତାଙ୍କର ତ୍ରୁଟି ନ ଥାଏ । ଆଗେ ପକ୍‌କା ହଳୁଆ, ଦୋକଛି ଚଢ଼େଇ ହଳକୁ ଗଲାବେଳେ ତାଙ୍କର ବରିଡ଼ା ଅବୁ-ଅବୁଆ ପଞ୍ଝତା ମର୍ଦ ଚେହେରା ଖରାରେ ଝଟକେ, ଦେହରେ ଅସମ୍ଭବ ବଳ, କିନ୍ତୁ ଲୋକ ଦେଖିଲେ ଛାତି ଫୁଲାନ୍ତି ନାହିଁ, ବାହା ଟାଙ୍ଗନ୍ତି ନାହିଁ । ବଳ ପରଖ ହୋଇଛି କେତେଥର ଆପେ ଆପେ, ପଥର ବୋହିଥିବେ କେତେଥର । ଗ୍ରାମଘର ମାହାଲାଏ ତୋଳା ହେବ ବୋଲି ଗଛ ସେଣୀ ଟେକିଥିଲେ । ଥରେ ଗୋଟାଏ ବୋଝେଇ ଶଗଡ଼ ଅଖଭାଙ୍ଗି ଯାଇ ବାଟ ଓଗାଳିଥିଲା ବୋଲି ବଳଦ ନ ଥିଲା ଏକୁଟିଆ

ଶଗଡ଼କୁ ଉଠାଇ ଠେଲି ନେଇ ଶହେହାତ ଦୂରରେ ମାଡ଼ିଦେଇ ଆସିଥିଲେ । ଆଉ ଥରେ, ଯେତେବେଳେ ଗୋଟାଏ ଛୋଟିଆ କଳିଆ ଲାଗି ମେଳିବାଛି ପଡ଼ିଶା ମୌଜା ରଣରଙ୍ଗାର ଶହେ ଦେଢ଼ଶ ଲୋକ ତାଙ୍କ ଜମିରୁ ଜବରଦସ୍ତି ଧାନକାଟି ନେବାକୁ ଆସିଥିଲେ ସେତେବେଳେ ମାତିଥିଲେ ବଳବନ୍ତର । ତାଙ୍କରିଠୁ ଗୋଟାକ ପରେ ଗୋଟାଏ ଲଢ଼େଇ ନେଇ ଠେଙ୍ଗା ଭାଙ୍ଗି ଲଢ଼ର ଛାଉଳ ହେବାଯାକେ ତାଙ୍କୁ ଲହୁଲୁହାଣ କରି ପିଟି ପିଟିକା ନେଇ ତାଙ୍କ ଗାଁ ମଝିରେ ଛାଡ଼ିଦେଇ ଆସିଲେ । ଯେ, ଯୁଆଡ଼େ ପଳାଇଲେ, ବଳବନ୍ତଙ୍କ ରାଗ ମେଣ୍ଟି ନଥିଲା ଯେ ଆପଣା କାନ୍ଧରେ ଧକା ମାରି ମାରି ରଣରଙ୍ଗା ଲୋକଙ୍କ ନୂଆ ତୋଳା ହେଉଥିବା ଚଉପାଢ଼ିର ଗୋଟାଏ ମାଟିକାନ୍ଥ ଭାଙ୍ଗି ଦେଇ ଆସିଲେ । ଏ ସବୁ ଯାହା କରିଥିଲେ ଦେଖେଇ ହବା ପାଇଁ ନୁହେଁ, ଆବଶ୍ୟକ ପଡ଼ିବାରୁ ବା ଅବସ୍ଥାଚକ୍ରରେ । ସହରର ଖବର କାଗଜରେ ଯେପରି ବଳ ବୀରତ୍ୱର ଖବର ବାହାରେ ଫଟୋବାହାରେ ମଫସଲରେ ସେହିପରି ତୁଣ୍ଡରେ ଖବର ରଟେ, ହୁଏ କିମ୍ବଦନ୍ତୀ । ବଳବନ୍ତଙ୍କ ବଳ ଏ ଖଣ୍ଡକରେ କିମ୍ବଦନ୍ତୀର ବିଷୟ । ମହାଭାରତ ପୋଥିକି ଶ୍ରଦ୍ଧା ଥିଲା ସେଇଥିପାଇଁ ଏକମାତ୍ର ପୁଅ ନାଁ ଦେଲେ ବେଦବ୍ୟାସ, ଡାକିଲେ ଗେଣ୍ଡୁ । ପୁଅଟି ବି ସହରିଆ ମାମୁଁଘର ଲାଞ୍ଜ ଧରି ଇସ୍କୁଲରେ ପଢ଼ିବାକୁ ଆରମ୍ଭ କଲା ।

କିନ୍ତୁ ହଠାତ୍ ବଳବନ୍ତରାୟଙ୍କ ପୃଥିବୀ ଭୁଷୁଡ଼ି ପଡ଼ିଲା । ଆଗ ଗଲେ 'ସେ' । ଗେଣ୍ଡୁବୋଉ । ଏ ଗାଁକୁ ଯମ ଆସିବାକୁ ବି ବାଟନାହିଁ, ବଳବନ୍ତ ରାଏ ହସି ହସି କହୁଥିଲେ,—କେମିତି ଆସିବ ? ଗ୍ରାମଆଡେ ଆଣ୍ଠିଏ ବହଳରେ କାଦୁଅ, ତା ମଇଁଷୀ ବାହାନର ଗୋଡ଼ ଗଳି ପଡ଼ିବ । ଯମ ପିଆଣାପଡ଼ିଲା, ଆସିଲା ଝୋଲାମରା ଖରାଦିନେ, ସେତେବେଳେ ଗ୍ରାମଆଡ଼ ଶୁଖିଲା ଠାଉ,ଠାଉ । ଗାଁରେ ବସନ୍ତ ଲାଗିଲା । ଗେଣ୍ଡୁ ବୋଉ ଗଲେ । ବଳବନ୍ତର ନିଜେ ପଡ଼ିଲେ, ମୁହଁଯାକ ଗାତଫୁଟେଇ ଗୋଟିଏ ଆଖି ନେଇ ଯମ ବିଦା ହେଲେ । ଏଗାରବର୍ଷର ଗେଣ୍ଡୁ ପନ୍ଦରଥୋଏ ସହରରେ, ଗାଁକୁ ଆସିଲା ଯେ ଘରେ ରହିଲା ନାହିଁ, ବୋଉ, ବୋଉ ବୋଲି କାନ୍ଦି କାନ୍ଦି ତୋଟାମାଳ ଆଉ ବିଲମାଳ ଯାକ ବୁଲିଲା । ସେହିଦିନୁଁ ଟାଣୁଆ ଶାସନରେ ପୁଅକୁ ଅକଟିବା ବଳବନ୍ତର ଛାଡ଼ିଦେଲେ । "ଆଉ ଦୁର୍ବଳିଆଟା, ଏମିତି ବାପର ଏମିତି ପୁଅ । ହଉ ଭଗବାନ ଯାହା ଦେଇଛନ୍ତି । ତା ମନ ଯା ହଉଚି ସେ ତାହା କରୁ, ନାଁ ଟା ତ ଇସ୍କୁଲରେ ଅଛି ପାଠ ପଢୁଥିବ, ଟାଣକରି କହିଲେ ଭେଁ କିନା କାନ୍ଦିବ, ମା'କୁ ମନେ ପକାଇବ ।" ବାପାଙ୍କ ବିଭୀଷଣ ମୁହଁ କେବେ ତାକୁ ରୁଚି ନାହିଁ, ନିଜେ ଘରେ ନଥିଲା ବେଳେ ତା ବୋଉର ମରଣ ମନେ ମନେ ଡିଅରିଛି ତାଙ୍କରି ଉପରେ ସବୁଯାକ ରାଗ ଯେପରିକି ବାପାହିଁ ବୋଉର ମୃତ୍ୟୁ ପାଇଁ ଦାୟୀ । ପିଲାଟିଆ ଅଣ୍ଡୁଆ ଧାରଣା । କିନ୍ତୁ ସେ ରହିଗଲା । ତା ସହିତ ରହିଗଲା ବାପାଙ୍କର ଠିକ୍ ଓଲଟା ହେବାପାଇଁ ମନ ଭିତରେ ଗୋଟାଏ ଛପିଲା ଛପିଲା ନିଶା ଆଉ ବାପାଙ୍କର ଧରଣ ଧାରଣ ରୀତି ନୀତି ପ୍ରତି ଘୋର ଅଶ୍ରଦ୍ଧା, ଦିନଗଲା । ସେ ମାମୁଁଘର ଆଶ୍ରାରେ ସହରରେ ରହି ପାଠ ପଢ଼ିଲା ବାବୁ ହେଲା । ବାପା ବୋଲି ମାନ୍ୟ ଥିଲେ ବି ମନେ ମନେ ବାପା ଯେପରିକି ସେହି ଘୃଣ୍ୟ ମଫସଲର ପ୍ରତୀକ,— ଯେଉଁ ମଫସଲରେ ସହର ପରି ରାସ୍ତା ନାହିଁ, ବିଜୁଳୀବତୀ ନାହିଁ, ବଜାର ନାହିଁ କି ବଜାର ମଝିରେ ପାର୍କ୍ ନାହିଁ, ହୋଟେଲ ନାହିଁ, ସିନେମା ନାହିଁ, ଏ ପୋଷାକ ନାହିଁ, ଏ ଲୋକ ନାହାନ୍ତି,—ଯେଉଁ ମଫସଲ ମୋଟ ଉପରେ ସହର ନୁହେଁ । କୂଅର ବେଙ୍ଗ କୂଅ ଛତା ଆଉ ସବୁକୁ ମନେ କଲା ବର୍ଣ୍ୟ, ସେଠି ତାର

ଭରସା ପାଏ ନାହିଁ । କିନ୍ତୁ ବଳବନ୍ତସଙ୍କ ଦୁର୍ଦ୍ଦଶା ଏତିକିରେ ସରିଲା ନାହିଁ । ସ୍ତ୍ରୀ ମଲା ଠିକ୍ ସେହି ବର୍ଷ ଖରଦିନେ ଗୋରୁ ଗୁଡ଼ାକ ସେଗରେ ମଲେ । କୋଠାଘର ହେଲେ ବି ସେ ଘର ଆଗରେ ଗୁହାଳ ରଖିଥିଲେ, ଘର ଖାଁ ଖାଁ, ଭିତର ବାହାର । ସେହିବର୍ଷ ବର୍ଷାଋତୁ ଶେଷରେ ଅଦିନିଆ ନଈବଢ଼ି ଲାଗି ରହିଲା ଯେ ଜମିଯାକ ସବୁଗଲା, ଥୋଡ଼ାଏ ଗଲା ନଈରେ ଖାଇ । ନୂଆ ଧାର ଫିଟିଲା । ଆଉ ଥୋଡ଼ାଏ ଉପରେ ପୁରୁଷେ ଦେଢ଼ ପୁରୁଷ ବାଲି । ଘର ପାଖିଆ ନ୍ୟରିମାଣ ଦାରୁ ଠେଙ୍ଗ ଛାଡ଼ି ସବୁ ଗଲା ।

ତାପରେ ସେ ଜୀବନ ଯାକ ଲାଗିପଡ଼ିଛନ୍ତି ଦାରୁ ଠେଙ୍ଗକୁ ଖୋଳିତାଡ଼ି ଉଠିଆ କରିବାକୁ ଥିଲା । ଲୋକେ କନ୍ୟା ଯାଚିଲେ ସେ ବିଭହେଲେ ନାହିଁ ଗୋଟାଏ ଜିଦି, ପୁଅ ପାଠପଢ଼ି ଡାକ୍ତର ହେବ, ନାଁ ପାଇଁ ନୁହେଁ, ଆବଶ୍ୟକ ପାଇଁ । ସ୍ତ୍ରୀର ମରଣ ଆଖି କଣା କରି ବୁଝେଇ ଦେଇ ଗଲା—ଏ ମଫସଲରେ ଔଷଦ ଟୋପେ ନ ପାଇ ଲୋକେ ମରନ୍ତି । ଘରେ ଗାଁରେ ସେଗ ଥିବାଯାକେ ସେ ବାରମ୍ବାର ମା ଠାକୁରାଣୀଙ୍କ ଗୁହାରିଆ ହେଉଥିଲେ । ମନେ ମନେ ମାନସିକ କରୁଥିଲେ "ମା, ଏ ମୁଣ୍ଡ ନେ, ସେ ମୁଣ୍ଡ ରଖ୍"—କିନ୍ତୁ ଯେତେବେଳେ ସେ ଉଠିଲେ, ଗୋଟିକିଆ ଆଖିରେ ପୁରିଗଲା ସଗ, ଭାବିଲେ—"ସତେ ଠାକୁର ହୋଇଥିଲେ କଣ ମୋ ଗୁହାରୀ ଶୁଣି ନ ଥାନ୍ତା ?" ଭଲ ଡାକ୍ତର ଥିଲେ ମନଇଚ୍ଛା ଲଢ଼ି ଦେଖିଥାନ୍ତି ଥରେ । ଅନ୍ତର ଭିତର ଆପେ ପଣ କଲା ଗେଣ୍ଡୁ ବଡ଼ ଡାକ୍ତର ହେବ ।

ସେ ଡାକ୍ତର ସତ, କିନ୍ତୁ ଗାଁ ପାଇଁ ନୁହେଁ । ଘର ଆଗରେ ମୂତ ଗନ୍ଧ ବାରି ପଳଉଥିବେ ସହାପାଳର ଗନ୍ଧ ତାର ଚିହ୍ନା ଗନ୍ଧ ନୁହେଁ । ତାର ଚେତନାରେ ଗାଁ କହିଲେ ବୁଝାଏ ଅଶିକ୍ଷିତ ଜନବସତି, ସେଠି ସେଗ, କୁ ସଂସ୍କାର, ଅନ୍ଧବିଶ୍ୱାସ, ରକ୍ଷଣ ଶୀଳତା, ଆଉ ଅସନା କାଦୁଅ, ମଶା, ମାଛି । ସେଠି ପାଦେକେ ଛୁଆଁ ଡା ଲାଗି ଖୋଲା ଘା ସେପଟିକ୍ ହୋଇ ବିଷଫି ଯାଏ, ଜାତୀୟତାବୋଧ ଯୋଗୁଁ ଆତ୍ମପ୍ରସାଦ ଅନୁଭବ କରିବାଲାଗି ଗାଁ ଗାଁ ବୋଲି କଳ୍ପିତ କାବ୍ୟ ସ୍ୱର୍ଗ ବିଷୟରେ ଭାବ ପ୍ରବଣ ହୋଇ କହି ହୁଏ ଦଶପଦ, ପରକୁ ଉପଦେଶ ଦେଇହୁଏ—"ସହର ଛାଡ଼ି ଗାଁରେ ଯାଇ ରହ, ଦେଶକୁ ଗଢ଼ିଆଣ ଗାଁ ମାଟିରୁ, ଗାଁର ଉନ୍ନତି ନ ହେଲେ ଦେଶର ତ୍ରାହି ନାହିଁ", କିନ୍ତୁ ଆପେ ଦି ଦିନରୁ ଗ୍ରରିଦିନ ଗାଁରେ ରହିଗଲେ ଖାଇ ଗୋଡ଼ାଏ ।

ସେହି ଗାଁରେ ଅଦ୍ୟାପି ବାପ ବିଶୁ ବଳବନ୍ତରାଏ ଆପଣା ଜମିରେ ଖଟି ଖାଉଛନ୍ତି ବଗଡ଼ା ଭାତ ସାଙ୍ଗକୁ କ'ଣାଏ ଲେଖାଁ ବିରହିଡାଲି ଆଉ ପ୍ରଚୁର ସାରୁ, ପୋଇ, ଶୁଖୁଆ, ବାଇଗଣ ଘଣ୍ଟାଘଣ୍ଟି ତରକାରୀ, ହଜମ କରି ପାରୁଛନ୍ତି । କାହାରିକି ହାତ ପତେଇ ନାହାନ୍ତି । ପଢ଼ିବାଠୁଁ ଏଯାକେ ପୁଅର ସବୁ ଖର୍ଚ୍ଚ ଯୋଗାଉଛନ୍ତି, ନିଜେ ସେହି ବଗଡ଼ା, ମୋଟା, ଶୋଇବାକୁ ଭୂଇଁ ଚଟାଣ, ଖଣ୍ଡେ ସପ କି ଗ୍ଦର, ମୁଣ୍ଡତଳେ କେଉଁକାଳର କାଣ୍ଡିଲଗା ତକିଆ, ସେ କାଣ୍ଡିରେ ଗେଣ୍ଡୁ ବୋଉର ମୁଣ୍ଡର ଚୁଆ ଅଦ୍ୟାପି ବାସେ । ନିଦ ହୋଇଯାଏ । ଲମ୍ବ ହୋଇ ପଡ଼ୁ ପଡ଼ୁ ଘୁଙ୍ଗୁଡ଼ି ମାରନ୍ତି ।

ସହରର ସମାଜ ଯେତେବେଳେ ଅପମାନ ଦିଏ, ଠାବଦିଏ ନାହିଁ ବେଦବ୍ୟାସ ସେତେବେଳେ ମନେ ପକାଏ ତା ବାପାକୁ, ତା ଘରକୁ, ସେମାନଙ୍କୁ ଭଲପାଏ ବୋଲି ନୁହେଁ ଯେ, ସେମାନେ ତାର ଆତ୍ମାଭିମାନର ଏକମାତ୍ର ଆଶ୍ରୟ ବୋଲି । ତାର ଆତ୍ମାଭିମାନ ଏ ଚିହ୍ନା ସମାଜରେ ହାରି ପଳେଇ ଦୂରରେ ଥିବା ବାପା ଆଉ ଘରକୁ

ଧରି ଲୁପକ କରେ । ଯେପରିକି ମନେ ମନେ ସେଇଠି ଶାଡି ବାନ୍ଧି ଠିଆ ହୋଇ ସେ ଏହି ସହରର ଲୋକଙ୍କୁ ଦାନ୍ତ ଦେଖେଇବ ।

ଅଥଚ ବାପାଠୁଁ ଘରଠୁଁ କେତେ ଭିନେ ସେ । କେବଳ ଦେଖେଇ ହେବା ଏହି ତାର ଜୀବନକ୍ରିୟା, କେବଳ ଆପଣାକୁ ବିଭିନ୍ନ ଭଙ୍ଗୀରେ ଖୋଲି ଦେଖେଇବା, ଏହିତାର ସୁଖ, ସେଠି ନାହିଁ ମୂକ ଶକ୍ତି, ଅଛି ପ୍ରଗଲ୍‌ଭ ଦୁର୍ବଳତା । ସେହି ମଞ୍ଜିରୁ ଗଛ ହୋଇ ବି ଭିନ୍ନ ମାଟିରେ ବଢି ଭିନେ ହେଲା ତାର ଗୁଣ, ଗାଁ ମାଟିରେ ପର ସଙ୍ଗେ ବାଦବୁଦିଆ ନାହିଁ; ଆପେ ଯେତେ ଖଟିବ ସେତେ ପାଇବ, କାମ ନ କଲେ ଉପାସ ଶୋଇବ, କିନ୍ତୁ ତାର ସମାଜ ଉପୁଜେଇବା ଲୋକଙ୍କର ନୁହେଁ, ଖାଲି ତିଆରି ଜିନିଷକୁ କିଣେଇ ଦବା ଲୋକଙ୍କର, ନହେଲେ ମଧ୍ୟସ୍ଥ ହୋଇ ଫାଉ ମାରିବା ଲୋକଙ୍କର । ସେଠି ମୂଳରୁ ହବ ଛଡ଼ା ଛଡ଼ି ବାଦବୁଦିଆ, ସେଠି ଜନ୍ମରୁ ପ୍ରୟୋଜନ ହୁଏ ସୁବିଧା ଉଣ୍ଡି ପର ଉପରେ ଆପଣାକୁ ଲଦି ତରେଇ ଖାଇବା ନହେଲେ ଆପଣାକୁ ପରପାଇଁ ଲୋଭନୀୟ କରି ପରକୁ ବଶ କରି ଖୋରାକ ଭେଇବା । ଏହି କାର୍ଯ୍ୟରେ ଜିତିବାହିଁ ଗଣାହୁଏ ବୀରପଣ ବୋଲି । ତେଣୁ ଏଠି ରଙ୍ଗର ପ୍ରୟୋଜନ ହୁଏ ବେଶୀ, ଆଉ ମୁଖାର, ଆଉ ବେଶର, ଆଉ ଛଇଛଟକର । ପ୍ରାଣୀ ଜଗତ୍‌ରେ ବି ଅବିକଳ ଏହିପରି । ଗୋରୁର ରଙ୍ଗ ପ୍ରୟୋଜନ ହୁଏନାହିଁ, ଚମତ୍କାର ବେଶ କି ଭଙ୍ଗୀ ପ୍ରୟୋଜନ ହୁଏ ନାହିଁ । ତା କାର୍ଯ୍ୟରେ ଆସେ ବାଘର, ସାପର, ମାଂସାଶୀ ପୋକର । ନହେଲେ ପ୍ରଜାପତିର । ସେଠି ମଣିଷ ଉପାୟ ଖୋଜି ଖୋଜି ବ୍ୟସ୍ତ, ଉତ୍ତେଜିତ, କ୍ଲାନ୍ତ, ଅର୍ଜନକୁ ସୁଖରେ ଖାଇବାକୁ ବେଳନାହିଁ, ସବୁବେଳେ ସନ୍ଦେହ କାଳେ କିଏ ସୁଯୋଗ ବୁଝି ମାରିନେବ ଫାଉ, ସ୍ନାୟୁର ଗୁଣ ଟଣକିହିଁ ଥାଏ ସବୁବେଳେ ।

ସେହି ଭେକର ଖୋଳ ବୋହି ବୁଲୁଥିଲା ଡାକ୍ତର ବେଦବ୍ୟାସ, ସେ ହାରିଛି । ଆଜି ଲାଗୁଛି ତାର ଜୀବନ ନୀରର୍ଥକ । ଏତେ ବଡ଼ ଧକ୍କା ସମ୍ଭାଳିବାକୁ ମୂଳୁଦୁଆ ଦମ୍ଭ ନାହିଁ । ସବୁ ଓଲଟ ପାଲଟ, ନିଜେ କେବଳ ଏକ ଶୋଷୀ ପ୍ରେତାତ୍ମା, ଏଥର ଖାଦ୍ୟ ଆପଣାକୁ ଆପେ । ଆପଣାର ଦୁଷ୍ଟ ମନ, ହତାଶାର ଚିନ୍ତା । ପରାହତ କ୍ଷତ ବିକ୍ଷତ ଅନ୍ତର, ସେତିକି ତାର ସମ୍ବଳ । ଲୁହ ଲହୁଠୁ ଆହୁରି କଟୁ । କେବଳ ଖୁଲିଲା ଆଖିରେ ନିଜର ଚିତା ନିଆଁର ଚିତ୍ର ଦେଖିବା, ଆପଣାର ଶବଚ୍ଛେଦ ଦେଖିବା, ଘଡ଼ିକେ ପହର ଦୀର୍ଘଶ୍ୱାସ ପକେଇବା, ତାର ସଂସ୍କାର ନାହିଁ କି ଅନ୍ଧବିଶ୍ୱାସ ନାହିଁ । କାର୍ଯ୍ୟ ଆଉ ଫଳ ବିଶ୍ୱାସୀ ଅନ୍ଧ ବାଟ କାଛ ଭେଟିଛି ।

ଲୋକ ଦେଖା ପଡ଼ୁ ନାହାନ୍ତି, ଘରିଆଡେ ଖାଲି ଜଙ୍ଗଲ । ଉପରୁ ମାଡ଼ିବସିଛି ଆକାଶ, ତଳେ ନାନା ବର୍ଣ୍ଣର ଆଲୁଅରେ ଖାଲି ମଣିଷ କ୍ଷେତ, ମଣିଷ ଅରମା,— ମଣିଷ ଗଛ ମୁଣ୍ଡ ଟ୍ଟଙ୍ଗାରୁଛନ୍ତି, ତାର ଦୃଷ୍ଟିକୁ ସେମାନେ ନିରର୍ଥକ, କେତେବେଳେ ପଠାରେ ବେଣା ଅରମା, ଉପରେ ଉପରେ ଲମ୍ବ ଲମ୍ବ ବେଣାଫୁଲ, ସବୁ ମିଶି ସେହି ଏକ ଧଳା, କେତେବେଳେ ଗୋଟି ଗୋଟିକିଆ ଫୁଲ କୋବି ବଡ଼ ଯାନ ହେଲେ ବି ସେହି ଏକ, ମନରେ ନୂଆ ଭାବ ଆଣୁନାହିଁ କୌଣସି ଗୋଟିଏ ବି ମୁଣ୍ଡ, ଚିନ୍ତା ଆଗରେ ଧଳାପର୍ଦ୍ଦା, ଫାଙ୍କା । ଆଉ ସାମ୍ନାରେ ତାର ଯନ୍ତ୍ରଣା—କିଛି ଭାବ; ସେ ବଞ୍ଚିଛି, ସେମାନେ ମରିଛନ୍ତି, ସେ ବଞ୍ଚିଛି ଖାଲି ଦୁଃଖରେ କଲବଲ ହେବାପାଇଁ ।

ବାରନ୍ଦାର କୋଠା ଆଡ଼କୁ ଦୃଷ୍ଟି ଛାଟୁଛି, ଦିଶୁଛି ଝରକା ଗୋଟିକି ଗୋଟି । ଖୋଲା ଝରକା ଉପହାସ କରି ନିମନ୍ତ୍ରଣ କରୁଛି, ସେଥିରେ ଗାର ଗାର ହୋଇ ଲୁହା ବାଡ଼, ସେପାଖେ ଫାଙ୍କା ଆଲୁଅ କେହି ନାହିଁ ।

କେତେବେଳେ ତାକୁ ନିଶା ଲାଗୁଛି, ଲଜାଏ ଆଖିରେ ଚିକିମିକି କରି ଦେଖୁଛି ତାର ହାବଭାବ । କେମିତି ତାର ମୁହଁ ପାଣିଶୋଷା ମୁଖା ପରି ହୋଇ ରହିଛି । ହାତରେ ସିଗାରେଟ୍ ଜଳୁଛି, ଆଖିରେ ଏକ ଅଦ୍ଭୁତ ଭାବ । ସତେ ଯେପରି ସେ ନିଦରୁ ଉଠି ଚାଲି ଆସିଛି ନିଦ ଛାଡ଼ିନାହିଁ । ସେଥିପ୍ରତି ସେ ଅଚେତନ । ସେହି ଲୋକଟାତ । ପୂର୍ଣ୍ଣ କରିବାକୁ, 'ବନ୍ଧୁ' ନହେଲେ ଯାହାର ଦଣ୍ଡେ ବେଳ କଟେ ନାହିଁ । ଏପରି ଖଣ୍ଡ ଖଣ୍ଡ 'ବନ୍ଧୁ' କାହାରି ନ ଥିବେ । ସେମାନଙ୍କୁ ସେ ବାନ୍ଧିଛି କେଉଁ କେଉଁ ମୁହୂର୍ତ୍ତରେ । ଷ୍ଟ୍ରଃ କପ୍ ସର୍ବତ ଗିଲାସ ଉପରେ, ସିଗାରେଟ୍ ଧୂଆଁରେ, ତାର ଅଖଳା ଗପରେ, ଭଜ ହସରେ । ଆପଣାର ସମୟ ତାଙ୍କ ସମୟ ଏକାଠି ବିଞ୍ଚି ଦେଇଛି ଅକାତରେ । ସେମାନେ ଚାହିଁଛନ୍ତି । ସେ ଅନୋଉ ନାହିଁ । ହେଉ ସେଠି ଦଳେ ଫେଲୁ ଗେଲୁ ମଣ୍ଡନ ଲଣ୍ଡ ଧୂଆଁ ଫୁଙ୍କି ଫୁଙ୍କି ତା ଆଡ଼କୁ ଚାହିଁଛନ୍ତି । ସାଧାରଣ ଦିନ ହୋଇଥିଲେ ଏକାଠି ହସାହସି ହୋଇ ପିଉଥାନ୍ତି ନୂଆ ଅବିଷ୍କୃତ ସବିତା ଦାସ କଥା । ସବିତା କହନ୍ତି ଅଦ୍ୟାପି ସେ ଏମ୍ ଏ ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଛନ୍ତି । ଏବଂ ଆପଣା ଘରେ ଠାଏ ହାର୍ମୋନିୟମ ଡକେଇ ସେ ଭଜ ଗୀତ ବୋଲନ୍ତି ଯଦିଚ ବୟସ ହେଲାଣି ତିରିଶର କିଛି ସେପାଖେ । ସେଠିକି ଗଲେ ବିଶିଷ୍ଟ କଳସିଆ ତାଙ୍କ ନିଜ ବାଗିଚ ପାଚିଲା କଦଳୀ, ଚା' ପରିବର୍ତ୍ତେ କୋକୋ, ତା ପରେ କଦଳୀ ବାଡ଼ିରୁ ଛପିଲା ଟଙ୍କାରୁ ସଂଗୀତ । ସବିତା କହନ୍ତି ସେ ସମସ୍ତଙ୍କ ଆଗରେ ସଂଗୀତ ଭଜ ଖୋଲେ ନାହିଁ । କଦଳୀ ବାଡ଼ି, ସଙ୍ଗୀତ ଓ ସବିତାଙ୍କ ସମ୍ପର୍କରେ ତାଙ୍କ ଅନୁପସ୍ଥିତିରେ ଏଠିବି ଆଲୋଚନା ଚାଲିଛି, ଧୂଆଁ ଛାଡ଼ି ଛାଡ଼ି ସମସ୍ତେ ହସୁଛନ୍ତି । ସେହି ବାଟେ ବେଦବ୍ୟାସ ତ ଗଲା, କାହିଁ ମିଶିଲା ନାହିଁତ ।

ଏଠି ସେଠି ଆଉ କେତେ ଦଳ, ଉତ୍ସାହୀ ଟୋକା ଚାକିରିଆଙ୍କ ଦଳ । ବିଭିନ୍ନ ଅବସ୍ଥାର ଓଭରମାନଙ୍କ ଦଳ, ପୁଞ୍ଜି ଓକିଲ ବ୍ୟବସାୟୀ, କିଳାପୋଡ଼ିଆ, ନିଆଁଗିଳା, ମଟର ବିହାରି ହାଲୁକା ବେଶ ହାଲୁକା ବ୍ୟକ୍ତିତ୍ୱର ବଡ଼ଲୋକଙ୍କ ଉତ୍ତରାଧିକାରିଙ୍କ ଦଳ, ଫୁଟବଲ ଖେଳାଳି ଦଳ, ତାସ ଖେଳାଳୀ ଦଳ, ତାର ସବୁଠୁ ପ୍ରିୟ ସଂଗୀତ ସମାଜ ଦଳ, ଗାତି ନାଟ୍ୟ ପରିଷଦର ଦଳ । ଅପ୍ରଗଳ୍ଭ ବକ୍ତାଦଳ, ନୀରବ ଶ୍ରୋତା ଦଳ, କେତେ ଦଳ ପୁଞ୍ଜା ପୁଞ୍ଜା ହୋଇ ଏଠି ସେଠି ରହିଛନ୍ତି ଯେଉଁ ଦଳରେ ସେ ପରିଚିତ, ଯେଉଁଠି ସେ ଜୀବନର କିଛି ଅଂଶ ବିତେଇଛି, ଯେଉଁଠୁ କିଛି କଳା ନେଇ ଗଢ଼ା ହୋଇଛି ତାର ସ୍ୱରୂପ । ସେହି ବାଟେ ସେ ଖାଲି ଭସି ଚାଲି ଯାଉଛି, କୂଳରେ ଲାଗୁନାହିଁ, ଯେପରିକି ଭାସିବା ହିଁ ତାର ଜୀବନର କ୍ରମ, ଆଉ କିଛି ନାହିଁ । ସେମାନେ ନିରର୍ଥକ, ସେ ବି ନିରର୍ଥକ, ଛାଇ ମେଳରେ ଛାଇ, ଏତିକି । ଆଉ ସେ ଛାଇ ଉହାଡ଼ରେ ଛପିଲା ପରି ଯେଉଁଠି ଜଳୁଛି ତାର ଚେତନା ମିଞ୍ଜି ମିଞ୍ଜି ସେ ଖାଲି ଖୋଜୁଛି ଦୁଃଖ ଅନୁଭୂତିର ଛନ୍ଦନ, କେବଳ ଓର ଉଣ୍ଡୁଛି କଣ ଏଠି ଉପାଦାନ ମିଳିବ ଯହିଁରେ ତାର ଯାତନା ଆହୁରି ବଢ଼ିଯିବ, ସେତିକି ତାର କାମ୍ୟ ।

ହଠାତ୍ ସେ ନିରର୍ଥକ ଜଡ଼ପଦାର୍ଥ ଗହଳିରେ ଚମକି ଉଠୁଛି, ଅନ୍ତତଃ ଗୋଟିଏ ଜଡ଼ବସ୍ତୁ ହୋଇ ଉଠୁଛି ଜୀବନ୍ତ । କାରଣ ସେହିଠୁ ସେ ଆହୁରି ଦୁଃଖରେ ସନ୍ଧାନ ପାଇ ପାରୁଛି । ତାହାରି ସଂସ୍ପର୍ଶରେ ଜୀଅନ୍ତା ହୋଇ ଚେଇଁ ଉଠିଛି ପରିବେଷ୍ଟନୀ, ବେଦବ୍ୟାସର ଚେତନା ଆଗରେ ଗୋଟାଏ ପ୍ରକାର ଅବସ୍ଥିତିର ପରିସମାପ୍ତି ଘଟିଲା । ସେ ନୂଆ ଅବସ୍ଥିତିରେ ବଞ୍ଚୁଛି । ଆଶ୍ଚର୍ଯ୍ୟ ହୋଇ ଅନାଇଁ ରହିଲା, ଯେପରିକି ଏ ଏକ ବଡ଼ ଚମକ ହଠାତ୍ ସହି ହେଉ ନାହିଁ, ତା ପରେ ସେ କରଛଡ଼ା ଦେଇ ଗୋଟିଏ

ତାହାରେ ଠିଆ ହୋଇ ଅଣ୍ଟାରେ ହାତ ଦେଇ ଅନେକ ରହିଲା, ହୁଏତ ସେ ଦିନ ଲାଗିଲା ସବୁ ଇନ୍ଦ୍ରିୟ ସଂଯୋଗ କରି, ଅବଶ ଅଂଶ ଉଡ଼ୁଆଳରେ ଆପଣାର କିଛି ଅନ୍ତର ବେଦନାରେ ହିଁ ଖୋଜି ପାଇଲା ଆତ୍ମ ବିଶ୍ୱାସ ।

ଓଠରେ ଓଠ ଚିପି ଅପଲକ ଆଖିରେ ଅନେଇ ରହିଲା,—କଳା ଖାପୁଲା ମୋଟା ସୋଟା ହୋଇ ସାଧାରଣ ଉଚ୍ଚତାର ଲୋକଟିଏ । ଖୁବ୍ ବଡ଼ ମୁଣ୍ଡ, ଚଉଡ଼ା କପାଳ, ଆଖିରେ ଓସାର ଫ୍ରେମ୍‌ର କଳା ଚଷମା, ତଳ ଓଠ ମଝିରେ ଯେପରିକି ଉପରକୁ ଯାଉନାହିଁ, ଗଢ଼େଇ ବେଳେ ଭୁଲ୍ ରହିଯାଇଛି । ତେଣୁ ପାଟି ଅଳ୍ପ ଆଁ ହୋଇ ବଳିଷ୍ଠ ଛାମୁଦାନ୍ତର ତଳ ଅଧିକ ବି ଦିଶୁଛି । ଓସାର କାନ୍ଧ ଥାଇ ଛାତି ଦିଶୁଛି ଆବୁଆବୁଆ, ସିଲ୍‌କର ଲୁଗା ପଞ୍ଜାବି ପିନ୍ଧିଛି, ମୋଟା ବେକରେ କଳା ଉପରେ ସରୁ ସୁନାହାର, କିନ୍ତୁ ତା'ର ଦେହ ଯେପରିକି ସିଲ୍‌କ ପୋଷାକ ବିରୁଦ୍ଧରେ ବିଦ୍ରୋହ କରି ଉଠୁଛି । ସେ ବଳ୍‌ର, ସୌନ୍ଦର୍ଯ୍ୟର ନୁହେଁ । ବଡ଼ ସହରର ବଡ଼ ଲୋକ ଦଳେ ଟେବୁଲ ଚାରିପାଖେ ବସିଛନ୍ତି । ବ୍ରଜନାଥ ବିଶ୍ୱାଳ ବିନୟରେ ମୋଡ଼ି ମୋଡ଼ି ହୋଇ ସେହିମାନଙ୍କୁ ଚିହ୍ନାଇ କହୁଛନ୍ତି—"ଆଜ୍ଞା ଏଇ ମୋର ଯୋଇଁ ଦିବାକର ଦଳେଇ ।" ତିରିଶ ହାତ ଦୂରରୁ ବେଦବ୍ୟାସ ତାକୁହିଁ ଚାହିଁ ରହିଲା । ମୁଣ୍ଡ ଭିତରେ ରେକର୍ଡ଼ ବାଜି ଲାଗିଲା—ଦିବାକର ଦଳେଇ, ଦିବାକର ଦଳେଇ । ଆଜି ଦିନ ବାରଟା ବେଳେ ଦିବାକର ଦଳେଇ ଟୁନିକୁ ବାହା ହୋଇଛି, ସେତିକିବେଳୁ ଟୁନି ତାର, ଆଉ କାହାରି ନୁହେଁ ।

ଟୁନି ସୁନ୍ଦର ଛବିପରି ମୁହଁପାଖେ ବାରମ୍ବାର ଏକାଠି ହେବ ଏହି ଗୋଲ-ଗାଲ୍ ଚିକ୍‌ଚିକ୍ ପ୍ରକାଣ୍ଡ ମୁହଁଟା । ଏମିତି ଏହି ଆଁ ତଳିଓଠ ଓହଳି ପଡ଼ିଥିବ । ଚିକ୍‌ଚିକ୍ ଧଳା ଛାମୁଦାନ୍ତରେ ମାଂସାଶୀ ହସ । ଟୁନିର ତାରକସି ଗଢ଼ା ଟିକି ଆଙ୍ଗୁଠି ସମେତ କଅଁଳ ପାପୁଲିକି ଲୁହା ସଣ୍ଡାସିରେ ଯାପି ଧରିବ ଏହି ଆକୁଳ ଆକୁଳ ଆଙ୍ଗୁଠିମୟ ବଡ଼ ପଂଝା, ମେଘପରି ଘୋଡ଼େଇ ପକେଇବ ତାକୁ ଏହି ପଶୁ ଦେହ, ଟୁନି ତାର, ଗୋଟାପୁଞ୍ଜା ତାର, ଉଁ ଚୁଁ ନାହିଁ । ଏତେ ଲୋକ ତାର ସାକ୍ଷୀ, ସମାଜ ତା'ର ସମର୍ଥକ,—ଓଃ ।

ଦିବାକର ଦଳେଇ—ଦିବାକର ଦଳେଇ—ଦିବାକର ଦଳେଇ—

ସେତେବେଳେ ସେମାନେ ହିଁ ତାକୁ ସମାଲୋଚନା କରୁଥିଲେ । ବିଶେଷତଃ ତା'ର ଏଇ ପୁଷ୍ଟ ପଶୁ ଚେହେରକୁ ହିଁ । "ଷଣ୍ଢ ଯେପରି ପବନ ଶୁଙ୍ଘି ଶୁଙ୍ଘି ପାଟିକୁ କରେ ମୁହଁଟା ଠିକ୍ ସେମିତି"—ସେମାନେ କହୁଥିଲେ । "ଟୁନି ଯେପରି ସୁନ୍ଦର-ପଣରେ କୋଟିକରେ ଗୋଟିଏ ଅସୁନ୍ଦରଙ୍କ ଭିତରେ ସେମିତି ସେ । ଛି, ରାକ୍ଷସ ପରି ଚେହେରା । ଗୋଟାଏ ଟିମା ରାକ୍ଷସ । ଟୁନି ନାଁରେ ବର ହେବାକୁ ସେ । ଛି—ଥୁ ।" ସେତେବେଳେ ସେସବୁ ଶୁଣି ଲାଗୁଥିଲା—ବିଧାତା ଅନ୍ଧ ନୁହେଁ ସଂସାରରେ ନ୍ୟାୟ ଅଛି । ଏ ବିବାହ ହେବ ନାହିଁ । ଅଥଚ ବିବାହ ପରେ ସେହିମାନେ ହିଁ ପୁଣି କୁହାକୋହି ହେଉଛନ୍ତି—"ଚମତ୍କାର ବର । ଖାସାମର୍ଦ୍ଦ ପରି ଚେହେରା କି ବିନୟୀ । କି ନମ୍ର । ପଢ଼ିଛି କେତେ । କି ବୁଦ୍ଧି । ମଣିଷ ହେବ ତ ଏଇ । ବ୍ରଜ ବିଶ୍ୱାଳଙ୍କ ଭାଗ୍ୟ ଭଲ, ଯାହା କଲେ ସବୁ ଉଜ୍ଜଳ ।" ତାକୁ ଦେଖି ସେମାନଙ୍କ ମୁହଁରୁ ହସର ଧାର

ଲୁଚ୍‌ଛି, ସମାଚର ଜଣାଉଛନ୍ତି କୁଶେର ପଢେଇଲା ପରି, ମହା ଆନନ୍ଦ, ସେ କି ଖୁସ୍ ଖୁସିଅଛି । ନହେବ କାହିଁକି, ସେ ବିଜେତା । କି ତେଜ । କି ଗର୍ବ । କି ଆନନ୍ଦ । ମୁଣ୍ଡ ଭିତରେ ରେକର୍ଡ ବାଜୁଛି—

ଦିବାକର ଦଳେଇ—ଦିବାକର ଦଳେଇ—ଦିବାକର ଦଳେଇ—

ଛାତି ଉପରେ ଚଢି ତାରି ମୁହଁକୁ ଚାହିଁ ରହି ଯେପରିକି ସେ ବିଭତ୍ସ ମୁହଁରେ ବଡ଼ ଆଁ କରି ହସୁଛି ।

ଅଜାଣତରେ ବେଦବ୍ୟାସ କେତେବେଳୁ ଘରେ ପାଚିଗଲେଣି । ଦେହଯାକ ଟଣକି ରହିଛି । ଅତି ଖର ତତଲା ନିଶ୍ୱାସ । ଛାତି ଉପରେ ଦୁଇହାତ ଗଣ୍ଠି ପଡି ଯାଇଛି । ସବୁ ଚାହାଣିରେ ଅନେଇ ରହିଛି ପ୍ରତିଦ୍ୱନ୍ଦୀକୁ । ମନେ ମନେ ଗୋଟାଏ କଳ୍ପିତ ଠାଣି, ସେ ବନ୍ଧୁକ ଲାଖ କରୁଛି, ବନ୍ଧୁକ ଘୋଡ଼ାରେ ଚିପ ପକାଉଛି । ସବୁ ଘଚ, ଥରିବ ନାହିଁ ମୁଣ୍ଡ। ଖିଅକେ, ଥରୁ ନାହିଁ, ଥୋମଣାରେ ଯାବ ପଡ଼ିଯାଇଛି । ଦିବାକର ନୁହେଁ, କଦାକାର କୁତ୍ସିତ ପୁଳକତା—ପଶୁ ରାକ୍ଷସ ପିଶାଚ ।

ନିଘାହେଲା, ଦିବାକର ତାହାରି ଆଡ଼କୁ ଚାଲି ଆସୁଛି । କାହିଁ ଗର୍ବ ? ବିନୟରେ ନଇଁ ପଡ଼ିଛି ତା'ର ମୁହଁର ଠାଣୀ, ମୋହିଁ ଧରିଛି ଗୋଟିଏ ଧୀର ମଧୁର ହସ,—ଉଦ୍ୟତ ହିଂସା ମୁହଁକୁ ସତ୍ୟାଗ୍ରହୀର ଶାନ୍ତ ବିନୟ ପରି । ଦୂରରୁ ନମସ୍କାର ଜଣାଇଲାଣି । ଗୋଟିଏ ଗୋଟିଏ ହୋଇ ଚାଲି ଆସିଲାଣି ପାଖକୁ ପାଖକୁ ।

ହଠାତ୍ ବୁଲିପଡ଼ି ବେଦବ୍ୟାସ ସେ ସ୍ଥାନ ଛାଡ଼ି ଅନ୍ୟତ୍ର ଚାଲିଗଲା, ଦେଖିଲା ଦିବାକରର ହସ ନିଭିଲା ନାହିଁ, ଯେପରିକି ସେ ମୋଟେ ତାକୁ ଉଦ୍ଦେଶ୍ୟ କରି ନ ଥିଲା ସେହିପରି ଭଙ୍ଗୀରେ ସେହି ଠାଣୀରେ ସେ ହାବୁଡ଼ିଲା ଅନ୍ୟ ଏକ ବନ୍ଧୁ ଦଳରେ । ଜଣେ ତା'ର ପିଠି ଚାପୁଡ଼ଉଛି । ନିଶ୍ଚୟ, ହେଇ ତ ସେ ହୋ ହୋ ହସିଲେଣି । କାହା ବିଷୟରେ ଥଟ୍ଟା ? ଟୁନି ବିଷୟରେ ନୁହେଁ କି ?

ଏଥର ତା'ର ଦୁଃଖର ଚରମ, ଦୁଃଖର ରସ ପ୍ରଚୁର ପିଇଲାଣି, ନିଶା ଧରିଛି । ଠିଆ ଠିଆ ଗୋଟାଏ ଆଲୁଅ ଖୁଣ୍ଟକୁ ଆଉଜି ରହି ସେ ଆଖି ବୁଜିଦେଲା । ଆଉ ଭାବି ହେଲା ନାହିଁ ।

ନାଁଟା ଅଚିହ୍ନା ନୁହେଁ ।

ସେଦିନ ସକାଳେ ପର୍ଦ୍ଦା ଠେଲି ବେଦବ୍ୟାସର ବୈଠକଖାନାକୁ ପଶି ଆସିଥିଲା ଏହି ଲୋକଟା । ପିନ୍ଧିଥିଲା ପ୍ୟାଣ୍ଟ ଆଉ ହାତକଟା କୋଟ୍ । ଚଳନ୍ତି ଉଦ୍ଧତାର ବେଗର ଓଲଟେଇ କୋଟ୍ ପକେଟ୍‌ରୁ ସିଗାରେଟ୍ ଟିଣ ବାହାର କରି ମୋହିଁ ଧରିଥିଲା । ମୁଖାଗ୍ନି ଦେଇଥିଲା । ଆଖିକୁ ସିଧା ଚାହିଁ ହସିଦେଇ କହିଥିଲା—

"ଗୋଟାଏ ଜରୁର୍ କାମରେ ଆସିଲି" । ସେତେବେଳେ ଅଭିଭୂତ କରିଥିଲା ଏ ଲୋକଟାର ବଳିଷ୍ଠ ବ୍ୟକ୍ତିତ୍ୱ । ବୃହସ୍ପତିଙ୍କ ଉଚ୍ଚ ଆସନ ତା'ର ଡିମା ଡିମା ଆଖି ଉପରେ ହାଡ଼, ଅତି କଳା ଗହଳ ଆଖିପତା, ଚଷମା ଉହ୍ଲୁଆଳରୁ ତାର ତେଜି ଆଖି । ଲୋକଟା ବଳିଷ୍ଠ ଆଉ ଲୋମଶ । ଖିଅର ହୋଇବି ମୁହଁଟା ମୁଗୁନି ରଙ୍ଗ, ଦୁଇ କାନରେ ଦୁଇମେଞ୍ଚା ବାଳ, ହାତକଟା କୋଟ ତଳେ ଛଇଞ୍ଚିଆ ଲୁହା ପାଇପ୍ ପରି ଯେଉଁ

ହାତ ଦି'ଟା ଓହଳିଛି ସେ ଦିଟା ଦିଶୁଛି ଅତି ବଳିଷ୍ଠ ଅଉ କାର୍ଯ୍ୟକ୍ଷମ । ଡାକ୍ତର ବେଦବ୍ୟାସ ଯଦି ସ୍ୱାସ୍ଥ୍ୟର ସୂତ୍ର ଜାଣେ ତେବେ ତା'ର ଉଦାହରଣ ଏହି ଅଟନ୍ଟୁକ, ହର୍ମୋନ୍, ପିଟୁଟର ଗ୍ଲାଣ୍ଡ—ମଲ୍ଟି ଭିଟାମିନ୍ ଆଦି ସ୍ୱାସ୍ଥ୍ୟକାରକମାନଙ୍କର ସମବେତ ଆଶୀର୍ବାଦ ପାଇ ବଢ଼ି ଉଠିଛି ଛନ୍ଛନିଆ ମଣିଷ । ଟେବୁଲ ଉପରର ସମ୍ବଲପୁରି କାରୁକାର୍ଯ୍ୟର ଦୃଶ୍ୟ ବୁଣା ଗୁଦର ଉପରେ ସେ ତା'ର ଲୋମଶ ଦୁଇହାତ ଥୋଇ ଦେଲା, ପାଞ୍ଚ ଇଞ୍ଚ ଉଞ୍ଚ କମକୁଟ ଖଡ଼ି ମନ୍ଦିର ଉପରେ ମୋଟା ପାପୁଲିର ଖରଥୋର ଆଉଁସି ଆସିଲା । ଦି'ପାଖର ଦୁଇଟି ଲଂଗୁଳି ନଟୀମାନଙ୍କ ପେଟରେ ଯୋଡ଼ା ଅଙ୍ଗୁଠିରେ ଦେଲା ଗେବାଏ ଲେଖା, ଟଳି ପଡ଼ୁ ପଡ଼ୁ ମୁଠେଇ ଧରି ଏକାଠି ଥୋଇଦେଲା । ତା'ପରେ ଦୂରରୁ ଆଖିକି ଆଖି ଯୋଖି କଥା ପକାଇଲା ।

ସଂକ୍ଷିପ୍ତ—ତାର କାହାଣୀ । ସେ ବିଶାଖାପାଟଣାରୁ ବିଏସ୍. ସି. ପାଶ୍ କରି ଧାନବାଦରୁ ମାଇନିଂ ପାଶ୍ କରି କେନ୍ଦୁଝର ଖଣିରେ ଜଣେ ଅଫିସର ହୋଇ ନୂଆ ଆରମ୍ଭ କରିଛି । ଘର ଦକ୍ଷିଣରେ । ମାଲ୍କାନଗିରିର ଖଲିମେଳା ପାହାଡ଼ ପାଖେ । ସେଠି ତାଙ୍କର ନିଜର ଗୁଏଟେ ଗାଁ ଓ ସେଠି ସେମାନେ ମୋଖାସାଦାର । ପୂର୍ବେ କେବେ ତାର ପୂର୍ବପୁରୁଷମାନେ ମଣିଷଙ୍କ ସଙ୍ଗେ ଲଢ଼େଇ କରି ଦଳେଇ ଉପାଧି ପାଇଥିଲେ । ଏବେ ଗାଁ ମାଟି ସଙ୍ଗେ ଲଢ଼େଇ କରନ୍ତି ବାପ ଦାଦି, ସେ ଲଢ଼େଇ କରେ ପଥର ସଙ୍ଗରେ । ମିଷ୍ଟର ବଳବନ୍ତ ରାୟ ଶୀକାର ଭଲପାଆନ୍ତି କି ? ପିଲାଦିନୁଁ ସେ ଶୀକାର ପ୍ରାୟ, ମାଲ୍କାନ୍ଗିରି ବଣରେ ଶୀକାରୀ । ମିଷ୍ଟର ବଳବନ୍ତ ରାଏ ଖେଳ ଭଲ ପାଆନ୍ତି କି ? ସେ ଖେଳଠୁ ଭଲପାଏ ବେଶୀ କସରତ୍, ଆଉ ଜଙ୍ଗଲ, ଆଉ ପାହାଡ଼ । ସହର ତାକୁ ଆଦୌ ଭଲ ଲାଗେନାହିଁ । ଏତେ ଯକାଯକିରେ ମଣିଷର କେବେ ବୃଦ୍ଧି ଘଟିପାରେ ? ପ୍ରକୃତିର ନିୟମ ମିଛ ହେବ ନାହିଁ । ମିଷ୍ଟର ବଳବନ୍ତ ରାୟ ପ୍ରକୃତି ଭଲ ପାଆନ୍ତି ? ମାଲ୍କାନ୍ଗିରି ବଣରେ ପିଲାଦିନୁଁ ଲୋକ ପ୍ରକୃତିର କୋଳ ସୁଖପାଏ । ସେଠି ଚୈତନ୍ୟ ଉପରେ ଶହେ ଚୌରଳିଣ୍ ନାହିଁ, ତେଣୁ ଲୋକ ସୁସ୍ଥ ହୋଇ ମନଇଛା ବଢ଼େ, ନା ମିଷ୍ଟର ବଳବନ୍ତରାୟ କ'ଣ କହୁଛନ୍ତି ?

ତା'ପରେ ହଠାତ୍ ଅପ୍ରତ୍ୟାଶିତ ପ୍ରଶ୍ନ—

"କିଛି ଭାବିବେ ନାହିଁ, ବ୍ରଜନାଥ ବିଶ୍ୱାଳଙ୍କ ଘରେ ମୋର ବିଭାଘର ଲାଗିଛି, ଆପଣ ସେ ପରିବାରର ବନ୍ଧୁ ଓ ସଂପର୍କୀୟ । ଏ ବିଭାଘରରେ ଆପଣଙ୍କ ଅମତ ଅଛି" ?"

"ମୋର" ।—ଅଟକେଇ ପାରୁନାହିଁ, ତୁଣ୍ଡରୁ ବାହାରି ଯାଉଛି,—"ମୋର କାହିଁକି ଅମତ ହେବ ? ମୁଁ ସୁଖୀ ହେଲି, ଖୁବ୍ ସୁଖୀ ହେଲି"—ବାକ୍ୟ ନସରୁଣୁ ଦିବାକର ମୁହଁରେ ହସ ଝଲକୁଛି, ପୁଣି ସିଗାରେଟ୍ ଟିଣ ବଢ଼େଇ ଦେଉଛି । ନିଆଁ ଲଗେଉଛି, ଦୃଷ୍ଟିକୁ ଦୃଷ୍ଟିରେ ବାନ୍ଧିଧରି ଅନର୍ଗଳ ଭାବରେ ସେ କହି ଗ୍ଲୁଲିଛି—"ମୁଁ ଜାଣିଥିଲି, ଆପଣଙ୍କର ଅମତ ହେବ ନାହିଁ । ବାଦୁଆ ଲୋକେ କେହି କେହି ମତେ କହିଥିଲେ ଅନ୍ୟ ପ୍ରକାର, ଲୋକଙ୍କ ତୁଣ୍ଡ ସେମିତି, ଯାହା ପାରି ତା କହି ଗ୍ଲୁଲିଯାନ୍ତି । ମୁଁ କାହାରି କଥାରେ କାନ ଦେଇନାହିଁ, ଆପଣଙ୍କ ପରି ଭଦ୍ରଲୋକ, ହେଃ । ତେଣୁ ଭାବିଥିଲି, ଉପରେ ପଡ଼ି ନିଜେ ଆସି ବୁଝିଯିବି । ବଙ୍କା ଗ୍ଲୁଲି ଆଉ ଲୁଚାଛପା କଥା ମୁଁ ଘୃଣା କରେ । ତଥାପି ମୁଁ ସେମାନଙ୍କୁ କହିଥିଲି,—ପଥରରେ ମିଶିଥାଏ ମେଟାଲ୍,

ଖାଦ ଛାଡ଼ି କେବଳ "ମେଟାଲ୍-ଇନ୍-ପ୍ୟୁର୍"—ଏପରି ଥାଏ କେତେକ ଜୀବନ ବିମୁଖ କବିଙ୍କ କବିତାରେ, ପଥର ଅଛି ବୋଲି ମେଟାଲକୁ ଗୋଡ଼ରେ ଯେ ଏଡ଼େଇ ଯିବେ ଜୀବନ ତା' ପାଇଁ ନୁହେଁ, ଜୀବନ ଏଇ ମିଶାମିଶି । ଏଇ ଅକ୍‌ସାଇଡ୍, ଆମାଲ୍‌ଗାମ୍ ଆଉ କମ୍ପାଉଣ୍ଡ୍, ଆଉ ତାହାରି ସହିତ ସଂଘର୍ଷ, ସଂଘାତ, ମାନେ ଏଇ ଏମିତିକିଆ, ଯାହା ଆଉ ମୁଁ ଡରି ନ ଥିଲି । ବର୍ତ୍ତମାନ ତ କଥା ସଫା ହୋଇଗଲା, ମୋର ଛାତିର ବୋଝ ଅହୁରି ହାଲୁକା ହେଲା । ଆପଣଙ୍କୁ ଧନ୍ୟବାଦ୍, ବିବାହ ସରୁ ଆସିବେ କେବେ ଆମ ମାଲ୍‌କାନ୍‌ଗିରି । ମୁଁ ଆପଣଙ୍କୁ ବୁଲେଇ ବୁଲେଇ ଦେଖାଇବି ।" ତା'ର ପାଟି ଅଠା ଅଠା ହୋଇ ଯାଇଥିଲା ।

ଦେହ—ଖୋଳ ଯେପରିକି ନୋଝକୋଝ ହୋଇଯାଇଛି । ତାହା ଭିତରେ ସଙ୍କୁଚିତ ହୋଇଯାଉଛି ମୁଁ ପଣ; ଦମ୍ଭ ଭାଙ୍ଗି ପଡ଼ିଛି, ଦୁର୍ବଳ ଭୟ—ହତାଶାରେ ସେ ଏକ ଦୃଷ୍ଟରେ ଚାହିଁ ରହିଛି ଆଗନ୍ତୁକର ମୁହଁକୁ,—ଜଙ୍ଗଲରେ ବାଘ ଆକ୍ରମଣ କରିଛି ମୁହାଁମୁହିଁ, ସେଠି ସଭ୍ୟ ମଣିଷର ସଭ୍ୟତାର ଉପର ଭେକର ବଳେଇ ଆଉ ଚତୁରତା ନିଷ୍ଫଳ ।

ଉଲ୍ଲାସରେ ଦିବାକର ଦଳେଇ ଉଠି ଚାଲିଗଲା, ଗଲାବେଳେ କହିଗଲା—"ଆପଣ ହେଲେ ଚିରଦିନର ବନ୍ଧୁ, ସେ ଘରର ଆଉ ମୋର । ଏ ଦରିଦ୍ର ବନ୍ଧୁକୁ ଭୁଲିବେ ନାହିଁ ଡାକ୍ତରବାବୁ ।"

—ଗାଡ଼ିଆ ଆରାମ ଚୌକିରେ ବୁଡ଼ିରହି ବେଦବ୍ୟାସ ଅଚେତ ହେଲାପରି ପଡ଼ିରହିଲା ବହୁତ ବେଳଯାଏ, ତା'ର ଅତି ପ୍ରିୟ ସିଗାରେଟ୍ ଲଗେଇବାକୁ ବି ଭୁଲିଗଲା । ପ୍ରତିବାଦ କରିପାରି ନାହିଁ, ଗ୍ରହଣ କରିପାରି ନାହିଁ, ସେହିପରି ସେ, ଭଦ୍ରଲୋକ ।

ଜନଗହଳି ଗର୍ଜୁଛି ହାଉ ହାଉ । ଦିବାକର ଦଳେଇର ଉଦ୍ୟତ ହାତ ଦୁଇଟାଠୁଁ ଆତ୍ମରକ୍ଷା କରି ସେହି ଜନତା ଗହଣରେ ଶାନ୍ତି ଖୋଜୁଛି ବେଦବ୍ୟାସ ।

ଜନ-ତା,—ସେ ଜଣକଠୁଁ କେତେ ଭିନ୍ନେ । ଜଣେ ହେଲେ ବ୍ୟକ୍ତିତ୍ୱ ବ୍ୟକ୍ତିତ୍ୱ ଚିହ୍ନାଚିହ୍ନି, ସେହି ଚିହ୍ନାଚିହ୍ନିରେ ତ ବିପଦ, ଭିତିରି ମନର ଧରା ପଡ଼ିବାକୁ ଭୟ । ତେଣୁ ଛଦ୍ମବେଶ ଖୋଜିବା ଜଞ୍ଜାଳ, ଲଙ୍ଗଳା ଯାକି ଖେଙ୍ଗ ହେବାକୁ ଥାନ ଟିକିଏ ପାଇଁ କେତେ ପରିଶ୍ରମ, ଜଣେ ହେଲେ ସ୍ୱାର୍ଥ ସ୍ୱାର୍ଥ କଟାକଟି, ଭଦ୍ର ସଂସ୍କାରର ଝରିଖାନି ଭିତରେ ରହି ପରସ୍ପର ମୁଣ୍ଡକୁ ଲକ୍ଷକରି ଢେଲା ଫୋପଡ଼ା ଫୋପଡ଼ି, ତଳେ ପଡ଼ିଯାଇ ଗୋଳି କଟାକଟି । ଜଣେ ହେଲେ ଖାଲି ଦାନ ଉଜାଡ଼ି ଦେଇ

ପ୍ରତିଦାନ ଆଉ ସୁଧ ପାଇଁ ପିଙ୍ଗଳା ବେଶ୍ୟାର ପ୍ରତୀକ୍ଷା—ନା, ଏ ଘଡ଼ିର ଗୋଟିକିଆ ମଣିଷ ତା'ର ଶତ୍ରୁ ।

ଜନତା ଭିନେ ନିଶ୍ଚୟ । ସେ ପ୍ରଶ୍ନ ପଚାରିବ ନାହିଁ, ଗୋଡ଼ରେ ଗୁରେଇ ହେବ ନାହିଁ, କେବଳ ହେବ ଆପଣାର ମୁଁ ପଣର ପୃଷ୍ଠପଟ, ତାର ହାଉହାଉ ସଉସଉ ହେବ ସେହି ମୁଁ ପଣର ପୂଜା ଲାଗି ଉଦ୍‌ବୋଧନୀ ମନ୍ତ୍ରସଙ୍ଗୀତ, ଯେ ମୁଁ ଏହି କ୍ଷୁଦ୍ର ଖୋଳରେ ବନ୍ଧା ଅଥବା କିଛି ଅମୁହାଁ ଦେଉଳର ଅପୂଜା ଦେବତା ନୁହେଁ, ମୁଁ ଚାରିଆଡ଼େ, ଜନତାର ସୁଅରେ ମୁଁ'ର ଅସରନ୍ତି ଅଥଳା ହ୍ରଦ, ତା'ର ଅଛିଣ୍ଡା ସୁଅ, ଜନତାର ଗତିରେ ମୁଁ ପଣର ବିଜୟ ପଟୁଆର, ଜନତା ଏହି ମୁଁ'ର ପ୍ରତିଛବି, ସେ ଅଜେୟ, ଅକ୍ଷୟ, ଅଶେଷ । କେତେଥର ଏହି ଜନତାକୁ, ଚାହିଁ ରହି ସେ ତା'ର ଧୋଳି ହେଲା ମନରେ ଉତ୍ସାହ ପୁରେଇଛି, ତା'ର ଘାଉଡ଼ା ମୁଁପଣକୁ ଭିତରେ ଚାଟି ଭଲ କରିଛି । ଦୁର୍ବଳ ଟଳଟଳ ହୋଇ ଯାଇଥିଲା, ଫେରିଛି ନିଶାରେ ମାତି । କେବଳ ସହରର ରାସ୍ତାରେ ବୁଲି ବୁଲି । ଜନାକୀର୍ଣ୍ଣ ଥିଏଟର ବାଇସ୍କୋପ୍ ହଲ୍ ଘରେ ବସିରହି, ଯାତ୍ରା ଦେଖି । ସେଠିକି ଲୋକେ ଯାଆନ୍ତି ତ ସେଇଥି ପାଇଁ, ନ ହେଲେ ଜୀବନ ବହୁବାର ନାନା ଜାତି ଅଭିଜ୍ଞତା ସତ୍ତ୍ୱେ କେଉଁ ପ୍ରକୃତରେ ଥାଏ ଗୋଟାଏ ଛବି କି ଦୃଶ୍ୟ ଦେଖିବାର କୁତୂହଳ ? ଯେଉଁ ସହରିଆ ଲୋକ ଏତେ ଦେଖି ଦେଖି ନୂଆ ନୂଆ ଦେଖା ପାଇଁ ଉତ୍ସାହ ହରେଇଥାଏ ଦେଖିବା ବାହାନା କରି ସେ ଯାଏ ଜନତାରେ ଆପଣାକୁ ମିଶାଇ ଗଣସାନ୍ନିଧ୍ୟରୁ ବଳ ଘେନି ଫେରିବାକୁ ।

ଏହି ତାର ସମାଜର ଲୋକେ,—ବେଦବ୍ୟାସ ଜଣକୁ ଅଭିମାନ କରି ଗଣକୁ ଆଦରି ମନେ ମନେ ଭାବିଗଲା, ଏମାନେ ବାଆ ବତାସି ସହିଛନ୍ତି କେତେ ଦେଶରେ କେତେ ପରିସ୍ଥିତିରେ ସହିଛନ୍ତି କେତେ ଠେଙ୍ଗା ପାହାର, କେତେ ଜୋତାମାଡ଼, କେତେ ଗାଳି ଆଉ ଗୁଳି । ତଥାପି ବଞ୍ଚିଛନ୍ତି । ଭାଙ୍ଗିଗଲେ ଘର ତୋଳିଛନ୍ତି । ଚିରକାଳ ମୁକ୍ତି ପାଇଁ ଆଗୁସାର ହୋଇ ଆସିଛନ୍ତି ଦଳ ଦଳ ହୋଇ, ସେହି ଯୁଦ୍ଧରେ ହଟିଛନ୍ତି ଆଗେଇଛନ୍ତି, ପ୍ରତି ମୁହୂର୍ତ୍ତର ସେହି ଆଲୁଅ ଆଉ ଅନ୍ଧାର ଭିତରେ ସଂଗ୍ରାମ, ସେହି ଦେବତା ଆଉ ଅସୁର ଭିତରେ ଯୁଦ୍ଧ, ଜୀବନ ଆଉ ମରଣ ଭିତରେ ବଳ କଷାକଷି । ଏକଥା କିଏ ବୁଝେ ବେଶୀ ତାଙ୍କର ଛଡ଼ା ? ଚାଲିଛି ଏହି ଯୁଦ୍ଧ ସୃଷ୍ଟିର ଆଦିମ କାଳରୁ, ମାୟା ଯୁଦ୍ଧରେ ଅସୁର କେବଳ ଯୁଗକୁ ଯୁଗ ରୂପ ବଦଳେଇଛି ।

ଦୁଃଖରେ ସେ ସାମ୍ୟକୁ ଗଢ଼ି ଆସିଛି । ନୂଆ ଭାବନାରେ କପାଳରେ ବିନ୍ଦୁ ବିନ୍ଦୁ ହୋଇ ଝାଳ ଜମା ହେଲା; ତା ପରେ ସେ କେସ୍ର କେସ୍ର ହୋଇ ନିଗିଡ଼ି ଲାଗିଲା । ବେଦବ୍ୟାସ କପାଳ ପୋଛିଲା । ଏହି ଖୁବ୍ ଭଲ, ଅଚିହ୍ନା ଲୋକେ ଚିହ୍ନନ୍ତି ନାହିଁ, ଚିହ୍ନା ଲୋକେ ପାଖକୁ ଆସୁନାହାଁନ୍ତି, ସେ ଅଲଗା ରହିବାକୁ ସୁବିଧା ପାଇଛି; ଶାନ୍ତି ପାଇଛି ।

କିନ୍ତୁ ଶାନ୍ତି ପାଉଛି ଖାଲି ମନକୁ ମନ, ପ୍ରକୃତରେ ନୁହେଁ । ଗହଳିରେ ଆପଣାକୁ ଯେତେ ଚେଷ୍ଟା କଲେ ବି ଭୁଲି ହେଉ ନାହିଁ ଦିବାକର ଦଳେଇଙ୍କୁ, ଭୁଲି ହେଉନାହିଁ ବଡ଼କୋଠାର ଝରକା, ଥରେ ଏ ପାଖକୁ ଥରେ ସେ ପାଖକୁ ଚାହିଁକିନା ଅନେଇ ଦେଲା ବେଳକୁ ଆପଣାଭୁଲା ହୋଇ ପଳାଇବାର ରୀତି ଭାଙ୍ଗି ପଡ଼ୁଛି । ସଙ୍ଗେ ସଙ୍ଗେ ନିଜେ ଝୁଣ୍ଟୁଛି ନିଜର ଢଳିକୁ, ଫେରି ଆସୁଛି ତାର ଯାତନା, ସ୍ୱପ୍ନ

ଫୁଟିଯାଇ ଦିଶୁଛି ସବେ ଯେତେ ହାଣ୍ଡି ଖପର, ଫୋପଡା ଘର, ଖଲିପତ୍ର ଅଳିଆକୁଢ଼ । ବିଶ୍ୱାସର ଭ୍ରାନ୍ତିର ପରଦା ଚେଷ୍ଟ ମୁହଁ ଉପରୁ ଝଡ଼ିପଡ଼ି ଦିଶୁଛି ଅବିଶ୍ୱାସୀ ସନ୍ଦେହୀ ତର୍କବାଦୀ ମସ୍ତିଷ୍କର ଅଧୀର ଅଶାନ୍ତ ଅସୁଖୀ ଅସୁନ୍ଦର ଘୋଡ଼ାମୁହଁ, ସେ ଉପର ଓଠ ମୋଡ଼ି ମୋଡ଼ିକା କରି ଦାନ୍ତ ଦେଖାଇ ବୁଦ୍ଧିର ପାସଙ୍ଗରେ ସବୁକଥା ପକାଇ ଅପେକ୍ଷା କରେ କେବଳ ଓଲଟ ପାଲଟ ଦେଖିବାକୁ । ତାର ଗୋଟିଏ ବୋଲି ଭିକ୍ଷା—ହାଉ କରି କାମୁଡ଼ି ପୁଳିଏ ମାଉଁସ ଉଠେଇବାକୁ ।

ସେହି ଘୋଡ଼ାର ଦୃଷ୍ଟିରେ ବେଦବ୍ୟାସ ଗୁହି ଦେଖୁଛି ତାର ପ୍ରିୟ ଜନତାକୁ, ଆଉ ଟିକିଏ ଆଗରୁ ଯାହାକୁ କରିଥିଲା ବରଷା ଦାଉରୁ ଛତା, ଘୋଡା ମୁହଁରେ ଘାଉଡ଼ା ଯନ୍ତ୍ରଣାରୁ ବୁଦ୍ଧିର ବିଶ୍ଳେଷଣ ଚେଷ୍ଟା କରି ସେ ବିଗିଡୁଛି ସେହି ଛତାକୁ ଫଡ଼ା ଫଡ଼ା କରି ଚିରି କଳା ପତାକା କରି ତାହା ଆଗରେ ଦିଆଁମାରନ୍ତା, ମେଣ୍ଟନ୍ତା କାଳେ କଷ୍ଟ ଟିକିଏ ।

ଘୋଡ଼ାମୁହଁ ଦେଖୁଛି, ହେଇ ସତରଞ୍ଜି ଉପରେ ଚେକା ପକାଇ ବସିଛନ୍ତି ଦଳେ ବଡ଼ ବ୍ୟବସାୟୀ । ସାଧା ଲୁଗା ଉପରେ ସାଧାରଣ କାମିଜ, କେବଳ ମୁଣ୍ଡ ଚକ୍ ଚକ୍ ମୁହଁ ଚକ୍ ଚକ୍ । ଏମାନେ ବି ଜନତା, ତାର ଘୋଡ଼ାମୁହଁ ଭାବୁଛି, ଖାଲି ଜନତା ନୁହଁନ୍ତି, ଗୁପ୍ତରେ ତାର ଚାଳକ, ତାର ଶାସକ ଏବଂ ଶୋଷକ ଏବଂ ଉତ୍ପାଦକ ସବୁ ଏକାଠି ମିଶା ମିଶି । ହୁଏତ ଏହି ଯେଉଁ ଗପ ଲାଗିଛି ଏମାନଙ୍କର ଏହାରି ଭିତରୁ ଏପରି ଅସ୍ତ୍ର ବାହାରିବ ଯହିଁରେ ଆର୍ଥନୈତିକ ପରିସ୍ଥିତିର ରୂପ ବଦଳିବ ଅଥବା ଶାସନରେ ଦେଖାଦେବ ନୂଆ ବ୍ୟବସ୍ଥା । ଘୋଡ଼ା ମୁହଁ ଭାବୁଛି, ଭାତଥାଳି ପାଖେ ବସି ସାଧାରଣ ଲୋକ ଯେତେ ବେଳେ ଶୋଚ କରେ ଭାତଥାଳିରୁ ମୋର ବାରଣା ଭାଗ ଖାଇଗଲା କିଏ, କିଏ ଏତେ ଭାତ ବଢ଼େଇଲା, ଯେତେବେଳେ ଚିରା ଗାମୁଛା ପିନ୍ଧି ଘୁରିଆଡକୁ ଅନାଇଁ ଲୁହ ଗଡ଼ାଏ ବାହୁନି ବାହୁନି, ମୋର ପିନ୍ଧା କରିଆରୁ ବାରପଣ କାଟି ନେଇ ପଳାଇଲା କିଏ, ଯେତେବେଳେ ଅଭାବ ଦୁର୍ଦ୍ଦଶାରେ ହାଡ଼ ଚମ ହୋଇ ଅପନ୍ତରାରେ ଗଛତଳେ ପଡ଼ି କଙ୍କାଳ ଲୁହ ବଦଳରେ ରକ୍ତ କାନ୍ଦି କାନ୍ଦି କହେ ମୋର ଆୟୁଷର ଷୋଳକଳାରୁ ପନ୍ଦର କଳା ଅପହରଣ କରି କିଏ ଦେଲା ମତେ ଅଭେକା ମରଣ, ସେତେବେଳେ କେତେକରୁ କେତେ ଚିହ୍ନିପାରେ ସେ ଏହି ଛପିଲା ଜନତାକୁ ? ଏବି ଜନତା—ଜନତାହିଁ ତ ।

ରାଗ କୁହୁଳୁଛି, ମନରେ ନାହିଁ ତାର ବାପ ବୁଢ଼ା ବଳବନ୍ତରାଙ୍କ ଧୈର୍ଯ୍ୟ ଆଉ ସ୍ଥୈର୍ଯ୍ୟ, ପଢ଼ା ଇତିହାସ ମନେ ପକାଇ ମନେ ମନେ ସେ ହୋଇ ଯାଉଛି ମରହଟ୍ଟା ବର୍ଗୀ,—ମନେ ମନେ ଏହିମାନଙ୍କୁ ଟାଙ୍ଗି ଦେଉଛି ଗୋଡ଼ ଉପରକୁ ମୁଣ୍ଡ ତଳକୁ କରି; ପାଟିବାଟେ ତତଲା ପାଉଁଶ ଠେଲି ଛାତି ଉପରେ ବିଧା ମାରୁଛି, ମନେ ମନେ ହୋଇ ଯାଉଛି ଠଗ ଚେକା ପକେଇ ବସି ପାଖ ବନ୍ଧୁର "ପାନଲାଓ" ସଂକେତ ପୁଣି ଛାଟି ମାରୁଛି ତଣ୍ଟି ଉପରେ ଫାସ, ଖଣ୍ଡାପରି ଠିଆ ହୋଇଥିବା ପଇସା ସହିତ ସିଲକ ରୁମାଲ୍, ଟାଣି ଦେଉଛି, ତାପରେ ମୁଣ୍ଡଟା କାଟି ନେଇ ମା କାଳୀଙ୍କ ନାଁରେ ଉତ୍ସର୍ଗ ।

ଘୋଡ଼ାମୁହଁ ଉକୁଟି ଯାଉଛି, ନାକ କୁଞ୍ଚେଇ ଓଠ ନେଫେଡ଼ି ପୁଣି ଭାବୁଛି,— ବୃଥା ବୃଥା,— ବୁଦ୍ଧଦେବ ଦୀକ୍ଷିତ କରି ବଣିକକୁ କରିଥିଲେ ଦାନବୀର ଅନାଥପିଣ୍ଡକ, ରବସ୍‌ପିଏର୍ ଗିଲଟିନ୍ ଦେଇଥିଲେ, ଚେଙ୍ଗିଜ୍ ଖାଁ ଲୁଟିଥିଲେ ପୋଡ଼ିଥିଲେ, ମହାତ୍ମା

ଗାନ୍ଧୀ ଉପରେ ଶୋଧନ ପାଣି ଛିଞ୍ଚି ଛିଞ୍ଚି ଝାଡ଼ିଥିଲେ ସତ୍ୟ ଅହିଂସା ମହାତ୍ୟାଗ ମହାସେବାର ଗାରିଡ଼ି ମନ୍ତ୍ରରେ ।

ତଥାପି ତ କାହିଁ ତାଙ୍କୁ ଭୂତ ଛାଡ଼ି ନାହିଁ, ଆଉ ସେ ଗଢ଼ିପାରିଛି ଆଟମ୍‌ବମ୍, ହାଇଡ୍ରୋଜେନ୍ ବମ୍ । ଗଢ଼ି ପାରୁଛି ନୂଆ ନୂଆ ଅଦ୍ଭୁତ ମାରଣାସ୍ତ୍ର ।

ଅତି ଉଗ୍ର ବେଗରେ ଚିନ୍ତା ଧାଇଁଯାଇ ଅସମ୍ଭାଳ ହୋଇ ହାବେଳି ଟୁଣ୍ଡା ପରି ଝଡ଼ିପଡ଼ି ହଜିଗଲା । ତାର ମୁଣ୍ଡ ଘୂରିଗଲା । ପୁଣି ଅନେଇ ରହିଲା ବଡ଼ କୋଠାର ଝରକା ଆଡ଼କୁ । ଟୁନି ଅସୁସାହିଁ, ଆସିବ ନାହିଁ, ସେ ଜାଣେ ।

ତଥାପି ।

ପୁଣି ମନଟା ଫେରିଲା ।

ସତରଞ୍ଜି ଉପରେ ଗପ ପଡ଼ିଛି ଦେଖି ଦେଖି ବିକଟ ମନରେ ଭାବି ଲାଗିଲା, ସେମାନେ କି ଉଦ୍ଦେଶ୍ୟରେ ଏକାଠି ଏଠି ଭେଟା ଭେଟି ହୋଇଛନ୍ତି ଜାଣନ୍ତି ନାହିଁ । ଜାଣିବାକୁ ପ୍ରବୃତ୍ତି ନାହିଁ । ହସ ପରିହାସ ତଳେ ତଳେ ଖାଲି ଈର୍ଷାର ଫଳକ ।

ହରେକ୍ରମ ବାବୁ ଗଙ୍ଗାଧର ବାବୁଙ୍କୁ ଖାଲି ଚାହିଁଛନ୍ତି । ଗଙ୍ଗାଧର ବାବୁ ଗଳ୍ପରେ ବ୍ୟସ୍ତ । ହରେକ୍ରମ୍ ବାବୁ ବହୁ ଦିନୁ ଗେଙ୍ଗୁଟି ବ୍ୟବସାୟରେ ବଡ଼ଲୋକ । ଗଙ୍ଗାଧର ବାବୁ ସାତ ବର୍ଷ ଭିତରେ କିଛି ନାହିଁରୁ ସୂତା ବ୍ୟବସାୟ କରି ଲୁଗା କାରଖାନା ଖୋଲି ଆକାଶକୁ ଉଠିଲେଣି । ବେଦବ୍ୟାସ ଅନୁମାନ କଲା,—ହରେକ୍ରମ ବାବୁ ତୁନିହୋଇ ଅନାଇଁଛନ୍ତି କାହିଁକି ? ନିଶ୍ଚୟ ସେ ଈର୍ଷାରେ ଭାବୁଥିବେ,—ଏ ଲୋକଟା ଉଠିଲା କାହିଁକି ? ନ ପଡ଼ୁଛି କାହିଁକି ? କେବେଦିନ ଏମିତି ଉଠୁଥିବ ? ବିଶାଳ ଗଙ୍ଗାଧର ବାବୁଙ୍କ ଗୋଲ ମୁହଁରେ ଗାଲେ ହସ, ଟୋପି ସମେତ ଲମ୍ବା ମୁହଁ ହରେକ୍ରମ୍ ବାବୁ ଚଷମା ଉହାଳରୁ ଆଖି ମିଟି ମିଟି କରି ଖାଲି ଚାହିଁଛନ୍ତି ।

ଆଉ ରହି ପାରିଲା ନାହିଁ, ଦେଖିଲା ଆସୁଛି ଦିବାକର ଦଳେଇ, ସେ ବି ବୁଲୁଛି ପଙ୍ଗତରୁ ପଙ୍ଗତ, ଏଠି ବି ସେ କୁଶଘାସ ବନ୍ଧା ହାତଟେକି ନମସ୍କାର କରିବ, ଅଳତା ବୋଳା ପାଦ ଦଶଥର ଚଟିରୁ ଖୋଲି ଦଶଥର ପୁରେଇ ଦେଖାଇ ହବ । ସେ ବି ଦିନର ଅତିଥିଙ୍କ ଆଗରେ ଆପଣା ସାଫଲ୍ୟ ସୌଭାଗ୍ୟ ପ୍ରଚାର କରିବାକୁ ଚାହେଁ ।

ଉଡ଼ି ଉଡ଼ି ଆଉ ଏକ ଦଳ ପାଖକୁ ଗଲା । ଏମାନେ ପଦସ୍ଥ କର୍ମଚାରୀ, ବସିବା ଭଙ୍ଗୀରେ ସମ୍ମାନ ଖୋଜନ୍ତି । ଏ ବି ଜନତା, ଗଳ୍ପ ପଡ଼ିଛି—

"ଆଞ୍ଜିନେୟାୟାଙ୍ଗାର୍ ଜାଗାକୁ କିଏ ଯିବାର ହେଲା ?"

"ଦରମା ବିଷୟରେ କ'ଣ ନିଷ୍ପତ୍ତି ହେଲା ?"

"ଓଃ, ବଡ଼ ଡେରି ହେଲାଣି, ମୋତେ ଫେରି ଯିବାକୁ ହେବ ତେଣେ, ମତେ ନିଜେ ଫୋନ୍‌ରେ ଡାକି କହିଥିଲେ । କାଲି ସେ ମିଟିଂ ଟା ଅଛିନା,—"

ଏକା ପ୍ରକାର, ଏଠି ବି ଶାନ୍ତି ନାହିଁ ।

କେତେକେ ଟୋକାଙ୍କ ଦଳ, ଏମାନେ କାର୍ ତର୍କ ବୁଲନ୍ତି, ନିଜେ ବଡ଼ ନାଁ ପଟା ମାରି ଫାର୍ମ ଖୋଲିଛନ୍ତି । ସେଠି ଗପ ଓ ଗ୍ୱ ଚ୍ଚଲେ ଭଲ, ବ୍ୟବସାୟ ଯାହା ହେଉ । ଚେହେରାରେ ଛନ ଛନିଆ ଝଟ୍‌ପଟିଆ ଦିଶୁଛନ୍ତି, ଏମାନେ ଆଶାୟୀ ଭବିଷ୍ୟତ୍ ଚଷିକ୍ କିନ୍ତୁ ବର୍ତ୍ତମାନ ଠିଆ ଠିଆ ସର୍ବତ ପିଉ ପିଉ ଅଧୁନିକ ସ୍ତ୍ରୀ-ପରିଧେୟ ବିଷୟରେହିଁ ଆଲୋଚନା ଚାଲିଛି ଘମାଘୋଟ । ଏହି ଦଳରୁ ନନ୍ଦନ ପାଟି କଲା— "ହୋ ବେଦବ୍ୟାସ ବାବୁ । ହୋ ବେଦବ୍ୟାସ ବାବୁ—"

ନ ଶୁଣିଲା ପରି ବେଦବ୍ୟାସ ଉଠି ଚାଲିଗଲା । ଯେତେ ଯେପରି ଅନ୍ଧାର ରାତିରେ ଗୋଟି ଗୋଟିକିଆ ଜୁଳୁଜୁଳିଆ ପୋକ, ନିଜେ ଜନାଏଁ ନାହିଁ, ଲୋକେ ତାକୁ ଜନାନ୍ତି । ବାଟେ ବାଟେ ସେହି ଖଣ୍ଡ ଖଣ୍ଡ ଜନତା, ଦଳ ଅନୁସାରେ ତାର କଥୋପକଥନର ବିଷୟବସ୍ତୁ । କେଉଁଠି ଶସ୍ତା ରାଜନୀତି, କେଉଁଠି ଅନୁପସ୍ଥିତ ପର ବିଷୟରେ ଚର୍ଚ୍ଚା । କେଉଁଠି କାହା ଘରର କୁତ୍ସା ।

କିଏ କଥା କହୁଛି । କିଏ ପ୍ରତିବାଦ କରୁଛି, କିଏ ତୁଣ୍ଡ ଲୋଉଛି, ଆଉ କିଏ— ସେ ଖାଲି ଦୁଇ ପାଖ କଥାକୁ "ହେଁ ହେଁ ହେଁ ହେଁ—"

ଉପାଂଶରେ ଦେଖିଲେ ଏହି ତ ଜନତା,—ଭଗ୍ନ ମନୋରଥ ଭଗ୍ନରଥ ଭୀରୁ ପଙ୍ଗପାଳଦଳ, ବେଦବ୍ୟାସ ଭାବିଲା । ପୁଣି ସେହି ଝରକା ଆଡ଼କୁ ଚାହିଁ ଦୀର୍ଘଶ୍ୱାସ ଛାଡ଼ିଲା, ଚାରିଆଡ଼କୁ ନିଆଁବାଣ ପରି ଚାହାଣି ବିଞ୍ଚିଦେଇ ଡାକ୍ତର ବେଦବ୍ୟାସ ଦାନ୍ତରେ ଦାନ୍ତ ରଗଡ଼ି ଭାବିଲା,—କୁତ୍ସିତ ମଣିଷ । ବିଭତ୍ସ ମଣିଷ । ସେ ମଣିଷକୁ ଘୃଣା କରେ—

ଚାରିଆଡ଼ ପ୍ରଦକ୍ଷିଣ କରି ବେଦବ୍ୟାସ ତାର ମଟର ପାଖକୁ ଫେରି ଆସିଲାଣି । ଖାଲି ବାନ୍ଧି ଛନ୍ଦି ହେଉଛି, ଧନ୍ଦି ହୋଇ ହୋଇ ଗୁରେଇ ହେଉଛି । ଅଥଚ ସରଳ କଥାଟା ଯାହା ତାହା ସେ କରୁନାହିଁ । ସେ ଏ ଜାଗା ଛାଡ଼ି ମଟର ନେଇ ଚାଲିଯାଉ ନାହିଁ । ଭୋଜି ଘରେ ଯେତିକି ଟେବୁଲ ଧାଡ଼ି ଧାଡ଼ି ହୋଇ ଆସନ ଓ ପତ୍ର ପଡ଼ି ରହିଛି, ପାଣି ଗିଲାସ ଥୁଆ ହୋଇଛି, ରାତି ହେଲାଣି ଦଶଟା, କେତେବେଳେ ଛକ ଆରମ୍ଭ ହେବ ସେ ଜାଣେ ନାହିଁ । ଭୋଜି ଖାଇବା ପାଇଁ ସେ ଆସି ନାହିଁ । ଓଲଟି ବରଂ ତାକୁ ଆଦୌ ଭୋକ କରୁନାହିଁ । ନିଜେ୍ଜ ଦେହ ଖୋଜୁଛି ବିଛଣା । ଆପଣାକୁ ଏହି କଥା କହି ଭୁଲାଇ ସେ ଏଠିକି ଆସିଥିଲା ଯେ ସେ ଯେତେବେଳେ ବିଭା ହେଲାବେଳକୁ ବି ଆସି ପାରିନାହିଁ ନଈବୁଢ଼େ ଯାଇ ବିଶାଳ ମହାଶୟ ଓ ମାଉସୀଙ୍କୁ ନ କହି ଆସିଲେ କାଳେ ସେମାନେ ମନରେ ଦୁଃଖ କରିବେ । କିନ୍ତୁ ଏ ପର୍ଯ୍ୟନ୍ତ ସେ ଏ ଦୁହିଁଙ୍କ ଭିତରୁ କାହାରି ପାଖ ପଶିନାହିଁ, ଏବେ ମନେ ପଡ଼ୁଛି । ବୋଧହୁଏ ତାର କର୍ତ୍ତବ୍ୟ ପାଳିବା ସେ କରି ସାରିଛି, ଆସିଲାତ, ପାଛୋଟି ନେବା ତାଙ୍କର କାମ, ଏଣିକି ଗଲେ ହୁଏ ।

କିନ୍ତୁ ମାଡ଼ିଛ ହଉଛି ତଥାପି, ଯେତିକି ସେ ଆହୁରି କିଛି ଦେଖିବାକୁ ଚାହେଁ ।

ନିଘା ପଡ଼ିଲା । ଘର ଆଡ଼କୁ ଚାଲିଛନ୍ତି ଦଳେ ଯୁବତୀ । ସେମାନେ ଦୂରରେ ଅଛନ୍ତି କିନ୍ତୁ ବିଜୁଳି ଆଲୁଅରେ ସେମାନଙ୍କର ନେଳି, ଗୋଲାପୀ, ହଳଦିଆ ଶାଢ଼ୀ ଓ ପୋଷାକ ହଠାତ୍ ଝଟକି ଉଠିଲା । ସଙ୍ଗେ ସଙ୍ଗେ ବେଦବ୍ୟାସ ଅନୁଭବ କଲା ସେ ପୁରୁଷ, ତାର ଫମ୍ପା ଆଦର୍ଶର ନିଷ୍ଫଳ ସାଧନାରୁ କରୁଣ ଧ୍ୟାନକୁ ଲୋଉଟାଇ ଆଣି ସେ

ଯେପରିକି ହଠାତ୍ ହୋଇ ପଡ଼ିଲା ଖେକିଲା ଅସୁର । ସେ ସିଧା ସଳଖ ହୋଇ ଟାଙ୍କି ହୋଇ ଠିଆ ହେଲା, ଏକ ଦୃଷ୍ଟିରେ ଅନାଇଁ ରହିଲା । ହଠାତ୍ ସେହି ଦଳରୁ ବୁଲିପଡ଼ି ଅଟକି ରହିଲା ଜଣେ । ସେ ହଳଦିବସନ୍ତ ହଳଦିଆ ଶିଲକ ଶାଢ଼ୀ ପିନ୍ଧିଛି । ହଳଦିଆ ସିଲ୍କର ବ୍ଲାଉଜ୍, କାହାକୁ ଖୋଜିଲା ପରି ଅଟକି ରହିଲା ଦୁଇମିନିଟ୍ । ବେଦବ୍ୟାସ ତାଟକା ହୋଇ ତାର ମୁହଁକୁ ଚାହିଁ ରହିଲା । କଣ କହିବ ବୋଲି ପାଟି ଖୋଲିଲା ଅଟକି ଗଲା । ହେଇ ସେ ଚାଲିଯାଉଛି, ଭିଡ଼ରେ ମିଶିଲାଣି ।

ମଟରରେ ଦୁଇହାତ ଥାପି ମୁହଁମାଡ଼ି ଆଖିବୁଜି ବେଦବ୍ୟାସ ଢଳି ପଡ଼ି ରହିଲା । ମୁଣ୍ଡ ଭିତରେ ତରତର ହୋଇ ଚାଲିଛି ସିନେମାର ରିଲ୍. ଏହି ବେଳରେ ଲାଗୁଛି ଯେପରି, ସେ ଜାଣେ କାହିଁକି ଟନି ଚାଲିଗଲା । କାହିଁକି ସେ ତଥାପି ଅସୁଖୀ ତଥାପି ଓଥର । କରୁଣ ହୋଇ ଭାବି ଲାଗିଲା ସେ ପରକୁ କନ୍ଦେଇଛି । ସେ ନ କାନ୍ଦିବ ତ ଆଉ କିଏ ?

ମଫସଲରେ ବଢ଼ି ନାହିଁ , ବଢ଼ିଛି ସହରରେ । ସହରରେ ବି ସେ ଶ୍ରମିକ ନୁହେଁ । କାରିଗର ନୁହେଁ । ବ୍ୟବସାୟୀ ନୁହେଁ, ମୂଳୋହୁଁ ସୌଖିନ ଛାତ୍ର । ଝିଅ ମାନଙ୍କୁ ସେ ଦେଖିବାକୁ ସୁବିଧା ପାଇନାହିଁ ପାଣି କାଦୁଅରେ ବିଲ ବାଛିଲାବେଳେ, ରୁଆ ବେଉଷଣ ବେଳେ, ଢିଙ୍କିରେ ଚଢ଼ି ଧାନ କୁଟିଲା ବେଳେ, ମାଟି ଗୋବର ଗୋଳି ଘର ଲିପିଲା ବେଳେ, ଇଟା ବୋହିଲା ବେଳେ । କି ସାଧାରଣ ଯାହା କିଛି—ଘର ଧନ୍ଦା କଲାବେଳେ । ଦେହ ମାଠିବାକୁ ବେଳ ନାହିଁ ଚିରା ଫଟା କୋତରା ଅପନା ପିନ୍ଧି ଜୀବନ ବଞ୍ଚିବାର ଟାଣକୁ ଟେକିଧରି ଖାଲି ପରିଶ୍ରମ ଆଉ ତ୍ୟାଗର ପ୍ରତିମୂର୍ତ୍ତି ହୋଇ ଦିନ ଉଠାରୁ ଦିନ ବିତେଇ ଦେବା ଅବସ୍ଥାରେ ନାରୀ ଜାତିକୁ ଦେଖିବାକୁ ସେ ସୁଯୋଗ ପାଇ ନାହିଁ, ତେଣୁ ନାରୀ କହିଲେ ଦାୟିତ୍ୱ ଓ ପରିଶ୍ରମକୁ ତା ସହିତ ଏକାଠି ଭାବିବା ତାର ସ୍ୱଭାବରେ ନାହିଁ ।

ତାର ଅଭିଜ୍ଞତାର ପରିସର ଭିତରେ ଯେଉଠି ସେମାନଙ୍କୁ ସେ ଦେଖିଛି,—ପିଲାଦିନେ ସ୍କୁଲରେ, କି କଲେଜରେ, କି ରାସ୍ତାରେ କି ଜନଗହଳି ସ୍ଥାନରେ,—ସବୁଠି ସେମାନେ 'ଏକାପ୍ରକାର' ଯନ୍ତ୍ରରେ ଚେହେରା ଟାଟେଇ ପରିପାଟୀ ବେଶ ହୋଇ କେବଳ ଦୃଶ୍ୟ ।

ସେ ଦୃଶ୍ୟକୁ ଦେଖିଲେ ପରିଶ୍ରମ କି କର୍ତ୍ତବ୍ୟ କି ଆଉ କିଛି ଗୁରୁ ଗମ୍ଭୀର କଥା କେବେ ମନେ ପଡ଼ିନାହିଁ ତାର । କେବଳ ମନେ ପଡ଼ିଛି ହାଲୁକା ଖୁସିବାସି କଥା । ଖାଲି ମଉଜ । ନିଛାଟିଆ ବେଳେ ସେହି ଦୃଶ୍ୟ ଉପରେ ମନେ ମନେ ଭରା ଦେଇ ଆପଣା ଦେହକୁ ଉଷୁମେଇଁ ଏକ ପ୍ରକାର ସୁଖ ସେ ସହଜରେ ପାଏ ।

ତେଣୁ ସେହି ସାଧାରଣ ଉଦ୍ଦେଶ୍ୟ ଘେନି ସେମାନଙ୍କ ସହିତ ସେ ମିଶିଛି ବା ସେମାନଙ୍କୁ ଦେଖିଛି । ଏହିପରି ଦିନ ବଢ଼ି ବଢ଼ି ଯାଇଛି, କେବେହେଲେ ସେ ଭାବି ନାହିଁ ଏ ସମ୍ବନ୍ଧ ଯୋଗୁଁ କୌଣସି ପ୍ରକାର ତ୍ୟାଗ ସ୍ୱୀକାର କରିବା ବା ତ୍ୟାଗ ଘେନିବାକୁ ପଡ଼େ ବୋଲି । ଅତଏବ ବିନା ବାଧାରେ ବିନା ସଂକୋଚରେ ସେ ସେମାନଙ୍କ ସହିତ ମିଶିଛି କି ହୋ ହା ହୋଇଛି । ଜୀବନର ଅଥଳ ଗର୍ତ୍ତ ଉପରେ ପାଣିକୁ ଛାଡ଼ି ପାଞ୍ଚହାତ ଉପରକୁ ଟିକି ଟିକି ଚିତ୍ର ବିଚିତ୍ର ପ୍ରଜାପତି ପରି ସହରର ସଭ୍ୟ ଯୁବକ ଯୁବତୀଙ୍କ ଗହଣରେ ପକ୍ଷୀ ଫଡ ଫଡ଼ କରି ମିଛି ମିଛିକିଆ ଉଡ଼ିବେଇ

ଟ୍ରେବେଲ ଖେଳ ଖେଳିଛି, ତାପରେ ଛିନ୍ନଭିନ୍ନ ହୋଇ ଯାଇଛନ୍ତି ଯେ ଦୂଆଡ଼େ, ଏହିତ ସବୁତ । ଆଉ ଅଧିକ କଣ ଦରକାର ?

ଅତେବ ସେ ଆପଣା ରହିବା ବସ୍ତୁରି କାନ୍ଥରେ ଝୁଲେଇଥିଲା ସିନେମା ଅଭିନେତ୍ରୀ ମାନଙ୍କ ଛବି । ଯେଉଁମାନଙ୍କ ସଙ୍ଗେ ଅନ୍ଧାର ଘରେ ଧଳା ପର୍ଦ୍ଦା ଉପରେ ଛବି ଆଉ କେବେ ମୁହଁ ଲୁହା ଲୁହି ହେବ ନାହିଁ ତାଙ୍କରି । ତା ଧାରଣାରେ ନାରୀ ଜାତିର ପ୍ରତୀକ କେବଳ ସେହିମାନେ । ପରେ ସେ ଯେତେବେଳେ ମିଶିବାକୁ ସୁଯୋଗ ପାଇଲା ସେତେବେଳେ ଧରିଲା ଫଟୋ କ୍ୟାମେରା । ଫଟୋ ନେଇ ନେଇ ବୁଲିବା ହେଲା ତାର ପ୍ରଧାନ କାମ, ଆଲ୍‌ବମ୍‌ରେ ଫଟୋକୁ ସଜେଇ ରଖି ଅବସର ବେଳେ ନିକୁଟି ଲୁହିଁଲେ ଏକ ପ୍ରକାର ଦୈହିକ ଅନୁଭୂତି ମିଳେ ତା'କୁ । ସେହି ତାର ସୌଭାଗ୍ୟ ।

କିନ୍ତୁ ସେ କେବଳ ଲୁପି ଲୁଲିଥିଲା, ଉପରେ ଉପରେ ଗଡ଼ି ଗଡ଼ିକା, ଧରା ଦେଇନାହି ।

ଦୁନିଆଁ ପାକର ଗହଳି ମଝିରେ ହାତରେ ମୁହଁ ଲୁଚେଇ ଅଜାଡ଼ି ହୋଇପଡ଼ି ଆଖିବୁଜି ଲୁବିଗଲା ବେଳେ ସିନେମାର ରୀଲ୍‌ରେ ସେମାନେ ବି ମନେ ପଡ଼ନ୍ତି । ହେଲ ସହରର ଯେତେ ଅଳକା, କଳିକା, ମଞ୍ଜରି, ସ୍ୱପ୍ନା, ଚଞ୍ଚଳା, ମାଳା, ବାଳା ଆଦି, ସୁଖର ପର୍ଶଥିଲା ସେମାନଙ୍କ ସଙ୍ଗରେ, ଖାଲି ହସାହସି ଖେଳ; କେହି କାହାର ଧାରେ ନାହିଁ । ମନେ ପଡ଼ନ୍ତି ସେହିମାନେ, ରଙ୍ଗ ରଙ୍ଗର ଜାତି ଜାତିର ସାଜ ଆଉ ଭେକ ସହିତ ରଙ୍ଗ ରଙ୍ଗର ନାଁ ଯାହାଙ୍କର, ଛନଛନିଆଁ ଫୁଲକଣ୍ଡିର ତୁହାଇ ତୁହାଇ ଚୂଆର,—ଗାଡ଼ିରୁ ଓହ୍ଲାନ୍ତି, ଦୃଶ୍ୟ ସୃଷ୍ଟି କରନ୍ତି । ତି ଦଣ୍ଡର ମାୟାର ଜାଲ ପବନରେ ଉଡ଼ନ୍ତି, ଗାଡ଼ିରେ ବସି ପୁଣି ଲୁଲିଯାନ୍ତି । ସେହିମାନଙ୍କ ଗହଣରେ କଟିଛି କେତେ ତାରି ବେଳ, ମିଶିବା ପାଇଁ ପଡିଆର ତିଆରି ସେ ସଙ୍ଗୀତ ପ୍ରତିଯୋଗିତା କିଆଇଛି, ହସି ହସି କଳାପଟାରେ ଲେଖିଛି—"ବିଷୟ—ବୟସ ନିର୍ବିଶେଷରେ ବାଳିକା ଭଜନ", ଚୌକି ବୋହିଛି, ପାଣି ଆଣି ଦେଇଛି, ସର୍ଦ୍ଦାରି କରିଛି, ଗାଡ଼ି ଡାକି ଦେଇଛି । ସହିଛି ଯେତେ ଅଙ୍ଗାର ବାଣ, ସେମାନଙ୍କଠୁଁ ଓ ବାହାରୁ, ସେହିମାନଙ୍କ ସାନ୍ନିଧ୍ୟ ତାକୁ ଜୀବନକୁ ଶୁଙ୍ଘିବାକୁ ପ୍ରେରଣା ଦେଇଛି । ମାଳ ମାଳ ଯେତେ ନାରୀ ଦେହର ପର୍ବତ, ଉପତ୍ୟକା, ସମୁଦ୍ର ଆଉ ଚନ୍ଦ୍ର, ସଭ୍ୟ ଜଗତର ସାମାଜିକ ପ୍ରଦର୍ଶନୀରେ ଶିଳ୍ପକଳାର ଆସ୍ତରଣ ତଳେ ଯେ ସଜା ହୋଇ ରହେ କେବଳ ଦେଖିବାକୁ, ପ୍ରଶଂସା କରିବାକୁ,—ଆସ୍ୱାଦ୍ କରିବାକୁ ନୁହେଁ, ଶ୍ରମ ଝାଳରେ, ସେଚରେ, ଶୋକରେ, ଦୁଃଖରେ ତାର ଦାୟିତ୍ୱ ନେବାକୁ କେଭେ ନୁହେଁ । ଗୋଟାଏ ନାରୀର ଆକର୍ଷଣରେ ଛଟପଟ ତାର ବୁଭୁକ୍ଷୁ ମନକୁ ଉପହାସ କରିଯାଇଛି ସତେକି ତାଙ୍କରି ଚହଲା ଛବି,—"ଡାକ୍ତର ବେଦବ୍ୟାସ, ସଦାବେଳେ ହାସ୍ୟମୁଖର, ସଦା ପ୍ରସ୍ତୁତ ବ୍ୟାଟାରି, କାହିଁକି ତୁମେ କୁଆଡ଼େ ପଡ଼ିଛ ?"

ଜଣ ଆଉ ଗଣର ସମସ୍ୟା, ସେ 'ଗଣ'କୁ ଆଦରି ହସୁଥିଲା, 'ଜଣକୁ' ଆଦରି କାନ୍ଦୁଛି । ..... ..... —— —— ..... ——

ହସି ହସି ପଚୁଆର କରୁଛନ୍ତି ସେହିମାନେ,—ଅତୀତର ଛାଇ ଯେତେ,— ଅଳକା, କଳିକା, ବଳାକା ମାଳମାଳ । ସେମାନେ ଖୋଜିଥିଲେ ଟିକିଏ ସାନ୍ନିଧ୍ୟ ।

ଦେଇଥିଲା ବି ତ, ଆପଣା ଦୁଃଖ ସମସ୍ୟା କୁଣ୍ଠିତ-ପଣ ଓ ବିଭ୍ରାନ୍ତତାକୁ ଆପଣା ପାଇଁ ରଖି ପର ପାଇଁ ଦଳ ପାଇଁ ସେମାନେ ଦେଇଥିଲେ ଫୁଲର ବର୍ଣ୍ଣ ଓ ସୁବାସ ଦୃଷ୍ଟି ଥିଲେ ତାହାହିଁ । ସମୟ କଟିଥିଲା ଖୁବ୍ ଫୁର୍ତ୍ତିରେ । ହୋଲି ସଂଗୀତ ପ୍ରତିଯୋଗିତା କି ସଖୀ ଗର୍ବ କରିବା ନୁହେଁ, ଏକାଠି ସେହି ଦଳ ଧରି ସେ ଧାଡ଼ିବାନ୍ଧି କରି ଯାଉଛନ୍ତି, ଦୃଶ୍ୟ ଦେଖା ଭ୍ରମଣରେ ବାହାରିଛି, କଥୋପକଥନରେ ସେହି ଉପର ଠାଉରିଆ ହସ ପରିହାସ, ହାଲୁକା ଅବିଶ୍ୱାସ ଚମୁଟା ଆଞ୍ଚୁଡ଼ାକୁ କରିଥିଲା ନିଜର ସାଧାରଣ ଭାଷା, ନୂଆ ନୂଆ ପ୍ରତୀକ୍ଷା ଓ ଆଶାରେ ସମୟ କଟି ଯାଉଛି ଖାଲି ହୋ ହୋ ଭିତରେ । ସେତେବେଳେ ଦୁଃଖ ପାଉନାହିଁ । ସେହି ମିଛିମିଛିକିଆ ଘରକରଣା, ଦଶ ଜଣଙ୍କ ସଙ୍ଗେ କଥା କହିଲେ ସମାନ ତାଳ୍‌ଲୟରେ, କୋଡ଼ିଏ ଜଣଙ୍କୁ ଚିଠି ଲେଖିଲେ ବି ସମାନ ଆବେଗରେ, ବଜାର ବୁଲିଲେ ସତର ଜଣଙ୍କ ପାଇଁ ଉପହାର କିଣା, ଏକ ପ୍ରକାଣ୍ଡ ଦଳ ଭିତରେ ବନ୍ଧା ରହି ଏଠୁ ସେଠିକି ସେଠୁ ଏଠିକି ଦଉଡ଼ ଧାପଡ଼ କରି ସମୟ ଖର୍ଚ୍ଚ ହୋଇ ହୋଇ ନିଅଣ୍ଟ, ଏହିତ ଥିଲା ତାର ସଭ୍ୟ ସଂସ୍କୃତ ଜୀବନ । ଏହାରି ଫଳରେ ତାର ସାଧାରଣ କାମଦାମ, ପାଠପଢ଼ା, ଯେତିକି ଅବସର ମିଳିଲା ସେତିକି ମାତ୍ର ।

ମେଳା ଖୋଲା ଜୀବନ,—ଶିଶିର ବିନ୍ଦୁ ପରି ସବୁଠି ସେ ଝଡ଼ିପଡ଼େ, ଖରା ଲାଗିଲେ ଉଡ଼ିଯାଏ । ବର ଖିର ପରି କେଉଁ ପତ୍ରରେ ବି ସେ ଲାଖି ରହେ ନାହିଁ ।

ଜୀବନ ତ ଚାଲିଥିଲା ଭଲ । ସୁସ୍ଥିରେ ହାଉଳେ ହାଉଳେ ।

ହଠାତ୍ ସେ ଅନୁଭବ କଲା ତା ଉପରେ ଆକ୍ରମଣ ହେବାର ଉପକ୍ରମ ହେଉଛି । ସମସ୍ତଙ୍କୁ ଏକାଠି ଗ୍ରହଣ କରୁ କରୁ ଅନୁଭବ କଲା କାହାର ଯେପରି ଅଳସ ଟିକିଏ ବେଶୀ । କିଏ ଟିକିଏ ଓଜନ ହୋଇ ଆଉଜି ପଡ଼ୁଛି । କିଏ ଗୁହାରୀରେ ସୂଚନା ଦେଉଛି ନିଆଁ ଧାସର, କିଏ ଖୋଜୁଛି ନିଛାଟିଆ ଟିକିଏ, କିଏ ହୋଇ ଯାଉଛି ମୂକ, କିଏ ବେଶୀ କଥା କହୁଛି । ହାବଭାବ ସହିତ ଅଙ୍ଗଭଙ୍ଗୀ କଥା କହିଲା । ଟଣ ଫାଟିଯାଇ ଜଣହିଁ ଆଗକୁ ଆସୁଛି । ଲୋକେ ତାକୁ ଦେହର ସୌଷ୍ଠବ ଆଉ ସୋତା ଐଶ୍ୱର୍ଯ୍ୟ ଲୁବ୍ଧଧନ ଅଳପେ ଦେଖାଇ ଛପାଇ ଆଗ୍ରହ ବଳେଇ ତାର ଦୃଷ୍ଟି ଓଟାରିବାରେ ବ୍ୟସ୍ତ । ସେ ଡାକ୍ତରି ଛାତ୍ର, ଦେହ ତାର କର୍ମସ୍ଥଳ, କିନ୍ତୁ ଯନ୍ତ୍ର ହିସାବରେ । କେତେ ଦେହ ଦେଖି ଦେଖି ସେ ପାଠ ପଢ଼ିଛି, ପୁଅ ଝିଅ ଏକାଠି ବସି ବହିରୁ ପଢ଼ି ମିଳାଇ ନେଇଛନ୍ତି । ହଠାତ୍ ଏହି ଅନାସ୍ଥା ପଣ ପାଇଁ ଚିର କାଳର ପ୍ରକୃତି ତା ଉପରେ ପ୍ରତିଶୋଧ ନେଲା ।

ସେ ମଜିଲା ।

କିନ୍ତୁ ଠାଆକେ ବୁଡ଼ିଥିଲା ହୁଏତ ସେ ଆପଣାକୁ ଖୋଜି ପାଇଥାନ୍ତା,—ଏହି ଯେଉଁ ଦଶଟା ଜାଗାରେ ବୁଡ଼ା ଉଠା, ଦଶଟା ଧାରଣା ଏକାଠି ନେଇ ଖେଳ ଖେଳା, ଆଖୁ କିଆରିରେ ପଶିଲାପରି ମୁଣ୍ଡ ଗୋଳମାଳ, ଗୋଟିକୁ ବସି ଧ୍ୟାନ ଲଗାଇଲେ ଦଶଜଣଙ୍କ ଛାଇ ଆସି ମନ ଭିତରେ ଏକାଠି ଧସ ପସ,—ସେ ହେଲା ତାର କଷ୍ଟର କାରଣ, ସାର ହେଲା ବାରବୁଲା, ବେଦବ୍ୟାସ ଅସ୍ଥିର ହେଲା । ବୁଝିପାରେ ନାହିଁ କାହିଁକି ଆଗପରି ସେତିକି ସମୟରେ ସେତିକି ପାଠ ହୁଏନାହିଁ, ସମୟ ବୋହିଯାଏ,

ବିଜୁଳୀ ଶକ୍ତି ଖର୍ଚ୍ଚ କରି ଆଲୁଅ ପାଖେ ବସି ବହିକି ଅନେଇ ଖାତା ଧରିଲେ ଖାତାରେ କେତେଟା ଛବି ହିଁ ହୋଇଥାଏ ପଢା ସରିଲା ବେଳେ,—ମଣିଷ ଦେହର କେତେଟା ଅବୟବର ସଙ୍କେତ, ଫୁଲ ଫଳ ପତ୍ର କରି ଏଣ୍ଟୁ ତେଣ୍ଟୁ କିଛି, ଯାହା ମନସ୍ତତ୍ତ୍ୱର ବିଷୟବସ୍ତୁ ହୋଇପାରେ, ପରୀକ୍ଷକଂକ କତିରେ ତାର ମୂଲ୍ୟ ନାହିଁ । ବୁଝି ପାରିଲା ନାହିଁ କାହିଁକି ତାର ଓଜନ କମିଯାଉଛି, ମନରେ ଫୁର୍ତ୍ତି ଅବସାଦ ଗୋଟାକ ପରେ ଗୋଟାଏ, କାହିଁକି ହଠାତ୍ ତାର ନାନା ପ୍ରତିଜ୍ଞା ତେଜି ଉଠେ, ବୁଲି ବାହାରିବାଠୁଁ ଚିଠି ଲେଖିବାଯାକେ, ହଠାତ୍ ପୁଣି ସେ ଅଧବାଟରୁ ନିରୁତ୍ସାହ ହୋଇ ଫେରି ଆସେ, ଯେତେ ଦୁଃଖ ନିରାଶାର ଚିନ୍ତା ହିଁ ମୁଣ୍ଡ ଉପରେ ଭାଙ୍ଗିପଡେ । ଫଳରେ କେତେ ବନ୍ଧୁପଣ କଟିଗଲା, କେତେଠିଁ ତା ବିଷୟରେ ମତାମତ ବଦଳିଗଲା, ସଙ୍ଗୀତ ଦଳ ପହଁରିବା ଦଳ ସେ ଛାଡ଼ିଦେଲା, ଆଦର ଅନାସ୍ଥା ମଝିରେ ବଢ଼ି ଉଠିଲା ତାର ଲମ୍ବ ଲମ୍ବ ଦୁର ନିଶ୍ୱ ।

ଉଗ୍ର କାମନାର ପାଚେରି ଘେରା ଚିଡ଼ିଆଖାନା ହେଉ ହେଉ ଗୋଟିଏ ପରୀକ୍ଷାରେ ଫେଲ ହୋଇ ସେ ଛଅଟି ମାସ ପଛେଇ ଗଲା ।

ଏମିତି ପଛେଇ ପଛେଇ ଯାଇଥାନ୍ତା ଚାଲି ତାର କେତେ ଛ'ମାସ, ଉଦ୍ଧାର କଲା ନର୍ସ ଭାନୁମତୀ ।

କେବେ ନ ମିଳିବା ଟୁନିର ବିବାହ ଖେଳିର ରଞ୍ଜ୍ୟାକର ଗହଳି ଭିତରେ ବେଦବ୍ୟାସ ଯେତେବେଳେ ହଳଦିବସନ୍ତ ପରି କାହାକୁ ହଠାତ ଦେଖି ହଠାତ ଆଖି ଆଗରୁ ହଜେଇ ଦେଇଥିଲା ସେତେବେଳେ ମନେ ପଡ଼ିଥିଲା ଭାନୁମତୀ । ଆପଣା ଅନ୍ତର ଭିତରୁ ଏତେ ଦିନକେ ଫୁଟି ସେ ପଦାକୁ ବାହାରିଥିଲା ।

"ଭାନୁମତୀ, କ୍ଷମା କରିଛ ତ ?"

ଓଠ ଥରିଥିଲା, ସେ ନାହିଁ ।

ଆଖି ବୁଜି ଭାବିଲେ ମନେ ପଡୁନାହିଁ ତାର ପହିଲି ଚିହ୍ନା ରାତିର ସେ ଚେହେରା । ବାହାରେ ଅନ୍ଧାର ଦଳ ଦଳ ନିଶା ରାତି, ଭୟଙ୍କର ରାତି, ଡାକ୍ତରଖାନାର ରୋଗୀ ଓ୍ୱାର୍ଡରେ ସାମ୍ନାରେ ମୁମୂର୍ଷୁ ଏକ ରୋଗୀ, ଶାନ୍ତ ହୋଇ ବେଡ୍‌ରେ ଶୋଇ ରହିଥିଲା । ହଠାତ୍ ଛଟପଟ ହୋଇ ଉଠିଛି, ପାଟି ପାକୁ ପାକୁ କରୁଛି । ଆଖି ଡିଭା କିଛି ନ ଦେଖିଲାପରି ଅଥଚ କେଡ଼େ ମେଲା, ଡୋଳା ବୁଲୁଛି । ଶୁଖିଲା ଯେମେଟା ପାପୁଲିର ଆଙ୍ଗୁଠି ଗୁଡ଼ାକ କେମା ହୋଇ ଯାଇଛି ଯେପରିକି ଏ ଶିର ଚମ ହାଡ଼ର ଛିଅନ୍ତା କଙ୍କାଳ ହଠାତ୍ ଛଞ୍ଚାଣ ପରି ଧରି ରଖିବାକୁ ଚାହେଁ ପଳେନ୍ତି ଜୀବନକୁ । ଡିଆଁମାରି ଠିଆ ହୋଇ ପଡ଼ିଲା ବେଦବ୍ୟାସ, ଦେହରୁ ଝାଳ ଫିଟିଗଲା ପୁଣି ମନେ ପକାଇଲା । ସେ ଶେଷ ବର୍ଷର ଡାକ୍ତରି ଛାତ୍ର । ସେହି ଜୀର୍ଣ୍ଣ ଶୀର୍ଣ୍ଣ କାଉଡ଼ା ନଡ଼ାବିଡ଼ା

ପରି କଟଟିକୁ ଧରି ସ୍ୱଚ୍ଛ ନାଡ଼ିର ଗତି ଦେଖୁ ଦେଖୁ ନିଭୁଥିବା ଦୀପର ନିହିତ ଶାବକ ପଣ ତାର ଶିରାଏ ଶିରାଏ ଚହଲିଗଲା ହିମକାକର, ମୁଣ୍ଡବାଳ ଫୁଲି ଠିଆ ହେଲା। ତଳେ ବିଞ୍ଚି ଯାଉଛି ମିନିଟ୍ ପରେ ମିନିଟ୍ । ତଥାପି ଅନ୍ଧାର ଅତୁଟ । ପୂର୍ଣ୍ଣ । ଚାଲି-ଯାଉଛି ମିନିଟ୍ ପରେ ମିନିଟ୍ । ରୋଗୀର କଅଁଟି ଉପରେ ଦମ୍ଭିଲା ହୋଇ ହାତ ପଡ଼ିଯାଇଛି ତା ହାତର । ଯେପରିକି ଆପଣାର ଜୀବନୀ ଶକ୍ତି ଅଗ୍ଲୁଜେଇ ସେ ଏହି ମୁମୂର୍ଷୁ ଲୋକଟିକୁ ବଞ୍ଚାଇବାକୁ ଚାହେଁ, ଖାଲି ଇଚ୍ଛା ଶକ୍ତି ବଳରେ, ତୁଚ୍ଛା ଦେହ ଜୋରରେ । କିନ୍ତୁ ଧୀରେ ଧୀରେ ବାଲିବନ୍ଧ ଭୁଷୁଡ଼ି ପଡ଼ୁଛି । ଇଚ୍ଛା ଶକ୍ତି ତାଙ୍କ ହୋଇ ଯାଉଛି, କଳ୍ପନାରେ । ସେଥିରେ ବିଭୀଷିକା । କଣ କରିବ ସେ ? କି ଉପାୟ ? ଅନୁଭବ କଲା, ନର୍ସ ଭାନୁମତୀ ଠିଆ ହୋଇଛି । କେତେବେଳୁ ଠିଆ ହୋଇ ରହିଛି ସେ । ନର୍ସ ବସିବାକୁ ମନା । ତାର କାନପାଖେ ନଇଁପଡ଼ି ଦୃଢ଼ ଭାବେ କହିଲା— "କୋରାମିନ୍"

ତାର ଦେହରେ ଯେପରିକି କିଏ ଚାବୁକ୍ ମାରି ଚମକ ଖେଳାଇ ଦେଲା । ଚମକି ପଡ଼ି ତାର ହୋସ୍ ହେଲା । ପରିସ୍ଥିତିକୁ ବୁଝିବାକୁ ଚେଷ୍ଟା କରି ସେ ଦେଖିଲା— ପାଖେ ଛଟପଟ ହେଉଚି ରୋଗୀ, ପାଖେ ଠିଆ ହୋଇଚି ନର୍ସ ଭାନୁମତୀ, ସ୍ଥିର ସାହସର ଛୋଟ ପ୍ରତିମୂର୍ତ୍ତି ପରି ଛୋଟ ଝିଅଟି । ଜୀବନ ମରଣର ସନ୍ଧି ଘଡ଼ି । ମନ ଆତୁର ଥିଲା । ଭାନୁମତୀର ମୁହଁରେ ଆଖି ଥାପି ଦେଲା, ସେହି ଚାହାଣି ତା ଆଖିବାଟେ ପିଚ୍ ପିଚ୍ ଗଳିଗଲା, ଅଜାଣତରେ, ପ୍ରଂଶସା କରୁ କରୁ ଆପଣା ଭିତରେ ତାର ବ୍ୟକ୍ତିତ୍ୱ ଉପରେ ଚାପି ହୋଇ ପଡ଼ିଲା ଭାନୁମତୀ, ଆପେ ସତେକି ଭାନୁମତୀ ହୋଇଯାଇ ସେ ପରିସ୍ଥିତି ଉପରେ ନୂଆ ଦୃଷ୍ଟି ପକାଇଲା । ଗମ୍ଭୀର ହୋଇ କହିଲା— "କୋରାମିନ୍ ଇଞ୍ଜେକସନ ଦେବି । କାହିଁ କୋରାମିନ୍ ?" ନର୍ସ କିଛି କହିଲା ନାହିଁ । ଇତସ୍ତତଃ ହେଲା । ଏଥର ତାର ମନେ ପଡ଼ିଲା, ଆଜି ସକାଳେ ରୋଗୀ ଦେଖି ଆସିଲାବେଳେ ପ୍ରବୀଣ ଅଧ୍ୟାପକ ଡାକ୍ତର ପାନିକାକରେ କହୁଥିଲେ ଠିକ୍ ଏହିକଥା, ଚାର୍ଟ୍ର ଗ୍ରାଫ୍କୁ ମନ ଦେଇ ନିଘା କରି ରୋଗୀର ଅବସ୍ଥା ଦେଖି କହିଥିଲେ ଜନହୁଡ଼ି ଅଧରାତିରେ ଏଭଳି ଅବସ୍ଥା ବି ଆସିପାରେ, ପାଖରେ କୋରାମିନ୍ ରଖିଥିବା ଉଚିତ । କିନ୍ତୁ ଆଉ କେହି ବନ୍ଦୋବସ୍ତ ନ କରୁ ସେ ନିଜେ କଣ କଲା ? କାହାକୁ କହିଥିଲା କୋରାମିନ୍ ପାଇଁ ? ବର୍ତ୍ତମାନ ଉପାୟ କଣ ?

ଦୀର୍ଘଶ୍ୱାସ ପକାଇଲା,—ନିଭିଲା ଦୀପ ନିଭିବହିଁ । ଆଉ ସେ ନିଜେ,— ମନେ ମନେ ଏତେ ଅଣାୟୀ ଡାକ୍ତର । ସେ କଣ ଖାଲି ଦେଖେଣାହାରି ହୋଇ ଠିଆ ହୋଇ ରହିଥିବ ?

ରୋଗୀ ଆହୁରି ଥରେ ପାଟି ପାକୁ ପାକୁ କଲା, ଆହୁରି ଥରେ ମୁହଁରେ ସ୍ପଷ୍ଟ ପ୍ରକାଶ କରି ଆସୁଥିଲା ଛଟପଟ ହେବାଭଳି ସୂଚନା, ଡାକ୍ତର ଛାତ୍ର ବେଦବ୍ୟାସ ସାଧାରଣ ମଣିଷପରି ମୁଣ୍ଡରେ ଦୁଇହାତ ମାଡ଼ି ଠିଆ ହୋଇ ରହି କହିଲା "ଓଃ । ଓଃ ।" । ଆଉ ଅଳ୍ପ ସମୟ ପରେ ଏ ରୋଗୀ ଚାଲିଯିବ, କାଲି ସକାଳେ ମୁହଁପୋଡ଼ି କହିବାକୁ ପଡ଼ିବ ସେ କୋରାମିନ୍ ଦେଇ ପାରି ନାହିଁ, କାରଣ ଦେଖାଇ ଦୋଷ ଲଦି ଦେବ ଅନ୍ୟମାନଙ୍କ ଉପରେ ।

ତାର ଅକୁହା କଥା ବୁଝି ପାରିଲା ପରି ନର୍ସ ଭାନୁମତୀ କହିଲା —"ଧରିବେ କି ଟିକିଏ ? ଏଇଠି ଅଛି କିଛି ଗ୍ଲୁକୋଜ୍ ପାଣି ଚେଇହିଏଁ ଅଛ । ତା ପରେ ଦଶ ମିନିଟ୍

ଲାଗିବ, ଦଶ ନମ୍ବର ଓ୍ୱାର୍ଡ଼୍‌କୁ ଗଲେ ସେଠି ସିଷ୍ଟରର ଅଲମାରିରେ ଅଛି କୋରାମିନ୍, ସିରିଞ୍ଜ, ସବୁ । ନେଇ ଆସି ପାରିବି । ଆଉ ପନ୍ଦର ମିନିଟ୍ ଯଦି ଏ ନ ରହି ପାରିବ ତେଣିକି ତାର କପାଳ, ଦୁଃଖ କରନ୍ତୁ ନାହିଁ ।"

ବେଦବ୍ୟାସ ରୋଗୀକୁ ସାଉଁଳେଇ ତା ମୁହଁକୁ ବୁଲେଇ ରଖିଲା, ଆସ୍ତେ ଆସ୍ତେ କିଛି ଗ୍ଲୁକୋଜ ପାଣି ଦେଇ ଦିଆହେଲା, ନର୍ସ ଅନୁମତୀ କହିଲା "ଆଣେ ମୁଁ କୋରାମିନ୍ । କିଛି ହେବ ନାହିଁ । ଦେଖନ୍ତୁ ନା ଆପଣ ।"

ବିନା ଭୂମିକାରେ ସେ ଉଠି ପଦାକୁ ଚାଲିଗଲା । ପଦାର କିଟି କିଟି ଅନ୍ଧାର ଯେପରିକି ଅପେକ୍ଷା କରିଥିଲା ସେହି ଛୋଟ ଝିଅଟି ପାଇଁ । ଟାକୁକିନା ଗିଳି ପକେଇଲା । ଦୂରରୁ ଶୁଭିଲା କୁକୁରଙ୍କ ବିକଟାଳ କୋଳାହଳ । ଘଡ଼ି ଦୁଇଟା ବାଜିବ ।

ରୋଗୀ ନିସ୍ତେଜ ହୋଇ ପଡ଼ି ରହିଛି, ଛଟପଟ ନାହିଁ । ହାତ ପାଦ ଆସ୍ତେ ଆସ୍ତେ ଥରିଲା ପରି ଦିଶୁଛି । ସେହି ଜୀର୍ଣ୍ଣଶୀର୍ଣ୍ଣ ରୁଗ୍ଣ ଦେହକୁ ଅନାଇଁ ରହିଲା ବେଳେ ବେଦବ୍ୟାସର ଚେତନା ଦୋହଲି ଲାଗିଲା ଥରେ ସେହି ଭଙ୍ଗା ମଣିଷ ଆଡ଼କୁ ତ' ଥରେ ପରିପୂର୍ଣ୍ଣ ଯୌବନମୟୀ ନର୍ସ ଅନୁମତୀର ସ୍ମୃତି ଆଡ଼କୁ । ମରଣ ଆଡ଼କୁ ତ' ଜୀବନ ଆଡ଼କୁ । ବ୍ୟର୍ଥତାର ଉଦାସ ଆଡ଼କୁ ଥରେ ତ ଥରେ ଦେହସୁଖମୟ ଜୀବନର ଆନନ୍ଦ ଆଡ଼କୁ, ତାର ଅନୁପସ୍ଥିତିରେହିଁ ମନେ ପଡ଼ିଲା ତାର ଦେହର ଭଗ୍ନାଂଶ । ଅତି ବାସ୍ତବ । ଅତି ଲୋଭନୀୟ । ଦୋହଲି ଦୋହଲି ଭସା ଦେଲା ଯାଇ ସେବାର କଳ୍ପନାରେ । ଡାକ୍ତରିର ଧର୍ମ, ଡାକ୍ତରଖାନାର ଆତ୍ମା, ଡାକ୍ତର ଦ୍ୱାରେ ସ୍ନେହଶୀଳତା କୋମଳତା ଆଉ ନିରଳସ ତ୍ୟାଗ ସେବା ଶୁଶ୍ରୂଷାର ଚିତ୍ର ଉପରେ । ଅନୁମତୀ ତାହାରି ପ୍ରତୀକ ।

ମନେ ପଡ଼ିଲା କେତେ ସ୍ମୃତି, ତାର ସାଙ୍ଗ ସାଥି କେତେ ଆଇ. ଏସ୍. ସି ପରେ ଯୋଡ଼ିଏ ବର୍ଷ ପଢ଼ି ବି.ଏ. ବି. ଏସ୍. ସି ପାଶ କରି ହେଲେଣି ଡ଼ିପୋଟି, ଆଇ. ଏ. ଏସ୍ କିଲଟର, କେତେ ହେଲେଣି ଏମେଲେ, ନେତା, ଉଚ୍ଚପଦସ୍ଥ କ୍ଷମତାପନ୍ନ କର୍ମୀ, କେତେ ହେଲେଣି ବଣିକ, କଂପାନି ମାଲିକ, କେତେ କଣ, ସେ ପଢ଼ିଛି ମେଡ଼ିକେଲ କଲେଜରେ । ମନେ ମନେ ଉଲ୍ଲାସ ବହୁଟିଲା । ସେ ଠିକ୍ କରିଛି, ଠିକ୍ କରିଛି । ଏଇତ ଗୌରବ । ଏଇତ ଆନନ୍ଦ । ତା'ର ନ ହେଉ ସେମାନଙ୍କ ପରି ଟଙ୍କା କି କୋଠା କି କ୍ଷମତା; ସେ ସ୍ୱାସ୍ଥ୍ୟ ଗଢ଼ାଳି, ମରଣ ସଙ୍ଗେ ଲଢ଼ିବ ଯାବୁପର୍ଯ୍ୟନ୍ତ, କି ଆଦର୍ଶ ! କି ଅନୁଭୂତି । କି ଚମକ । ବିଧାତାର ଶ୍ରେଷ୍ଠ ସୃଷ୍ଟିର ବାସ୍ତବ-କବି,-ଡାକ୍ତର ।

ଆଖିବୁଜି ଧକେଇ ହେଉଛି ରୋଗୀଟି ।

ଜଣେ ରିକ୍‌ସାବାଲା ।

ଶେଷଥର ଟାଣି ସାରିଛି ତାର ମାଲିକର ରିକ୍‌ସା, ବୁନ୍ଦା ବୁନ୍ଦା ହୋଇ ଆୟୁଷ ଝରିପଡ଼ିଛି ଘଣ୍ଟାଏ ଘଣ୍ଟାଏ । ଯାହାଅଛି ତା ବି ଯିବ । ବେଡ୍‌ଟା ଖାଲି ହେବ । ଆସିବ ପୁଣି ଆଉ ଜଣେ କିଏ ।

ବେଦବ୍ୟାସ ମୁହଁ ବୁଲେଇ ନେଲା । ମଣିଷ ଦେହକୁ ଘେନି ବାହୁନି ହେବାକୁ ପ୍ରବୃତ୍ତି ହେଲା ନାହିଁ । ଜରାଜୀର୍ଣ୍ଣ ବ୍ୟକ୍ତିତ୍ୱ ତାର ମନ ଭିତରେ ବସା ବାନ୍ଧି ପାରିଲା ନାହିଁ । କେବଳ ମନେ ପଡ଼ିଥିଲା ଡାକ୍ତରର ଆଦର୍ଶ ।

ଙ୍ଗଣାକେ ଠେଙ୍ଗା ଚଳାନ୍ତି, ଖପୁରି ଛେଚନ୍ତି, ବୋମା ଫୋପାଡ଼ନ୍ତି, ଡାକ୍ତର ମରାମତି କରେ ।

ଶତ୍ରୁକୁ ବି ଭଲ କରି ଦେଇ ବଳ ଦିଏ ନୂଆ ଅଡ଼ୁଆଇତି ସାଧିବାକୁ ସେ ହେବ ଡାକ୍ତର ।

ଭାନୁମତୀ ନର୍ସ ।

ଘଣ୍ଟାକୁ ବାରମ୍ବାର ଦେଖିଥିଲା । ସେ ଯିବାର ସାତ ମିନିଟ ହେଲାଣି । ରୋଗୀ ଏକା ସଜରେ ପଡ଼ି ରହିଛି । କିପରି ଅଛି ତାର ଅବସ୍ଥା ? କେମିତି ମାଡ଼ି ମାଡ଼ି ପଡ଼ିଲା, ତାର ଦେହ ଛୁଇଁ ପରୀକ୍ଷା କରିବାକୁ ମନଗଲା ନାହିଁ । ଧୀରେ ଧୀରେ ଆତଙ୍କ ବଢ଼ି ବଢ଼ି ଚାଲିଲା । ବେଦବ୍ୟାସ ଠିଆ ହୋଇପଡ଼ି ଏକର ସେକର ତରତର ହୋଇ ଚାଲିବାକୁ ଲାଗିଲା । ଓ୍ୱାର୍ଡର ଚିହ୍ନାଗନ୍ଧ । ଚିହ୍ନା ଦୃଶ୍ୟ । ଧାଡ଼ି ଧାଡ଼ି ହୋଇ ଖଟ ପଡ଼ିଛି । ରୋଗୀ ଶୋଇଛନ୍ତି, ସାନ ଟେବୁଲ ଉପରେ ବୋତଲର ଧାଡ଼ି, ଛୋଟ ଡାଲି ଆଲମାରି ଭିତରେ ପାଉଁରୁଟି, ଫଳ, ମୁଣ୍ଡ ଉପରେ ଚାର୍ଟ, ଟିକେଟ୍ ନମ୍ବର । ସବୁ ସବୁଦିନ ପରି, କିନ୍ତୁ ତାକୁ ଲାଗୁଥାଏ ଏ ଯେପରି ଏକ ନୂଆ ସଂସାର । ଏକ ନୂଆ ପରିବେଷ୍ଟନୀ । ସବୁ କେଡ଼େ ଚୁପ୍ ଚାପ୍ । ଖାଲି ପଙ୍ଖା ଘୂରିବାର ଶବ୍ଦ; ଆଉ ନିଶ୍ୱାସର,—ସବୁ ଅପାର୍ଥିବ ଆଉ ବିକୃତ । ଆତଙ୍କ ଖାଲି ପାରିଛି, ଆତଙ୍କ ଅପେକ୍ଷା କରିଛି । ତାର ନିଃସହାୟତାରେ ଏକମାତ୍ର ଭରସା ପରି ଥିଲା ନର୍ସ୍, ଭାନୁମତୀ, ସେ ଯାଇଛି ।

ଦଶ ମିନିଟ୍ ନୁହେଁ, ଯୁଗେ ସତେ କି ।

ଭାବୁ ଭାବୁ ମନେ ପକାଇଥିଲା, ହାଉଁ ହାଉଁଆ ଅନ୍ଧାରି ପଡ଼ିଆ ମଝିରେ ତରତର ହୋଇ ଚାଲିଥିବ ଭାନୁମତୀ । ଏଠି ସେଠି ଗଛ ଗହଳି, ତୋଟା ଗହଳି । ଏଠି ସେଠି ରୋଗୀ ଘରର ବ୍ଲକ୍, ସେହି ବାଟରେ ପ୍ରକାଣ୍ଡ ଆନାଟୋମି ଭବନ, ଅନ୍ଧାରରେ ଶୋଇଥିବ । ଡାକ୍ତର ନ ହୋଇ ସାଧାରଣ ମଣିଷ ଦୃଷ୍ଟିରୁ ଭାବୁଥିଲା, ଛାତି ଭିତର କେମିତି ଲାଗୁଥିଲା । ଦୂରରୁ ଶୁଭିଲା ତୁହାଇ ତୁହାଇ ଚିତ୍କାର । ଚମକି ପଡ଼ି ଭୟରେ ଚାହିଁଲା ପଡ଼ିଆ ଆଡ଼କୁ । ରତିସାରା କେତେ ଚିତ୍କାର ଏହିପରି ଶୁଭେ । କିନ୍ତୁ ଆଜି ତାର ମନ ଅସ୍ୱାଭାବିକ ହୋଇ ସ୍ୱାଭାବିକ ସାଧାରଣ ମଣିଷ ମନ ହୋଇଛି । ଏଥର ତାର ଦମ୍ଭ ଭୁଷୁଡ଼ି ପଡ଼ିଲା । ଅନୁଭବ କଲା ଯେପରିକି ଏ ଦୁନିଆଁରେ ସମସ୍ତେ ଯେତେବେଳେ ଶୋଇଛନ୍ତି, ଯେତେବେଳେ ବୁଦ୍ଧି ବିଚାର ବାହାରେ ସୃଷ୍ଟି ହୋଇଛି ଅଶରୀରୀ ଅନୁଭୂତିର କ୍ଷେତ୍ର, ସେଠି ଏକମାତ୍ର ଚେଇଁଛି ସେ, ଚେଇଁବାକୁ ଚାହେଁ ନାହିଁ । ଲୁଚିବାକୁ ଚାହେଁ ।

ଦୂରରୁ ପଛେଇ ଚାହିଁଲା, ତାର ସେ ରୋଗୀ ଆଁ କଲାଣି । ବଡ଼ ବଡ଼ ଆଖି ଫାଡ଼ି ବୁଲେଇଲାଣି, ଉଠିବାକୁ ଚେଷ୍ଟା କରୁଛି । ଉଠି ବସିବାକୁ ଚେଷ୍ଟା କରୁଛି ନରକଙ୍କାଳ, ତାର ହାତଗୋଡ଼ ଆଉ ବିଦାକାଠି ପରି ଛାତିରେ ଲାଗିରହିଛି କଣ ଏକ ଆନ୍ଦୋଳନ । ବେଦବ୍ୟାସର ଧୈର୍ଯ୍ୟ ନ ଥିଲା । ମରଣ ସତେ କି ରୂପ ପାଲଟି ଗୋଡ଼େଇବାକୁ ମନସ୍ଥ କରିଛି, ତା' ଆଗରେ ସେ ଡାକ୍ତର ନୁହେଁ । କିଛି ନୁହେଁ । ଖାଲି ଜୀବନଲୋଭୀ ସାଧାରଣ ମଣିଷଟିଏ, ଭୀରୁ, ଦୁର୍ବଳ ।

ତା'ର କପାଳରୁ କେଶ କେଶ ଝାଳ ନିଗିଡ଼ିଲାଣି । ମନ୍ତ୍ରମୁଗ୍ଧ ପରି ବେକ ବଙ୍କେଇ ପଛକୁ ଅନାଇଁ ରହିଛି ସେ ରୋଗୀ ଅଡ଼କୁ । ସମୟର ଚେତନା ହଜି ଯାଉଛି । ହଠାତ୍ ପହଞ୍ଚିଗଲା ଆସି ଭାନୁମତୀ ।

ତା' ସହିତ ସବୁ ଆଶା, ସବୁ ସାହସ, ନୂଆ ଜୀବନ । ସତେ ଯେପରି ଯେଉଁ ଘରେ ଧାମା ଅଲୁଅ ସେଡେଡ୍ ଲାଇଟ୍ ଅହୁରି ଉଜ୍ଜଳ ହୋଇ ଜଳି ଉଠୁଛି । ବେଦବ୍ୟାସ ଆଶ୍ୱା ପାଉଛି ।

ପାଖକୁ ଚମକି ଗଲା ।

କିନ୍ତୁ ଭାନୁମତୀ ତୁଣ୍ଡରେ ତିରସ୍କାରର ସୁରୀ । "ଏ କଣ ? ଆଉ ଗ୍ଲୁକୋଜ୍ ଦେବ ନାହାନ୍ତି କି ? ଉଠିଲା ପରି ଟାଳ ହେଲା କେମିତି ? ଆଉ ଟିକିଏ ହେଲେ ତ ଖସି ପଡ଼ିଥାନ୍ତା, ତେବେ ଆଉ କୋରମିନ୍ କ'ଣ ଦରକାର ଥିଲା ? ଆପଣ ଟିକିଏ ଆଖି ଲଗେଇ ଦେଇ ଅଉଜି ଯାଇଥିଲେ କି ? ଛାଡ଼ନ୍ତୁ, ଭଲକରି ଶୁଆଇ ଦିଏଁ ରହନ୍ତୁ ।" ସେ ଯାହା କହୁ, କାନକୁ ଅମୃତ, ଆଖିବୁଜି ତାହାରି ନିର୍ଦ୍ଦେଶ ସେ ମାନିବାକୁ ରହିଥିଲା । କିନ୍ତୁ ଭାନୁମତୀ ବି ତିକ୍ତତା ପୃଷ୍ଟ କରିବାକୁ ଚାହେଁ ନାହିଁ । କଥା ବୁଲେଇ ଦେଇ କହିଲା,—'ସାର କିଛି ହେବ ନାହିଁ । ଦେଖିବେ ରହନ୍ତୁ ଆପଣ, ଯିବାର ଥିଲେ ସେତିକି ବେଳୁ ସେ ଯାଇ ସାରନ୍ତାଣି, ମାଲେ, ଲାଗୁଥିଲା ସତେକି ତେଥ୍ରୟଟ୍ । ଅଥଚ ଅପେକ୍ଷା କରିଚି କୋରମିନ୍ ତା ଲାଗି ଆସିବ କେବେ ଚାଲିଖି କେବେ କପାଳିଆ ଦେଖନ୍ତୁ ତ" ।

ମନର ସବୁଯାକ ବୋଝ ପଦାକୁ ଫୋପାଡ଼ି ମାରି ପାକଳ ଡାକ୍ତର ପରି ବେଦବ୍ୟାସ ଠୋ ଠୋ ହସିଦେଲା ।

ରୋଗୀ ପୁଣି ଛଟପଟ ହେଲା । ଅଗ୍ୟାନ ରୋଗୀକି ଲକ୍ଷ୍ୟ କରି ବେପରୁଆ ଭାବେ ବେଦବ୍ୟାସ କହିଲା—"ସମ୍ଭାଳି, ସମ୍ଭାଳି, ହେବ ଦେଖ ଶେଷ ଚେଷ୍ଟା, ବିନା ଯୁଦ୍ଧରେ ମଣିଷ ଛାଡ଼ୁଛି କୋଉଠି ?"

ନର୍ସ ଭାନୁମତୀ ବର୍ଣ୍ଣର୍ ଜାଳି ସିରିଞ୍ଜ୍ ଡିସିନ୍‌ଫେକ୍ଟ କରୁଥିଲା । ମୁହଁ ବୁଲେଇ ଚାହିଁଦେଲା । ରୋଗୀର ନାଡ଼ି ଦେଖୁ ଦେଖୁ ବେଦବ୍ୟାସ ବି ଚାହିଁଲା । ଚାରିଚକ୍ଷୁ ଏକ ହେଲା ।

ବେଦବ୍ୟାସ ଅନୁଭବ କରୁଥିଲା ସେ ପକ୍କା ଡାକ୍ତର । ତାର ସ୍ଥିର ହାତ, ଥଣ୍ଡା ମୁଣ୍ଡ, ତା'ର ସ୍ନାୟୁ ଥରେ ନାହିଁ ।

କୋରମିନ୍ ଇଞ୍ଜେକସନ୍ ଦେଇ ଦେଇ ଗମ୍ଭୀର ହୋଇ କାନରେ ଷ୍ଟେଥସ୍କୋପ୍ ଫିଟ୍ କରି ସେ ରୋଗୀର ଛାତି ଉପରେ ନାଡ଼ ଥୋଇ ଥୋଇ ଅବସ୍ଥା ଦେଖିବାକୁ ଲାଗିଲା, ଭାନୁମତୀ ପାଖରେ ଠିଆ ହୋଇଛି । ସମୟ ପାଇଁ ତାର ଖାତିରି ନାହିଁ, ଷ୍ଟେଥସ୍କୋପ୍ ବାଟେ ଶୁଭି ଲାଗିଛି ହୃଦଯନ୍ତ୍ରର ଗୋପନ ନିର୍ଦ୍ଦେଶ । ବହୁତ ବେଳେ ଗଲା, ହୋସ୍ ଆସିଲା ଶୁଣିଲା ଯେତେବେଳେ ଭାନୁମତୀ କହୁଛି,—"ସୁନ୍ଦର କାମ । ସମୟ ଯେତେ ଯାଉ ମେଜର୍ ପାନିକାଳରେ ଅବିକଳ ଏହି ନୀତିରେ କାମ କରନ୍ତି । କହନ୍ତି ରୁଗ୍ଣ୍ ପାଇଁ କିଛି ଛାଡ଼ିବ ନାହିଁ, ଯେତେଦୂର ମଣିଷର ଶକ୍ତିରେ

ସମ୍ଭବ ଆଗ କରି ସାରିବ, ତେଣିକି ଲକ୍, ଭଗବାନ୍, ଈଶ୍ୱର, ଆଲ୍ଲା, ଯାହା କହ ତା ମାନିବି" ।

ବେଦବ୍ୟାସ ଉଠି ଆସିଲା, କହିଲା "ଅନ୍ତତଃ ବର୍ତ୍ତମାନ ଭୟ ନାହିଁ, ସଡିଟା କଟିବ, ସକାଳକୁ ମେଜର୍ ପାନିକାକରେ ଯାହା ଉଚିତ ବୁଝିବେ ତା କରନ୍ତୁ" ।

ଶୋଇଛି ସେ । ଯେତେ ଦୁର୍ବଳ ହେଲେ ବି ତାର ନିଶ୍ୱାସରେ ଗୋଟାଏ ଛନ୍ଦ ଆବିଷ୍କାର କରି ହେଉଛି ।

କେବଳ ଆକର୍ଷଣୀ ମୋହ ନୁହେଁ, କୃତଜ୍ଞତା ସତେକି ତା'ର ମନ ଭିତରୁ ଉପୁଚି ପଡୁଥିଲା । କହିଲା "ନର୍ସ, ସବୁ କେଡ଼ିଟ୍ ତୁମର । ତୁମେ ନଥିଲେ,—"

"ହିଁ ନା !"—ଅନୁମତୀ କହିଲା, "ମୋର କି କ୍ରେଡ଼ିଟ୍, ଏଇ ଧାଇଁ ଯାଇ ଟିକିଏ କୋରାମିନ୍ ଆଣି ଦେଲି ବୋଲି । ସେ ତ ମୂଲିଆ କାମ, ବେହେରା ଶୋଇ ପଡ଼ିଚି, ଆପଣ ଉଠେଇ ପଠେଇ ଥିଲେ କ'ଣ ସେ ପାରି ନ ଥାନ୍ତା ?" "ଖାଲି ସେତିକି ନୁହେଁ ନର୍ସ୍"—

କିଛି ନକହି ତା ଆଡ଼କୁ ଖାଲି ଅନେଇ ରହିଥିଲା । ଅନୁମତୀ ଟେବୁଲ ଉପରେ ମୁହଁ ମାଡ଼ିଦେଲା ।

ରାତି ତିନିଟାବେଳେ ଅନୁମତୀ ଚାହା ଦେବ ବୋଲି କହି ଯେତେବେଳେ ଷ୍ଟୋଭ୍ ଜାଳିଲା ସେତେବେଳେ ଲାଗୁଥିଲା କେମିତି ଘର ଘର । ଯେଉଁ ଘରୁ ସେ ଆସିଛି ସେ ଘର ନୁହେଁ, ବେଦବ୍ୟାସର କଳ୍ପନାର ଘର । ନର୍ସ ବଖୁରି ପିଣ୍ଡାରେ ଚାହା ପିଉ ପିଉ ହଠାତ୍ ସେ ତା'ର ନାଁ ଧରି ଡାକିଥିଲା । ଲାଗିଥିଲା ଦୁହେଁ କାମର ସାଥୀ, କାନ୍ଧକୁ କାନ୍ଧ, କହିଥିଲା "ଅନୁମତି, ତୁମ ନିଜ କଥା କହ ।"

ନିଜ କଥା ଅତି ଅଳ୍ପ । ଗାଁ ଇସ୍କୁଲରେ ମାଇନର ପାଶ କରୁ କରୁ ବାପ ମା ମରିଗଲେ । ମଫସଲ ଭିତରେ ଠାଏ ଗୋଟାଏ ଗରିବ ଘର । ଭାଇ ଭାଉଜ ଦେଖି ପାରନ୍ତି ନାହିଁ, ଅତ୍ୟାଚାର ବଢ଼ିଲା । ଜବରଦସ୍ତି ଏକ ବୁଢ଼ାବର ସଙ୍ଗେ ବାହା କରି ଦେଉଥିଲେ, ବୋଝ ଉଠିଥାନ୍ତା । ସହି ନ ପାରି ଖଡି ରାତି ଲୁଚି ପଳାଇ ଆସିଥିଲା । ଅନାଥାଶ୍ରମ, ନର୍ସ ଟ୍ରେନିଂ, ମୋଟେ ଏଗାରମାସ ହେଲା ଏ ନର୍ସ୍ ଚାକିରୀ । ଆଜି କାଲି ଭାଇଭାଉଜ ପଚାରନ୍ତି, ଭାଇ ଆସନ୍ତି ସେ ପ୍ରତି ମାସରେ ଟଂକା ପଠାଏ । କଣ କରିବ ଆଉ ? ନିଜର ବୋଲି ତ ଆଉ କେହି ନାହିଁ । ଖଣ୍ଡାଇତ ଘର ଝିଅ, ପଦବୀ କେବଳ ଯୋଉଁ । ଆଭିଜାତ୍ୟର କମ ନାହିଁ, ଚାଷୀ ମୁଲିଆ ଲୋକ, ତେବେ ବାପ ଥିଲେ ପଡ଼ିଶା ଗାଁ ତେଲି ଜମିଦାର ଘରେ ତହସିଲଦାର୍, ଭାଇ ସେହି କାମ କରୁଛନ୍ତି । ବାପା ଅଫିମୀ ଥିଲେ, ଭାଇ ସେଗୁଣ ନେଇଛନ୍ତି, ତା ଛଡ଼ା ଆଉ କିଛି ଅଧିକା,—ଗୁଲି ।

ଲାଜ ନାହିଁ ସଂକୋଚ ନାହିଁ ପାର୍ଟିରେ ଈାଟୁଲି ତାଳିଲା ନାହିଁ କହିଗଲା ସବୁ କଥା ଆପଣାର ପରି ।

ସକାଳ ପାହି ଆସୁଥାଏ, ହଠାତ୍ ରୋଗୀଟା ଛଟପଟ ହେଲା, ତଣ୍ଟିରେ ବିକୃତ ଘଡ ଘଡ । ଦିହେଁ ଚମକି ଗଲେ ତା ପାଖକୁ । ନାଡ଼ି ମୁଠେଇ ଦେଇ ତରତର କରି ପୁଣି କୋରମିନ୍ ଇଞ୍ଜେକସନ୍ ବେଦବ୍ୟାସ ଫୋଡ଼ିଥିଲା ସତ କିନ୍ତୁ ସିରିଞ୍ଜ ଓଟାରୁ ଓଟାରୁ ଘଡଘଡ ସରି ଯାଇଥିଲା, ପାଟି ଆଁ ହୋଇ ଗଳି ପଡ଼ିଥିଲା ଧାରେ କଳା ପାଣି, ମୁହଁର ମାଂସ ପେଶୀ ଗୋଟାଏ କରରୁ ଅଳପେ ବଂକେଇ ସାରିଥିଲା । ଆଖି ସ୍ଥିର ହୋଇ ସାରିଥିଲା । ରୋଗୀର ମୁହଁରେ ଗୋଟାଏ ଆଶ୍ଚର୍ଯ୍ୟ ହୋଇ ବକା ହେଲାପରି ଭଙ୍ଗୀ ଯେପରିକି ଏତେକାଳ ଧୁନ୍ଦାଳି ହୋଇ ଶେଷରେ ସେ ମୁହାଁମୁହିଁ ଆଖିରେ ଦେଖିଛି ଅପ୍ରତ୍ୟାଶିତ ସତ୍ୟକୁ ।

ତା'ର ହାତଟା ପକେଇ ଦେଲାପରି ଛାଡ଼ି ଦେଇ ଘୁଞ୍ଚି ଆସି ବେଦବ୍ୟାସ ଅନୁମତୀ ମୁହଁକୁ ଅନେଇଁ ଥିଲା । ଅନ୍ତର ଭିତରେ ଅନୁଭବ କଲା ଏହି ତା'ର ଏକମାତ୍ର ଆଶ୍ରୟ ସ୍ଥଳ ।

ସେହି ଆଶ୍ରୟ ଉପରେ ଭର ଦେଇ ବେଦବ୍ୟାସ ଘୋଷଣା କଲା, "ଯାହା ଅସମ୍ଭବ ତା ଅସମ୍ଭବ । ଲିଭର୍‌ରେ ସିରୋସିସ୍, ପ୍ରକାଣ୍ଡ ପ୍ଲୀହା, ଦେହରେ ଟୋପେ ରକ୍ତ ନାହିଁ, ହାର୍ଟ୍‌ର ଇଞ୍ଜିନ୍ ସବୁ ବିଗିଡ଼ା, ଶୁଖିଲା ପତ୍ର ଝଡ଼ି ପଡ଼ିବତ, କେଉଁ ଔଷଧ ତାକୁ ଠେକ ଦେବ ?" ଅନୁମତୀ ତା ମୁହଁକୁ ଚାହିଁ ରହିଲା । ତା'ପରେ ଚଞ୍ଚଳ ଯାଇ ମୁର୍ଦ୍ଦାର ମୁହଁରେ ଧଳା ଚଦର ଢାଙ୍କି ଦେଲା ।

କିନ୍ତୁ ଆଖିବୁଜି ଭାବିଗଲେ ଅନୁମତୀ ବିଷୟରେ ସେହି ତା'ର ପହିଲି ଚେତନା ସମେତ ତା'ର ସେତେବେଳର ଚେହେରା ଆଉ ଭଙ୍ଗୀ ମନେପଡ଼େ ନାହିଁ । ମନେପଡେ ନାହିଁ ତା' ଉତ୍ତାରୁ ଦିନ ଦିନକର କଥା, ଅନୁମତୀ ସହିତ ତା'ର ଗହନ ପରିଚୟର, କେବଳ କାର୍ଯ୍ୟ କ୍ଷେତ୍ରରେ ନୁହେଁ, ନର୍ସ୍—କ୍ୱାଟର୍ସ୍‌ରେ ତାର ବହାରେ, ବୁଲି ବାହାରି ଅନ୍ୟ ସ୍ଥାନରେ, କ୍ରମେ କିପରି ବନ୍ଧୁମାନେ ଥଟ୍ଟା କଲେ, ଈର୍ଷା ବି କଲେ, କଥାଟା ଖଣ୍ଡେ ହେଲା । କିପରି ପ୍ରସ୍ତାବ ପାଇଲା ଏକ ସମ୍ବାଦ ଯେ ସେ ପାଶ୍ କରି ସାରିଲେ ଅନୁମତୀକୁ ବିଭାହେବ, କିପରି ଦିନୁଁ ଦିନ ଅନୁମତୀ ହୋଇ ଲାଗିଲା ଆପେ କେବଳ ହୃଦୟର ଏକ ଅଖଣ୍ଡ ଦୀପ, କିପରି ସେ ନିଜେ ଆଶାତୀତ ଭାବରେ ପଢ଼ାରେ ଭଲ କଲା । ସୁନାମ ନେଇ ପାଶ୍ କଲା । ହାଉସ୍ ସର୍ଜନ୍ ହୋଇ ପହିଲି ଦିନୁ କେତେ ନାଁ କମେଇଲା ଦକ୍ଷ ଡାକ୍ତର ବୋଲି । ମନେପଡ଼େ ତା'ର ଅଲୁଲା କାନ୍ଦୁରା ମୁହଁ ଆଉ ବେଶ, ଆଖି ଦିଟା ନାଲି ନାଲି ହୋଇ ଫୁଲିଛି, ବିକୃତ ହୋଇ ଫାଟି ଯାଉଛି ଓଠ, ଗାଲ ଉପରେ ଲୁହ ସହିତ ବାଳ ଅଠା ହୋଇ ଲାଖିଛି ତଥାପି ନିଗୁଡ଼ିଛି ଢେର ଢେର ଲୁହ, ତା'ର ରହିବା ବଖୁରିର ଯୋଡ଼ି କବାଟକୁ ଅଧା ଆଉଜା କରି

ଧାଡ଼ି ହୋଇ ଠିଆ ହୋଇ ପଡ଼ିଆକୁ ସନ୍ଧାକୁ ଚାହିଁଛି, ସୂର୍ଯ୍ୟ ଅସ୍ତ ଯାଉଛି, କବାଟ ଧୀରେ ଧୀରେ ଯୋଡ଼ିହୋଇ ଆସୁଛି, ବନ୍ଦ ହୋଇ ଯାଉଛି । ତା'ପରେ ଖାଲି ବନ୍ଦ କବାଟ ।

ଆଉ ମନେପଡ଼େ ପ୍ରୀତି,—ପ୍ରୀତି ନାଏକ୍ ।

ସବୁ ଆଉ ଡେଙ୍ଗା ଆଉ ସିଧା ଠିଆ ଫାଳ ବତାପରି ନହକା ନଇଁ ଯାଉଛି ଆଗକୁ ପଛକୁ, ଦେଖିଲେ ଭୟ ହୁଏ ମଟ୍‌କରି ଭାଙ୍ଗି ପଡ଼ିବ ଅବା ହଠାତ୍ । ଯାକ ହୋଇ ଗୁର ହୋଇଛି ଅତି ପାତଳ ସିଲକ୍ ସଡେ ଅବା ସେହି ଦେହର ଭିପଡ଼ାଲୁ ଦେଖାଇବା ଲାଗି, ବିଶେଷ କରି ଏକା ମୋଟର ସେହି ସ୍ତନ୍ୟର ଉପର ଅଧକରେ ଥିବା ଦୁଇ ଗର୍ବିତ ଗୋଲାର୍ଦ୍ଧକୁ ଆଖିଦରଶା କରିବା ପାଇଁ, —ସେଥିରେ ତାର ସଂକୋ ନାହିଁ, ଲଜ୍ଜା ନାହିଁ, ବରଂ ଠିକ୍ ଓଲଟା—ସେ ତାର ବହୁମୂଲ୍ୟ ଶିଳ୍ପ ପ୍ରଦର୍ଶନୀ, ନ ହେଉ ପଛେ ସେ ତାର ନିଜ ହାତର କରଣି, କେବଳ ବିଧାତାର ଆଉ ବୟସର । ସ୍ତନ୍ୟ ଉପରେ ତା'ର ଅପେକ୍ଷାକୃତ ସାନ ମୁଣ୍ଡଟି, ଯେଥିରେ ବିଶିଷ୍ଟ ତାର ଫୁରୁଫୁରୁ ବାଳ, ପଛଆଡ଼େ ଗଣ୍ଡି ପଡ଼ିଲେ ବି ଫୁରୁଫୁରୁ ଉଡ଼ୁଛି, ଦେଖିଲେ ମୁଣ୍ଡ ଭିତର ଅଡ଼ୁଆ ହୋଇଯାଏ । ଆଉ ମୁହଁ ତୁଳନାରେ ବଡ଼ ବଡ଼ ଦୁଇଟି ଆଖି, କାନ ପର୍ଯ୍ୟନ୍ତ କଜ୍ଜଳରେ ଲାଞ୍ଜ ଟଣା ହୋଇ ସେ ଦିଶୁଛି ଆହୁରି ବଡ଼, ତଳି ଉପର କଳା ସେଟିଂରେ ଦିଶୁଛି ଅହୁରି ଉଜ୍ଜ୍ୱଳ ଲାଗୁଛି ଯେପରି ତହିଁରେ କେଉଁ ଗହୀରରେ ଦୁଇଟି ସାନ ସାନ ବଲବ୍ ନିଶ୍ଚୟ ଜଳୁଛି ନଦିଶୁ ପଛେ ଆଉ ତାର ଫୁରିଲା ଫୁରିଲା ମୋଟା ଓଠ ଲିପଷ୍ଟିକ୍ ବୋଳି ହୋଇ ପାଚିଲା ପରି ଦିଶୁଛି ଚାହିଁ ଦେଲେ ଲାଗୁଛି ପାଟିରେ ପାଣିଏ ହେବ । ଶେଥା ଗୋର ସ୍ୱାଭାବିକ ବର୍ଣ୍ଣ ଉପରେ ବେଲଜ୍ ପାଉଡ଼ର ଧୂଳି ଆଉ ଏକ ନୂଆ ବର୍ଣ୍ଣ ସୃଷ୍ଟି କରିଛି ଯାହା ମଣିଷର ନୁହେଁ ଉଦ୍ଭିଦର ନୁହେଁ ହୋଇପାରେ ଅବା କେଉଁ ଅଚିହ୍ନା ଜନ୍ତୁର । ବେଦବ୍ୟାସ ଚାହିଁ ରହିଥାଏ, ସେହି ଧେଡ଼ ତାର ଚେହେରାର ସବୁ ବିଶେଷତ୍ୱ ଫୋପାଡ଼ି ମାରି ନେଳି ଶିରରେ ଗୁର ହୋଇଥିବା ଦୁଇ ହାଡ଼ୁଆ ପାପୁଲି ଟେକିଲା । ସେଥିରେ ଲମ୍ବ ଲମ୍ବ ସରୁ ସରୁ ଆଙ୍ଗୁଠି ନଖରେ ନଖପାଲିସ୍ ନାଲିରଙ୍ଗ ବୋଳା ହୋଇ ଦିଶୁଛି ଯେପରି ସଦ୍ୟ କାହାର ଅନ୍ତ ଭିଣିଭିଣା କରି ଚାଲି ଆସିଛି । ଏକାଠି ପାପୁଲି ଯୋଡ଼ି ଯୋଡ଼ା ପାପୁଲିର ଦାଢ଼ ଖଣ୍ଡାନାକରେ ସଂଯୋଗ କରି କହିଲା "ନମସ୍କାର ଡାକ୍ତର ବାବୁ, ଉଃ, ଏଇ,—ଏଇ ଭିତରେ—ଛାତି ମଝିରେ ହାତ ମାରି, "ଏଇ ଭିତରେ ଆଉ ଦୁଇପାଖରେ ଖରି କେମିତି ଲାଗୁଛି । ଦେଖିବେ ଟିକିଏ, ଯନ୍ତ୍ର କ'ଣ ହେବ ହାତ ମାରନ୍ତୁ ଖାଲି ହାତରେ ବି ବୁଝି ପାରିବେ, କଣ ଗୋଟାଏ ଚାଲୁଚି ଭିତରେ ଭିତରେ ଏ ପାଖରୁ ସେ ପାଖ, ସେ ପାଖରୁ ଏ ପାଖ । ଆଉ ଗାଡକରି ରହୁଛି ସେଠି ଉଃ"—

"କଣ ଗୋଟାଏ ଚାଲୁଛି । କାହିଁ ?" ଅସମ୍ଭବ କଥାକୁ ମନେ ମନେ ଉପହାସ କଲେ ବି ବେଦବ୍ୟାସ ସହାନୁଭୂତିଶୀଳ ଡାକ୍ତର ସହଜ ଭଙ୍ଗୀରେ ଉଠୁଙ୍କି ଆସିଲା, ଶାନ୍ତ ହୋଇ କହିଲା "ଆପଣ ଠିକ୍ କହୁଛନ୍ତି ତ ?"

"ଏଇ ଦେଖନ୍ତୁ ନା—ଉଃ—ହାତମାରି ଦେଖନ୍ତୁ—ଭଲ କରି ଦେଖନ୍ତୁ— କଥା କହୁ କହୁ ହଠାତ୍ ଝାମ୍ପମାରି ସେ ତାର ଡାହାଣ ହାତଟିକୁ ଧରି ପକାଇ ଥୋଇ

ଦେଲା ଛାତି ଉପରେ, ଖୁପି ଧରିଲା ଟାଣ କରି, ଏକର ସେକର ଗଡ଼େଇଲା । ସେହିପରି ହାତକୁ ମାଡ଼ି ଧରିଲା ଅବସ୍ଥାରେ ପୁଣି 'ଉଃ' ବୋଲି ଚିତ୍କାର କରି ବେକକୁ ପଛ ଆଡ଼କୁ ଭାଙ୍ଗି ଦେଇ ଝାଙ୍ଗି ହୋଇଗଲା ଧନୁପରି, ଥରି ଥରି ସିଧା ପଛକୁ ପଡ଼ି ଯାଉଥିଲା, ବେଦବ୍ୟାସର ଡାହାଣ ହାତ ତାର ପିଶାଚ ମୁଠାରେ ଥିଲେ ବି ବାଁ ହାତରେ ସେ ତାକୁ ବେଢ଼େଇ ଧରିଲା, ଆଉ ପାଖରୁ ବାଁ ହାତଟର ତାକୁ କୁଣ୍ଢେଇ ଧରି ଅଚିହ୍ନା ରୋଗିଣୀ କହିଲା "ଉଃ । ମରିଯିବି ଡାକ୍ତରବାବୁ ଆପଣ ରକ୍ଷା ନ କଲେ"—ଶୋଷି ନେଲାପରି ଆଖିକି ଆଖି ଅନାଇଁ ଥର ଥର ଓଠରେ ଗଦଗଦ ହୋଇ ପ୍ରଶ୍ନର କଲା— "ଆପଣହିଁ ଭଲ କରିବେ ମତେ, ଦେଖନ୍ତୁ ପରୀକ୍ଷା କରି, କେମିତି ଲାଗୁଛି ? କହନ୍ତୁ, ବଞ୍ଚେଇବେ ତ ?"

କଣ ସେ ଦେଖୁଛି ? କେମିତି ପ୍ରକାରେ ତାର ମୁହଁ ? ତାର ଆଖିକଣ ତାକୁ ଛଳୋଉଛି ନା ଏ କଣ ସତେ ସତେ ଯନ୍ତ୍ରଣାବିକୃତ ମୁହଁ ? ସେ କଣ ଭୁଲ ଦେଖୁଛି ନା ଓଠ କଣରେ ଖୁଇଁଖର ପରି ଶ୍ଳେଷ ହସ ଫୁଟି ଆସୁଛି ପୁଣି ଛପି ଯାଉଛି ? ବେଦବ୍ୟାସ କିଛି ଠିକ୍ କରି ପାରିଲା ନାହିଁ । ଆପଣା ଦେହ ଥରି ଥରି ଉଠୁଛି । ଦେହ ଭିତରେ ଏକ ଝଡ଼ ଉଠି ଆସୁଛି । ଲାଗୁଛି, ଏ ଏକନୂଆ ଅଭିଜ୍ଞତା, ନିଜେ ଡାକ୍ତର ନୁହେଁ । ସେ ରୋଗିଣୀ ନୁହେଁ, ଖାଲି ମଣିଷକୁ ମଣିଷ, ମାଂସ କାନରେ ମାଂସର ଡାକ, ସେ ପଶୁ ।

ଦି ମିନିଟ୍ ପରେ ଅନ୍ଦାଜ ହେଲା ଏ ବୋଝ ସେ ବହୁତ ବେଳ ବୋହିଲାଣି, କାନମୁଣ୍ଡା ଗରମ, ମୁହଁ ଗରମ, କପାଳ ଉପରେ ଝାଳ ଫୁଟି ଆସୁଛି । ଯେମିତି ସ୍ୱପ୍ନ ପରି ଲାଗୁ, ସବୁ ସବୁ, ଏଇ ତାର ବଖୁରି । ମୋଟା ପର୍ଦ୍ଦା ଝୁଲୁଛି । ଧୀରେ ତାକୁ ପାଖ ଚୌକିରେ ବସାଇ ଦେଲା, ଆପଣାକୁ ତାଠୁ ମୁକ୍ତ କଲା, ସାମ୍ନାରେ ଠିଆ ହୋଇ ନିରେଖି ଅନେଇଁ କହିଲା,—

"କହନ୍ତୁ ଏଥର ।"

କିନ୍ତୁ ରୋଗିଣୀ କହିବା ଅବସ୍ଥାରେ ନାହିଁ । ଚୌକି ପିଠି ଉପରେ ଅଳ୍ପ ବେକ ଭାଙ୍ଗି ଦେଇଛି ପଛକୁ, ଛାତି ତରତର ହୋଇ ଉଠୁଛି ପଡ଼ୁଛି, ଏକ ମୁନିଆଁ ଜିଭ କାଢ଼ି ବୁଲେଇ ଲାଗିଛି ଓଠ ସନ୍ଧିରେ ଏକରୁ ସେକର ।

ବେଦବ୍ୟାସ ପାଣି ଗିଲାସେ ବଢ଼େଇ ଧରିଲା । ରୋଗିଣୀ ହାତ ଟେକିଲା । ଗିଲାସ ପାଖ ହେଲା ବେଳକୁ ତାର ହାତଟା ଅସମ୍ଭବ ପ୍ରକାରେ ଥରି ଥରି ଉଠିଲା, ବାଧ୍ୟ ହେଲା ବେଦବ୍ୟାସ ପାଣି ଗିଲାସକ ତାର ମୁହଁ ପାଖେ ଧରିବାକୁ । ପାଣି ପିଉ ପିଉ ମୁଣ୍ଡକୁ ତା ଆଡ଼କୁ ସେ ଢଳେଇ ଦେଲା, ଠିକ୍ ତାର ମୁହଁ ତଳେ, ପାଣି ପିଇଲା ମଠେଇ ମଠେଇ, ରଖି ରଖି, ତା ପରେ ସିଧା ହୋଇ କହିଲା "ଆଃ ।"

"କେମିତି ଲାଗୁଛି ?"

"ଟିକିଏ ଭଲ ଲାଗୁଛି ବୋଧହୁଏ । ସେତେବେଳେ ମୋର କଣ ହୋଇଗଲା । ଏମିତି ହୁଏ । ଏଇ ଛାତି ଭିତରେ । କଣ ଗୋଟାଏ ଗୁଳେ ବୁଲେ—"

ଏଥର ତାର ଗୋଟାଏ ଗୋଡ଼ ଧରିବାକୁ ଆରମ୍ଭ କଲଣି, ଯେପରି ଭିତରେ ଲାଗି ରହିଛି ଅହରହ କମ୍ପନ । ତାପରେ ଦେହ ସାରା । ଆଖିବୁଜି ଦେଲା' ପୁଣି ଦମ୍ ମାରି କହିଲା "ଭଲ ହେବି ନାହିଁ ଡାକ୍ତର ବାବୁ ?"

"ନିଶ୍ଚୟ ଭଲ ହେବେ, ଆପଣ ଦମ୍ଭ ଧରନ୍ତୁ—"

ପିଲାପରି ଅଳି କଲା—"କାହିଁ ଆପଣ ପରୀକ୍ଷା କଲେ ନାହିଁ । କିଛି କହୁନାହାନ୍ତି । ବଡ଼ି ଦେବେ ନୁହେଁ ? କହିବେ ଏଠିକି କାହିଁକି, ଆପଣ ମାଇକିନିଆ ଲୋକ ଯାଆନ୍ତୁ ଲେଡ଼ି ଡାକ୍ତର ଅମଳା ଦେବୀଙ୍କ ପାଖକୁ ମତେ ବିରକ୍ତ କରନ୍ତୁ ନାହିଁ । ନ ହେଲେ କହିବେ ଦୁଃସାଧ୍ୟ ରୋଗ ଯାଆନ୍ତୁ ଏକ୍ସରେ କରେଇବେ, ରକ୍ତ ପରୀକ୍ଷା କରେଇବେ, ଝେଡ଼ ପରୀକ୍ଷା କରେଇବେ, ସେଇଠୁ କହିବେ ଯାଇ ମେଜର ପାନିକାକରେଙ୍କୁ, ସେତ ବଡ଼ ଡାକ୍ତର ।

ମୁଁ ସିନା ତାଙ୍କ ତଳେ—

ବେଦବ୍ୟାସ ହସିଦେଲା, ଏଇ ରହସ୍ୟରେ କଟିଗଲା ତାର ଗୁମ୍ ହୋଇ ରହିବା ଅବସ୍ଥା, କହିଲା,— "ଏସବୁ କହିବିତ, କିନ୍ତୁ କହିବି ବୋଲି ଆପଣ ଜାଣିଲେ କେମିତି ?"

"ବାଃ—ଜାଣିବି ନାହିଁ ? ସମସ୍ତେ ତ ସେଇଆ କହନ୍ତି ।"

"ମିଛ କହନ୍ତି କଣ ?"

ସେ ତୁନି ରହିଲା, ହଠାତ୍ ପଚାରିଲା, "ଡାକ୍ତର ବାବୁ, ଆପଣଙ୍କର କଣ ବିକାର ଅଛି ?"

"କି ବିକାର ?"

"ଆପଣ ତ ଡାକ୍ତର, ସ୍ତ୍ରୀ ଲୋକର ଦେହ ପରୀକ୍ଷା କରିବାକୁ କିଛି ଆପତ୍ତି ଅଛି ?"

"ଆପତ୍ତି ? ହଁ...ନା...ହଁ...ତେବେ ଲେଡ଼ି ଡାକ୍ତର ତ ଅଛନ୍ତି । ସେମାନେ ଆଉ ଅଛନ୍ତି କାହିଁକି ?"

ହୋ ହୋ ହୋଇ ସେ ହସି ଉଠିଲା, କହିଲା "ଆଉ ଆପଣମାନେ ଅଛନ୍ତି କାହିଁକି ? ଆଃ ଆପଣମାନେ ଡାକ୍ତର ହୋଇଛନ୍ତି କାହିଁକି ଯଦି ସାଧାରଣ ନାରୀ ଦେହଟାକୁ ନିର୍ବିକାରଭାବେ ନ ଭାବି ପାରିବେ, ଯଦି କଥାକେ ବସ୍ତ୍ରକୁ ଦେଖି ମରମଭାବ ଝରିବ ତେବେ ମଣିଷ କବିତା ନ ଲେଖି ଡାକ୍ତର ହେବ କାହିଁକି ? ତେବେ ହଁ, ଡାକ୍ତର ବି କବି ବା କବି ପରି, ସାର୍ ଟମାସ୍ ବ୍ରାଉନ୍, କାଟ୍ସ୍, ଇଭଲୋଭାଲ୍ଡ, କ୍ରୋନିନ୍, କୁନ୍ତଳାକୁମାରୀ...ହେ...ହେ...ହେ...ଡାକ୍ତର କାହା ବେକର ଟିଉମର କାଟୁ କାଟୁ ହଠାତ୍ ହେବ କବି ଆଉ ବେକଟା ଦିଗର କରି କାଟି ଥୋଇ ଦେଇ କଟା ମୁଣ୍ଡକୁ ଅନେଇଁ ଟ୍ରାଜେଡ଼ି ଲେଖିବ.....ହେ.....ହେ...ହେ... କମ୍-ଅନ୍-ମ ଖେଲ୍—ଆମି, ଏଣ୍ଟ୍ରାମିନ୍ ମ ପ୍ରାଟ୍ଫଟ୍–ଡ୍ରୋଣ୍ଡ୍ ହେଭିଂଟେଡ ।"

ହଠାତ୍ ସେ ଉତ୍ତେଜିତା ହୋଇଯାଉଛି । ମୁହଁଯାକ ଲାଲ, ଯେପରି ସେ ଜାଳି ଉଠୁଛି । ନାକପୁଡ଼ା ଫୁଲିଫୁଲି ଉଠୁଛି । ଦେହ ବିଚୋଳ ହେଲା ପରି ଗୋଡ଼ ଦିଟାକୁ ଏକାଠି ଯୋଡ଼ୁଛି, ଫାଙ୍କିଦେଉଛି । ପୁଣି ଏକାଠି ଯୋଡ଼ୁଛି, ପୁଣି ଫାଡ଼ି ଦେଉଛି । ଅଣ୍ଟା ସଳଖେଇ ଗଣ୍ଡିକି ସିଧା କରୁଛି, ପୁଣି ତଳକୁ କରୁଛି, ଧୀରେ ଧୀରେ ନାଚି ଉଠିଛି ଉପର ତଳ ହୋଇ । ତା ପରେ ବାହାରିଲା ତାର ପୁଣି 'ଓଃ', ଗୋଟାଏ ଜୋରରେ ଆଉଜି ପଡ଼ି ଆଖି ବୁଜିଦେଇ ସେ ଧକେଇ ହେଲା ।

ଏ ଯେପରିକି ଏକ ପୈଶାଚିକ ମାୟାମୁଦ୍ରା, ଯେପରିକି ଏତିକିରେ ଚହଟି ଯାଉଛି ଅତି ତୀବ୍ର ଇନ୍‌ଫେକ୍‌ସନ୍, ବେଦବ୍ୟାସର ରକ୍ତରେ ଲାଗୁଛି ତାଣ୍ଡବ ନାଚ । ଜୋରରେ ଦମ୍ଭ ଅଣିବାକୁ ଚୈତନ୍ୟ ଲଗାଇ ବିସ୍ମିତ ଖଣ୍ଡି ବେଦବ୍ୟାସ ସାମ୍ନାର ସ୍ପେସିମେନ୍‌କୁ ଅନାଇଁ ଦେଖିଲା । ତରତର କରି ଭାବି ଲାଗିଲା,—ଉଚ୍ଚ ଶିକ୍ଷିତା ପରି ଲାଗୁଛି, ଉଚ୍ଚପରି ଅବୟବ ବି ତାର ପ୍ରମାଣ, କିନ୍ତୁ କଣ ଏ ? ଏ କଣ ପାଗଳ ?

କିଛି ସମୟ ପଡ଼ିରହି ସେ ପ୍ରକୃତିସ୍ଥା ହେଲା, ଏଥର ଶାନ୍ତ ହୋଇ ରହିଲା, ଅତି ଭଗ୍ନ ଦୁଃଖିତ ମିନତିମୟ ସ୍ୱହାଣୀ ସହିତ ଧୀରେ ଧୀରେ କହିଲା—"ମୋର ବ୍ୟବହାର ଦେଖି କିଛି ମନେ କରିବେ ନାହିଁ ଡାକ୍ତରବାବୁ । ଯେତେବେଳେ ମୋର ଯନ୍ତ୍ରଣା ଅସେ ଆଉ ତାର ଆଗରୁ ପଛରୁ କଣ ଯେ ମୋର ହୋଇଯାଏ ମୁଁ ନିଜ ଆୟତ୍ତରେ ରହିପାରେ ନାହିଁ । କ୍ଲାସରେ ପଢ଼ୋଉ ପଢ଼ୋଉ ଅନେକଥର ଏପରି ହେଲା, ଚାକିରି ଛାଡ଼ିଦେଲି, ଦେଖିଲି ପାଠ ପଢ଼େଇବା ମସ୍ତବଡ଼ ବିଡ଼ମ୍ବନା ଖାଲି, ଲମ୍ବା ଛୁଟି ନେଲି, କେତେଦିନ କଟିବ ଏମିତି ? ବଞ୍ଚିବି ତ ?"

"ଆପଣ କଣ ମାଷ୍ଟର ?" କହିଦେଇ ଅପ୍ରସ୍ତୁତ ହେଲା । ରୋଗୀ ସହିତ ଦୁଃଖସୁଖ କାହିଁକି ? ଆଉ ଭଦ୍ରମହିଳାଙ୍କୁ ବ୍ୟକ୍ତିଗତ ପରିଚୟ ପଚାରିବା ଶିଷ୍ଟତାବିରୁଦ୍ଧ, ଅନେକେ ଚିଡ଼ନ୍ତି । କିନ୍ତୁ ରୋଗିଣୀ ମଧୁର ହସ ହସୁଛି, କହିଲା—

"ହଁ ମାଷ୍ଟର କହି ପାରନ୍ତି । ତେବେ ସ୍କୁଲରେ ନୁହେଁ, କଲେଜ୍‌ରେ, ମାନେ ମୁଁ ଚନ୍ଦ୍ରପୁର ନାରୀ କଲେଜରେ ଆଧୁନିକ ଇଂରେଜି ସାହିତ୍ୟ ପଢ଼ୋଉଥିଲି, ଜଣେ ଲେକଚରର । ନା, ଆଉ ଭୟ କରନ୍ତୁ ନାହିଁ, ଆଉ ଯନ୍ତ୍ରଣା ବାହାରିବ ନାହିଁ ଅଇଛା, ସେଇଟା ତାର ଖାତ ଭିତରେ ପଶିଲାଣି । ମୁଁ ବୁଝିପାରେ । ତେବେ ଆପଣ ମତେ ଭଲ କରି ଥରେ ପରୀକ୍ଷା କରନ୍ତୁ । ମୁଁ ନିଜେ ଇଚ୍ଛା କରୁଛି, ସେଥିରେ ଆପତ୍ତି କଣ ଅଛି ?"

"ବୋଧହୁଏ କିଛି ଆପତ୍ତି ନାହିଁ ।"

"ବୋଧହୁଏ ନୁହେଁ ନିଶ୍ଚୟ । ଏକ୍‌ସରେ ଫଟୋ ଦେଖାଇବି । କିଛି ମିଳିଲା ନାହିଁ । ରକ୍ତ ଝାଡ଼ାର ପରିସ୍ରା ସବୁ ପରୀକ୍ଷା ହୋଇଛି ଅନେକଥର, ରିପୋର୍ଟ ଦେଖାଇବି, ସେଥିରେ ବି କିଛି ନାହିଁ । କିଏ କହିଲା ଭିଟାମିନ୍ ବି ଖାଅ, କି କହିଲା ଖାଅ ଚ୍ୟବନପ୍ରାଶ । ଖାଇଛି ସବୁ, କିଛି ଫଳ ନାହିଁ । ଛାତି ଭିତରେ ମନଇଚ୍ଛା ଗୁଲୁଛି ସେଇଟା, ମୁଁ ନିଶ୍ଚୟ ଜାଣେ ସେ ଅଛି ସେ ଗୁଲୁଛି, ମୋର ଆୟୁଷ ଖାଇଯାଉଛି, ମୋର ଜୀବନ ବିପନ୍ନ ତ ଡାକ୍ତରବାବୁ । ମତେ ଆପଣ ଚିହ୍ନି ନାହାନ୍ତି, ମୁଁ ଆପଣଙ୍କୁ ଦେଖିଛି; ଅନେକଠି ଅନେକବେଳ ଅପେକ୍ଷା କରି ରହିଛି ମୋର ଦୁଃଖ ଜଣେଇବି ବୋଲି, ବହୁଦିନୁଁ ଆପଣଙ୍କ ଖ୍ୟାତି ଶୁଣିଛି । ଟିକିଏ ମତେ ଦେଖନ୍ତୁ ।"

"ଆଚ୍ଛା ଆପଣ ଶୁଅନ୍ତୁ ଆସି ଏ ଟେବୁଲରେ । ହଁ ଚିତ୍ ହୋଇ ଶୁଅନ୍ତୁ—" କହିବା ମାତ୍ରେ ସେ ଗୁଳ୍‌କରି ଯାଇ ଶୋଇ ପଡ଼ିଲା । ବେଦବ୍ୟାସ ତାର ତାନ୍ତ୍ରିକ ସବୁଯାକ ଗୌରବ ସମ୍ମାନ ଗାମ୍ଭୀର୍ଯ୍ୟ ଏକାଠି ଠୁଳ କରି ଆରମ୍ଭ କଲା ତାର ପରୀକ୍ଷା, ସଙ୍କୋଚ କଲା ନାହିଁ ।

ଆଗ ନାଡ଼ି ଦେଖା । ତା ପରେ ଛାତିରେ ପିଠିରେ ଷ୍ଟେଥୋସ୍କୋପ୍‌ର ଅଗ ଟେବି ଟେବି ରହି ରହି ଅପେକ୍ଷା କରି କରି ବହୁତ ବେଳ । ତାପରେ ତାର ଖାଲି ପାଦତଳରେ ଖଣ୍ଡେ ପାତିଆରେ ଆଙ୍ଗୁଡ଼ି ଆଙ୍ଗୁଡ଼ି ଗାର ପକେଇଲା, ସଲ ସଲ ଲାଗିବାରୁ ସେଗିଣୀ କିରି କିରି ହୋଇ ହସି ଉଠିଲା । ତାପରେ ସାନ ହାତୁଡ଼ିରେ ତାର ପିଗୋଡ଼ର ଗଣ୍ଠି ଠୁକେଇ ଠୁକେଇ ଟିପରେ ଶିରକୁ ଚିପି ଚିପି ଅନୁଭବ କଲା ।

"ବସନ୍ତୁ ଏଥର ।"

କିନ୍ତୁ ଏତିକିରେ ନୁହେଁ । ଜିଭ, ଦାନ୍ତ, ପାଟିର ଆଁ ଭିତର, ଯନ୍ତ୍ର ସାହାଯ୍ୟରେ ଆଖି, ଟିପରେ ଚିପି ଆଙ୍ଗୁଠି ଅଗ, ହାଡ଼ୁଆ ମୁହଁରେ ହାତ ରଖି ଆଖିତଳ, ରିଷ୍ଟଓ୍ୱାଚ୍ ଖୋଲି କାନ ପାଖେ ଧରି ପଚାରିଲା,

"ଶୁଭୁଛି ?"

"ନିଶ୍ଚୟ, କାନରେ କିଛି ଦୋଷ ନାହିଁ ।"

"ଆଉ କିଛି ?"

"ଆପଣ ଦେଖନ୍ତୁ ।"

"ମୁଁ ପଚାରୁଛି, ଆଉକିଛି ଅସୁବିଧା ଅଛି କେଉଁଠି ?"

"ନା ।"

"ଭୋକ ? ନିଦ ?"

"ଭୋକଟା ଭଲହୁଏ, ଭୋକ କଲେ ପଥର ଖାଇ ଦେବାକୁ ମନହୁଏ ।"

"ପଥର ?"

"ନା ନା, ଗୋଡ଼ି ପଥର ଦେଖିଲେ ତୁଣ୍ଡରୁ ଲାଳ ବୁହେ ନାହିଁ, ଖାଲି ଭୋକ ହୁଏ ଖାଲି, ଯଦି ଟି. ଏସ୍. ଇଲିଅଟ୍ ଧରି ବସି ପଡ଼େ ଆଉ ଚଳେଇ ଦିଏଁ କପ୍ ପରେ କପ୍ ଚା ତେବେ ଭୋକଟା ନଷ୍ଟ ହୁଏ ।"

"ଆପଣଙ୍କୁ ଏ ଉଭୟ ଛାଡ଼ିବାକୁ ପଡ଼ିବ ।"

"ଅସମ୍ଭବ । ଟି ଏସ୍ ଇଲିଅଟ୍ ମୁଁ ଛାଡ଼ିବି । ଆପଣଙ୍କୁ ଭଲ ଲାଗେ ନାହିଁ ?"

ଗମ୍ଭୀର ହୋଇ ଡାକ୍ତର କହିଲା—"ମତେ ଭଲ ଲାଗେ ମେଟେରିଆ ମେଡ଼ିକା ।"

"ହୁଃ ।"

"ଛାଡନ୍ତୁ, ନିଦ କେମିତି ହୁଏ ?"

"ମାନେ, ଡିଷ୍ଟର୍ବ୍‌ଡ୍‌ ସ୍ଲୀପ୍‌; ଡ୍ରୀମସ୍‌, ଫ୍ୟାଣ୍ଟାଷ୍ଟିକ୍‌, ମ୍ୟାକାବର,—ଯଦି ଆପଣଙ୍କୁ ମୁଁ ବୁଝେଇ ପାରନ୍ତି ମୁଁ କି କିମ୍ଭୂତ ସ୍ୱପ୍ନ ଦେଖେଁ । ବାରମ୍ବାର ନିଦ ଭାଙ୍ଗିଯାଏ ଆଉ ନିଦ ଭାଙ୍ଗିଲେ ପ୍ରକୃତରେ ଲାଗେ ବଡ଼ ବ୍ୟାଘାତ ହୋଇଛି, ଅପୂର୍ଣ୍ଣ ରହିଗଲା ।"

ବେଦବ୍ୟାସ ଜୋରରେ ମୁଣ୍ଡ ହଲେଇଲା, ଯେପରିକି ଏ ଅ' ଆ ପରି ଅତି ସହଜ । ସେ ବୁଝି ପାରୁଛି ସବୁ । ପଚାରିଲା,—

"ଗୋଟିଏ କଥା ପଚାରନ୍ତି, କିଛି ଭାବିବେ ନାହିଁ ଯଦି । ଆପଣ ବିବାହିତା ନା ଅନୂଢ଼ା ।"

"ବିବାହିତା ।ଏ ମାଁ !" ପୁଣି ଭାରି ଉତ୍ତେଜନା ଦେଖାଇଲା, କହି ପକେଇଲା, "ମୁଁ ବିଭା ହୋଇଥିଲି ଇଂରେଜି ସାହିତ୍ୟକୁ, ନ ହେଲେ ବର କାହିଁ ? କିଏ ମତେ ବିଭା ହବ ? ଗୁଡ଼ ଗଡ଼୍‌, ବିବାହିତା ।" ଏଥର ସେ ମୁହଁମୋଡ଼ି ତୁନି ତୁନି ହସିଲା, ହସିଲା ବହୁତ, ମୁହଁଟେକି ପଚାରିଲା, – କଣ ଦେଖିଲେ ?

ବେଦବ୍ୟାସ ଏଥର ତାର ବିଶାରଦ ମତ ପ୍ରକାଶ କଲା, କହିଲା,

"ଆପଣଙ୍କଠିଁ କୌଣସି ରୋଗ ଦିଶୁନାହିଁ । ସାମାନ୍ୟ ଦୁର୍ବଳତା ଅଛି । ଗୋଟାଏ ଟନିକ୍‌ ଖାଇ ପାରନ୍ତି । କିନ୍ତୁ ମୋର ମନେ ହେଉଛି ରୋଗ ଅଛି ଆପଣଙ୍କ ମନରେ, ଚେତନାରେ, ଇଚ୍ଛାକଲେ ଆପଣ କୌଣସି ସାଇକିଆଟ୍ରିକ୍‌ଙ୍କ ଚିକିତ୍ସା ନେଇ ପାରନ୍ତି । ମୁଁ ଭାବୁଛି ଆପଣଙ୍କର ଶୀଘ୍ର ବିଭା ହେବା ଉଚିତ । ବିବାହିତ ସୁସ୍ଥ ଜୀବନ, ଆଦର ଯତ୍ନ ଏଇ ଆପଣଙ୍କର ହିତ କରନ୍ତା ।"

ଥଟ୍ଟାକରି ରୋଗିଣୀ କହିଲା—"ଆପଣ ଭାବୁଛନ୍ତି ମୋର ବିଭା ହେବା ଦରକାର ? ବର ପ୍ରେସ୍କ୍ରାଇବ୍‌ କରିପାରିବେ ?"

ସେହିପରି ରହସ୍ୟରେ ବେଦବ୍ୟାସ ଉତ୍ତର ଦେଲା—"ଡାକ୍ତର୍‌ ଔଷଧ ପ୍ରେସ୍କ୍ରାଇବ୍‌ କରେ"—

"କିନ୍ତୁ ଆପଣ ? ଆପଣ ଆସି ପାରନ୍ତେ ନାହିଁ ମୋ ବସାକୁ ସଞ୍ଜବେଳେ ? ସେତେବେଳେ ମୋର ମୁଡ୍‌ ଆସେ, ଆଉ ସେଇଟା ଯାହା କହୁଥିଲି ସେ ଚାଲିବାକୁ ଆରମ୍ଭ କରେ । ଆପଣ ବିଚକ୍ଷଣ, ଆପଣ ମୋର ଅବସ୍ଥା ଦେଖି ନିଜେ ସାଇକୋ ଆନାଲିସିସ୍‌ କରିପାରନ୍ତେ", ବସାର ଠିକଣାଟା କହିଦେଲା, ଅନୁନୟ କଲା "ଆସିବେ ନାହିଁ ଆପଣ ?"

ବେଦବ୍ୟାସ ହଁ କି ନା କିଛି କହିଲା ନାହିଁ, କହିଲା 'ଦୁର୍ବଳତା ପାଇଁ ଆପଣ କିଛି କ୍ୟାମୋଲନ୍‌ ଇଞ୍ଜେକ୍‌ସନ୍‌ ନେଇ ପାରନ୍ତି"—

ଉପରେ ପଡ଼ି ସେ କହିଲା— "ଆପଣ ନିଶ୍ଚୟ ଆସିବେ । ଆପଣ ହିଁ ସେତେବେଳେ ଇଞ୍ଜେକ୍‌ସନ୍‌ ଦେବେ— କହନ୍ତୁ, ଆସିବେ ତ ?"

ମେସ୍‌ମେରାଇଜ୍‌ କଲାପରି ତାର ଆଖିକି ଅନେଇଁ ରହିଚି, ଅତି ଧୀର ସ୍ୱରରେ ବେଦବ୍ୟାସର ମୁହଁରୁ ଝଡ଼ିପଡ଼ିଲା—"ଆସିବି," ସେ ପ୍ରଫୁଲ୍ଲିତା ହୋଇ ଉଠିଲା, ପଛେଇ ପଛେଇ ତା'ର ମୁହଁରୁ ଆଖି ନ ଉଠାଇ ଦୁଆର ମୁହଁ ଆଡ଼କୁ ଚାଲିଲା, ସେଇଠି କହିଲା "ନମସ୍କାର" ।

ବେଦବ୍ୟାସ ହଠାତ୍‌ ହେତୁ ପକାଇଲା କହିଲା "ଆପଣଙ୍କ ନାଁଟା—"

"ଓ, —କହିଯାଇ ନାହିଁ ମୋର ଭୁଲ ହେଉଚି । ମୋ ନାଁ ପ୍ରୀତି ନାଏକ୍‌, ସମସ୍ତେ ଡାକନ୍ତି ଖାଲି "ପ୍ରୀ"—ଆପଣ ବି ଡାକିବେ "ପ୍ରୀ" ଏତେ ବଡ଼ ନାଁଟା ନ ହେଲେ ଷ୍ଟେବେଇ ହେବ ନାହିଁ । ନମସ୍କାର, ଆପଣ ଆସିବେ, ଆଜି" ।

ସେ ଚାଲିଯିବାର ୩ ମିନିଟ୍‌ ପରେ ସେହି ପର୍ଦ୍ଦାକୁ ଅନାଇଁ ବେଦବ୍ୟାସ ପ୍ରଥମ ଥର ଗ୍ରହଣ କଲା ଯେ ସେ ଗଲାଣି, ଆଉ ନାହିଁ । ଗୁମ୍‌ ହୋଇ ବସିରହି ଭାବିଲା ।

କ'ଣ ଏ ? କି ପ୍ରକାର କେସ୍‌ ?

ଠିକ୍‌ ଧରିଛି ହେ । ଏଠି ମିକ୍‌ସଚର୍‌ ନୁହେଁ, ପାଉଡ଼ର ନୁହେଁ, ଇଞ୍ଜେକ୍‌ସନ୍‌ ନୁହେଁ । କେବଳ ମନ ଗହ୍ୱରକୁ ବିଶ୍ଳେଷଣ କରି ମନଲାଖି ଚିକିତ୍ସା । ମନସ୍ପର୍ଶରେ ମନକୁ । କିନ୍ତୁ କାହିଁକି ଏପରି ? ଛଟପଟ ହୋଇ ଘରଯାକ ବୁଲିଲା, ପ୍ରୀତି ନାଏକ୍‌ ପରି ହୋଇ ଅଜାଣତରେ ମନେ ମନେ ଭାବିଲାଗିଲା— ତାର ବି ଛାତି ଭିତରେ କ'ଣ କେମିତି ଲାଗୁଛି । କ'ଣ ସେଠି ଚାଲୁଛି, ଡେଇଁଉଠି ମନକୁ ମନ କହିହେଲା—ସେ ରୋଗୀ ନୁହେଁ, ସେ ଡାକ୍ତର ।

କିନ୍ତୁ ଡାକ୍ତରର ଦମ୍ଭ ଡାକ୍ତରର ଅଣାୟୀ ବିଶ୍ୱାସ ପଛଆଡେ ଛପି ଛପି ରହିଗଲା ତାଠିଁ ରୋଗୀ ମନର ଆଚ୍ଛନ୍ନତା ଆଉ ଦୁର୍ବଳ ହାଇଁପାଇଁ । ଦିନଯାକ ଯେଉଁ କାମ କଲେ ବି ମନେ ମନେ ଖାଲି ପ୍ରୀତି ନାଏକ୍‌, ସାଧାରଣ ସୁସ୍ଥ ମନରେ ଜୁଆରର ଭଟ୍ଟା ପଡ଼ିଛି, ଓଟାରି ହେଉଛି ଖାଲି ସଞ୍ଜ ଆଡ଼କୁ ଯେତେବେଳେ ଯିବାକୁ ତା'ର କଷ୍ଟ ଅଛି, ଆଉ ପ୍ରୀତି ନାଏକ୍‌ ଆଡ଼କୁ । ସ୍ମରଣ ବାଟେ ସେହି ଛବି ଉପରେ ଚରିବାକୁ ସେ କେତେକେତେ ଡାକ୍ତରି ବହି ଖୋଲି ପ୍ରୀତି ନାଏକ୍‌ର ରୋଗକୁ ଭଲକରି ଭାବିବାକୁ ଚେଷ୍ଟା କରିଥିଲା, ଔଷଧ ବିଷୟରେ ଚିନ୍ତା କରିଥିଲା । କାଉନ୍ସିଲ ଛଳରେ ଅନ୍ୟମାନଙ୍କ ସହିତ ଆଲୋଚନା କରିଥିଲା ସେହିଭଳି ଗୋଟିଏ କେସ୍‌ କିନ୍ତୁ ସେହି କେସ୍‌ର ବିବରଣ ଅନ୍ୟ ପାଖେ ବର୍ଣ୍ଣନା କରିବାକୁ ବାଧା ଆଣିଥିଲା ଗୋଟାଏ ଗୋପନ ଗୋପନ ଭାବ, ଯେପରିକି ଏ ରହସ୍ୟ ଅତି ନିଭୃତ କଥା, କହିଲେ ଆପଣାର ଗୁମର ଫିଟିଯାଏ ।

କଥା ଛଳରେ ଡକ୍‌ଟର ପାନିକାକରେଙ୍କ ପାଖେ ସେ ସେହିପରି ଗୋଟିଏ ରୋଗକଥା ପକାଇ ଚର୍ଚ୍ଚା ଶୁଣିଥିଲା । ନାଁ ଗାଁ କହିନାହିଁ, ଖାଲି ଏମିତି, "ନିଉରୋଟିକ

ରୋଗୀ ମନେ ମନେ କେଉଁ ରୋଗ କଳ୍ପନା ନକରି ପାରେ ଏପରି ନାହିଁ," ଡକ୍ଟର ପାନିକାକରେ କହିଲେ, "ଆଉ ଶିକ୍ଷିତ ହେଲେ ତ କଥା ଛାଡ଼, କଳ୍ପନା ଠିକ୍ ଘଡ଼ିବାଣ ପରି ଫୁଟି ଉଠୁଥିବ ଭୁରୁଭୁରୁ ହୋଇ । ଜଣେ ଆସି ଯଦି କହିବ ମୋ ପେଟରେ ଗୋଟାଏ ଗଛ ଉଠୁଛି, ତମେ ହସିବ ନା କାନ୍ଦିବ ? କିଏ କହୁଛି ମୋ ପିଠି ଉପରେ ସବୁବେଳେ ନିଆଁ ଜଳୁଛି, ଜଣେ କହୁଛି ମୁଁ ଭୁଲ୍‌ରେ ଗୋଟାଏ ଲୁହାକଣ୍ଟା ଗିଳି ଦେଇଛି ଯେ ମୋ ପାକସ୍ଥଳୀରେ ସେଇଟା କେଞ୍ଚି ହେଉଛି, ଜଣେ ତମକୁ ବାହା ଦେଖେଇବ କହିବ ଦେଖନ୍ତୁ ମନକୁ ମନ କେମିତି ମୋ ହାତଟା ଟେକିହଉଛି ପଡ଼ୁଛି, ଏମିତି ଲାଗି ରହିଛି ଦିନଯାକ । ତମେ ସବୁ ଯନ୍ତ୍ରପାତି ଲଗେଇ ହଜାରେ ଥର ପରୀକ୍ଷା କରି ଦେଖେଇ ଦେଲେ ବି ସେ ବୁଝିବ ନାହିଁ ଯେ ତାର କ'ଣ ହୋଇଛି, ବରଂ ଜଣେ ଡାକ୍ତର ପାଖରୁ ଆଉ ଜଣେ ଡାକ୍ତର ତାଠୁ ଫେର୍ ଆଉଜଣଙ୍କ ପାଖକୁ ଏହିପରି ବୁଲି ଲାଗିଥିବ ଆପଣାକୁ ଦେଖେଇ ଦେଖେଇ । ବିଜ୍ଞାପନ ଦେଖି ମନଇଚ୍ଛା ଔଷଧ ଖାଇ ଲାଗିଥିବ ସତକୁ ସତ ଅସୁସ୍ଥ ହୋଇ ବିଛଣାରେ ପଡ଼ିବା ପର୍ଯ୍ୟନ୍ତ । ସେ କରିବ କଣ ? ତାର ବିଶ୍ୱାସ ସେ ସତକୁ ସତ ଅସୁସ୍ଥ ଯେ । ଏଥିରେ ଉପାୟ—ଦେହରେ ବଳ ବଢ଼େଇ ଦେବା, ପ୍ରଚୁର ବିଶ୍ରାମ ଦେବା, ମନଲାଖି ମିଠା କଥା କହି ଆଶ୍ୱାସ ଦେବା । କାରଣ ଏ ରୋଗଟା ଦେହର ଓ ମନର ଉଭୟଙ୍କର । ଆଉ ଯଦି ତା ନ ହେଲା, କାରଣ ଏଭଳି ରୋଗୀ ଡାକ୍ତରର ଉପଦେଶ ମାନେନାହିଁ, ଜାଣି ଜାଣି ଅକାମ କରି ଦେହ ଶୁଖାଏ ବେମାର୍ ପଡ଼େ । ତେବେ ଅବସ୍ଥା ଅସମ୍ଭାଳ, ଏଥିରୁ ଉପସର୍ଗ ପାଗଳାମି, ତେଣୁ କେବେ କେବେ ଦେଖିବ ନ୍ୟୁରେସ୍ଥେନିଆ ମାନିଆ (ପାଗଳାମି)ର ହିଁ ସୂଚନା" ।

ପ୍ରୀତି ନାଏକ୍,—ତାର ନାଁ ଗାଁ ନ ଜାଣିଲେ ବି ଅବସ୍ଥାଟା ଅତି ଖରାପ୍— ଡାକ୍ତର ପାନିକକରେଙ୍କ ମତ ଅନୁସାରେ ।

ଡାକ୍ତର ପାନିକାକରେ ବିଜ୍ଞପଣରେ ମୁଣ୍ଡ ହଲେଇ ହଲେଇ କହିଲେ— "ଅଖାଦ୍ୟ—ଆଶାଭଙ୍ଗ—ଅଶାନ୍ତି—ଅଭାବ—ଘୋର ପରିଶ୍ରମ—ଏସବୁ ମିଶିଗଲେ ନିଉରେସ୍ଥେନିଆ ଘୋଟେ, ସ୍ନାୟୁଗୁଡ଼ାକ ବିଗିଡ଼ିଯାଏ, ସେ ଅବସ୍ଥାରୁ ପାଗଳାମି ପାହାଚେ ମୋଟେ । ରୋଗର ଏସବୁ କାରଣ ପୃଥିବୀରେ ବର୍ତ୍ତମାନ ରହିଆଡ଼େ, ଭଣା ଅଧିକେ, ସୁତରାଂ ନ୍ୟୁରୋଟିକ୍ ରହିଆଡ଼େ, ସମସ୍ତେ ଭଣା ଅଧିକେ ପାଗଳ । ବେଶୀ ଋପ ପଡ଼ୁଛି ଗୃହସ୍ଥ ଘରେ ସ୍ତ୍ରୀ ଲୋକମାନଙ୍କ ଉପରେ, ଯେଉଁମାନେ ସନ୍ତାନ ଜନ୍ମ କରି କରି ଘର ପରିଶ୍ରମ କରି ଜୀର୍ଣ୍ଣଶୀର୍ଣ୍ଣ, ଏଣେ ଅଭାବ ଅଶାନ୍ତି ନୈରାଶ୍ୟ ପୂରି ରହିଛି, ତୁମେ କ'ଣ ଆଶ୍ଚର୍ଯ୍ୟ ହେବ ଯଦି ଦେଖ ତାଙ୍କ ଭିତରୁ ବାରଣା ନ୍ୟୁରୋଟିକ୍ ରୋଗୀ, କେହି କେହି ପାଗଳ ବି ? ବିଶେଷତଃ ରକିରିଆଙ୍କ ଘରେ ଘରେ ଦେଖ । ଏ ହେଲାଣି ଏକ ସାମାଜିକ ସମସ୍ୟା, ଏଣେ ସେହି ନ୍ୟୁରୋଟିକ୍ ରୋଗିଣୀମାନେ ପ୍ରେରଣା ଦେବେ ପୁରୁଷମାନଙ୍କୁ, ତାଙ୍କରି ଅଧାପାଗଳା ମତାମତ ଉପରେ ନିର୍ଭର କରିବ ଘର ଗୃହସ୍ଥମାନଙ୍କ ବିଚାର, ଶେଷରେ ସେହି ଅନୁସାରେ ସମାଜ ଚାଲିବ । ବିଭ୍ରାଟ ହେବତ, ହେଉଛି" ।

"କିନ୍ତୁ ଯେଉଁ ସ୍ତ୍ରୀଲୋକମାନେ ବିଭା ହୋଇ ନାହାଁନ୍ତି ? ଘର ଧନ୍ଦା ନାହିଁ ? ଦାୟିତ୍ୱ ନାହିଁ—?"

''ସେମାନେ ଅସଲ ନ୍ୟୁରୋଟିକ୍, ମୂଳରୁ ନ୍ୟୁରୋଟିକ୍ । ବିଶ୍ୱ ନ ହେବା ପାଇଁ କେତେକାଂଶରେ ନ୍ୟୁରୋସିସ୍ ଓ କେତେକାଂଶରେ ଆପଣା ସମସ୍ୟାହିଁ ଦାୟୀ, ବିଶ୍ୱ ନ ହୋଇ ରହିଲେ ନାନା ପ୍ରକାର ଦୁରଶା, ନିରଶା ଓ ଦୁଶ୍ଚିନ୍ତା, ଫଳରେ ଆହୁରି ନ୍ୟୁରୋସିସ୍, ଅନେକେ ତାଙ୍କ ଭିତରୁ ଅଧାପାଗଳୀ, ଖାମ୍‌ଖିଆଲୀ, ତୁମକୁ ହସ ମାଡ଼ିପାରେ, କିନ୍ତୁ ସେମାନେ ସହାନୁଭୂତିର ପାତ୍ର । ଡାକ୍ତର ଚିଡ଼ିବ ନାହିଁ, ଡାକ୍ତର ଉପହାସ କରିବ ନାହିଁ । ଡାକ୍ତର ଦେବ ସହାନୁଭୂତି, ମନ ଘେନି ଜାଣି ବୁଝି ଚିକିତ୍ସା କରିବ ।''

ଅତଏବ ଡାକ୍ତରର ସହାନୁଭୂତି ଘେନି ସେ ଠିକ୍ ସଞ୍ଜବତୀ ଲାଗିଲା ପରେ ପ୍ରୀତି ନାଏକର ଘର ହତା ଦୁଆର ମୁହଁରେ ଆସି ପହଞ୍ଚିଲା । ଏଣିକି ତେଣିକି ଗ୍ୱହିଁଥିଲା, ଦୁରୁଦୁରୁ ଛାତିରେ ଫାଟକର ଛିଟିକିଣି ଟେକି ଝଣ୍‌କରି ଛାଡ଼ିଦେଇ ଆପେ ଚମକି ପଡ଼ିଥିଲା । ହଠାତ୍ ଭିତରକୁ ପଶି ନ ଯାଇ ଟିକିଏ ଠିଆ ହୋଇ ରହି ପରିସ୍ଥିତିକୁ କଳିଥିଲା । ଓଃ, କେଡ଼େ ନିଛାଟିଆ । ସହରର ଗୋଟିଏ ପ୍ରାନ୍ତ । ଯେଉଁଠି ତୋଟା, ପଡ଼ିଆ, ବୁଦାବଣ, ଖାଲ ଓ ସନ୍ତସନ୍ତିଆ ଜାଗା ଥିଲା, ଧୀରେ ଧୀରେ ସଫା ହୋଇ କୋଠା ତିଆରି ହେଉଛି, ସହର ବଢ଼ୁଛି, ତାହାରି ଟେଷରେ ସେ । ଆଗରେ ଲମ୍ବିଯାଇଛି ଅଧାପୋତା ହୋଇ ଏକ ଖାଲ, ପାଣି ଚବର ଚବର, ହଂସଗୁଳି ଖେଳନ୍ତି । ଏଠି ସେଠି ଦି'ଟା ଗୋଟାଏ ଭଙ୍ଗା ଇଟାଭାଟି, ଆଉ ଗୋଟିଗୋଟିକିଆ ବଡ଼ ବଡ଼ ଗଛ ।

ସେହି ପଦାରେ ଠିଆ ହୋଇ ରହି ମଶା କାମୁଡ଼ା ଅନୁଭବ କରୁ କରୁ ଲାଗିଲା ଯେପରିକି ସେ ପୁରୁଣା ଜୀବନ ଓ ଆସନ୍ତା ଜୀବନ ଭିତରେ ଏକ ଘଡ଼ିସନ୍ଧିରେ ଠିଆ ହୋଇ ରହିଛି । ପୁରୁଣା ଚିନ୍ତା ଅଭ୍ୟାସ ଓ ଜୀବନ ତଡତର ଖସି ଗ୍ୱଲି ଯାଉଛି, ସେ ଏହି ଭିତରେ ପଶିବ, ଆରମ୍ଭ ହେବ ନୂଆ ଅଧ୍ୟାୟ । ହସିବ କି କାନ୍ଦିବ ଜାଣିପାରୁ ନାହିଁ । ହୁଏତ ଉଭୟଥିରୁ କିଛି କିଛି । ପୁଣି ବେଳେବେଳେ ଦେଖିଲାପରି ଲାଗୁଛି । ସବୁ ନିଷ୍ଫଳ ଆଉ ବୃଥା, ବିନା କାରଣରେ ହଟହଟା ହେବାକୁ ଏଇ ଅପନ୍ତରକୁ ତାକୁ ଖାଲି ଭୂତ ଅଡ଼େଇ ଆଣିଛି । ବାହାରେ ଭୂତର ନିର୍ଦ୍ଦେଶ, ମନ ଭିତରେ ଭୂତର ଦ୍ୟୋତନା, ଅବସ୍ଥାକୁ ସହଜ କରି ଦେବାକୁ ଜାଣତା ମନରେ ଏକ କୁତୂହଳର ପ୍ରସ୍ତାବନା ।

କିନ୍ତୁ ଠିଆ ହୋଇ ରହି ବେଶୀ ସମୟ ଭାବିବାକୁ ବେଳ ନାହିଁ । ଭିତରକୁ ଭିତରକୁ ପଶିଲା । ଦି'ପାଖରେ ଜଙ୍ଗଲ ପରି ଲଗାଲଗି ଛକାଛକି ବଗିଗ୍ୱ । ଏକାଠି ଦେଖିଲେ ଏକ ଅସଜ ଗୋଳମାଳ । ଦୂରରେ ସାମ୍ନାରେ ଗୋଟିଏ ଛୋଟ କୋଠା । ଦାଣ୍ଡଘରେ ନାଲି ଆଖି ପରି ମିଟିମିଟି ହୋଇ ଜଳୁଛି ଗୋଟିଏ ନଳ୍‌ଟଣ ।

ଆଗେଇ ଗ୍ୱଲିଛି, ଆଗେଇ ଗ୍ୱଲିଛି ।

ଆପଣାକୁ ଚିହ୍ନେଇ ଦେବାକୁ ଦରକାର ପଡ଼ିଲା ନାହିଁ । ହଠାତ୍ ବାଁ ପାଖରୁ ତା'ର ଚିତ୍କାର ଶୁଭିଲା —''ଆପଣ ଆସିଲେ ।'' ତା'ପରେ ଜଞ୍ଜିରର ଝଣ୍ ଝଣ୍ ପରି ଶବ୍ଦ ଲହରୀ । ସେ ଖଳ ଖଳ ହସ କି ନଟସ୍ୱ କାନ୍ଦଣା ଜଣାପଡ଼ୁ ନାହିଁ । ହୋଇପାରେ ସେ ମଣିଷର କଣ୍ଠସ୍ୱର କି ଜନ୍ତୁର । ସେ ଭୟ କି ଭୀତି । ଅଦ୍ଭୁତ ଅସ୍ୱାଭାବିକ ପରିସ୍ଥିତିରେ ତା'ର ମୁଣ୍ଡ ଗୋଳମାଳ ହୋଇ ଯାଉଛି । ସେହି ଚିତ୍କାର ଭିତରେ

ସଁ ସଁ ସାଇଁ ସାଇଁ ଶୁଭୁଛି । ଅଂଧାରି ଝଡ଼ପରି ଉଡ଼ିଆସି ତା'ର ବା କାନ୍ଧ ଉପରେ କ'ଣ ଯେପରିକି ଷଣ୍ଢ ଆସି ପରି ଚିପି ହୋଇ ଲାଗିଗଲା । ଅଡ଼ାଡ଼ି ହୋଇ ଓହଳି ପଡ଼ିଲା ତା'ର ଦେହ ଉପରୁ ତତଲା ତାଟପରି ବେଢ଼େଇ ହୋଇ ଯାଉଛି । ଗାଲ ପାଖ ସିଝି ଯାଉଛି ତା'ର ତତଲା ନିଶ୍ୱାସରେ ।

ଫୁସ୍‌ଫୁସ୍ କରି କହିଲା, "ଆସିଲେ !"

ଘିଡ଼ିଘିଡ଼ା କରି ଘୋସାରି ନେଲା ଘର ଭିତରକୁ । ବାଟରେ ଝୁଣ୍ଟିଲା । ଚୌକିଟାଏ ପଡ଼ିଲା, ଟେବୁଲଟାଏ ହଲି ହଲି ରହିଗଲା । ନଲ୍‌ଟଣ କଣ୍ଢି ହୋଇ ପଡ଼ିଲା ତା'ର ମିଟିମିଟି ଆଖି ନିଭିଗଲା । ତଥାପି ଓଟର ଲାଗିଛି ଆଗକୁ, ଆଗକୁ । ଅନ୍ଧାରେ ଅନ୍ଧାରେ । ଏଥର ସେ ଆପେ ଅଡ଼ାଡ଼ି ହୋଇ ପଡ଼ିଲା । ଗୋଟାଏ ଖଟ, ନରମ୍ ବିଛଣା । ଦୁଇହାତ ଛିଞ୍ଚାଡ଼ି ଦେଇ ଟାଣକରି ଧରି ପକେଇଲା ଏକ ଥରଥର ଦେହର ଦୁଇ କାନ୍ଧକୁ, ଆପଣା ସ୍ୱର ଖୋଜି ପାଇଲା, ପଚାରିଲା—"କଣ ? କଣ ?"

ଅତି ଡେରି । ଧୀରେ ଧୀରେ ଆପେ ଦବି ଦବି ଯାଉଛି । ବେଢ଼େଇ ହୋଇ ଯାଉଛି ତା'ର ଦେହଦାବ ତତଲା ତାଟପରି ତତଲା ମଣିଷର ଅବୟବ । ଗୁଡ଼େଇ ହୋଇ ଆପଣାକୁ ଗୁଣ୍ଡା କରୁଛି । ମୁଠା ଭିତରେ ଖହଡ଼ା ଗଡ଼ିଣା ମାଛ ପରି ତା'ରି ଦେହ ଉପରେ କୁଦା ମାରୁଛି ଗୋଟାଏ ମଣିଷର ଦେହ, ଛିଟ୍‌କୁଛି । ଫେର୍ ଅସୁଛି ଯାଉନାହିଁ ।

ଖାଟୋର ଖେଗିଣୀ ପଚାରୁଛି—"ଆସିଲେ ଆପଣ ? ଆସିଲେ ? ଆସିଲେ ?" ଶୁଣିବାକୁ କାନ ନାହିଁ । ଅନ୍ଧାର ଭିତରେ ସେ ଡାକ୍ତର ନୁହେଁ, ମଣିଷ ନୁହେଁ, ସଂଘର୍ଷରେ ଚେଇଁ ଉଠିଥିବା ଅନାଦି କାଳର ଅନ୍ଧ ଏମାନେ । କେତେବେଳ ପରେ,—

ସ୍ୱପ୍ନରୁ ଉଠିଲା ପରି ଠିଆ ହେଲା ଡାକ୍ତର ବେଦବ୍ୟାସ । କିଟି କିଟି ଅନ୍ଧାର । ଠିଆ ହୋଇ ହୋଇ ଅନ୍ଧାରକୁ ଚାହୁଁ ଚାହୁଁ ଦୁଆର ମୁହଁ ଚାରିହେଲା, ତାର ଆଲୁଅରେ ଯେଉଁଠି ଅନ୍ଧାର ଫିକା ପଡ଼ିଛି । ମନ ଥୟ ପଡ଼ୁ ନାହିଁ । ସ୍ଥାନ ଓ କାଳର ଧାରଣା ଆସୁନାହିଁ । ସବୁ ଅବାସ୍ତବ ଆଉ ଅନ୍ଧାର । କ୍ରମେ ଲାଗିଲା ଯେପରି ସେ ଡାକ୍ତରଖାନାରେ ହିଁ ଅଛି । ଷନୁମତୀ ମନେ ପଡ଼ିଲା । ସଙ୍ଗେ ସଙ୍ଗେ ତାର କ୍ଷୀତକ ଦୁର୍ବଳ ଦେହ ଭିତରେ ସେ ଉଷୁମ ବଳର ତେଜ ମାଡ଼ିଯିବା ଅନୁଭବ କଲା । ତାପରେ ସେ ଭାବିଲା କଣ ସେ କରୁଛି ? ଆଲୁଅ କାହିଁ ?

ବାସ୍ତବ ପରିସ୍ଥିତିକୁ ଚେଇଁ ଉଠୁ ଉଠୁ ପାଟିକଲା,—

"ଅନ୍ଧାର କାହିଁକି ? ଆଲୁଅ ଅଣ ।"

ଆପଣା ସ୍ୱର ଆପଣାକୁ ଦମା ଶୁଭିଲା । ଲାଜ ମାଡ଼ିଲା । ଉତ୍ତର ନାହିଁ । ବେଦବ୍ୟାସ ଆପଣାକୁ ଝାଙ୍କେ ଦେଇ ଫେରି ପାହୁଣ୍ଡ ଆଗେଇଲା । ଝୁଣ୍ଟିଲା ଆପଣାର କୋଟ୍‌କୁ । ତଳେ ପଡ଼ୁ ପଡ଼ୁ ଗୋଟାଏ ଚୌକି ପିଠିରେ ଲାଖି ରହି ଓହଳିଛି । ତାର ପକେଟ୍‌ରୁ ଟର୍ଚ୍ଚ କାଢ଼ି ମାରି ଦେଖିଲା । ଚାରିଆଡ଼େ ଓଲଟ ପାଲଟ ଯେପରିକି ଏକ

ଯୁଦ୍ଧ ଘଟି ଯାଇଛି 'ଏ ଘରେ, ଗୋଟିଏ ଖଟ ଉପରେ ପଡ଼ି ରହିଛି ଏକ ଦେହଯଷ୍ଟି । ଚମକି ପଡ଼ିଲା । ମୁହଁ ଉପରେ ଆଲୁଅ ପକେଇଲା । ତାର ଆଖି ବୁଜି ରହିଛି । ନାଲି ରଙ୍ଗବୋଳା ଓଠ ଦିପାଳ ଅଳ୍ପ ଆଁ ହୋଇ ରହିଛି ।

ଆପଣା କପାଳରୁ ଝାଳ ପୋଛି ନେଲା । ଷ୍ଟେଥସ୍କୋପ୍ ଧରି ଗୋଟିଏ ଗୋଟିଏ କରି ଆରେଇଲା । ଖଟର ଦାଣ୍ଡରେ ବସି ପଡ଼ି ଗମ୍ଭୀର ହୋଇ ଡାକିଲା—

"ପ୍ରୀତି ଦେବୀ ।"

ଉତ୍ତର ନାହିଁ । ଷ୍ଟେଥସ୍କୋପର ଚକ୍ତି ଧୀରେ ଧୀରେ ବଢ଼େଇ ନେଲା ତାର ଛାତି ଆଡ଼କୁ, ଆପେ ନଇଁ ପଡ଼ିଲା । ହଠାତ୍ ବେଗିଣୀ ଦୁଇବାହା ଟେକି ଏକାଠି ଯୋଡ଼ିବାକୁ ଚେଷ୍ଟା କଲା, ବେଦବ୍ୟାସ ଚମକି ପଡ଼ି ଷ୍ଟେଥସ୍କୋପ ଉଟାରି ନେଲା । ଟର୍ଚ୍ଚ ନିଭେଇ ପଦାକୁ ବାହାରିଗଲା । ବାହାରେ ପାହାଚ ପାଖେ ଏକ ଭେଟେଣାର ଚମକ,—ଜଣେ କିଏ ବସିଥିଲା, ଠିଆ ହୋଇ ପଡ଼ିଲା । ଆଲୁଅ ପକେଇବାରୁ ଆଖି ମିଟି ମିଟି କଲା । ସେ ଜଣେ ମଝ୍‌ବୁଡ୍ ବୁଢ଼ାଳିଆ ଲୋକ, ବଡ଼ ବଡ଼ ନିଶ ଉହଳି ପଡ଼ିଛି । କହିଲା—"କିଏ ସେ, ଡାକ୍ତରବାବୁ ପରୁ ?"

"ହଁ ମୁଁ ଡାକ୍ତର ।"

"କେତେ ଡାକ୍ତରତ ଗଲେଣି କେତେ ଫେର୍ ଆସିବେ, କାହାକୁ କି ମାଉଁସ ଭଲ ଲାଗେ ଆମ ଦେଇଙ୍କି ଖାଲି ଡାକ୍ତର, ଖାଲି ଡାକ୍ତର, ହେଃ ହେଃ—" । ସେ ବାହାରେ ବାହାରେ ଘର ପଛକୁ ଚାଲିଗଲା । ଅନ୍ଧାରରେ ପ୍ରେତର ଅଟ୍ଟହାସ ପରି ଶୁଭିଲାରିଲା ତାର ଫମା ହସ ।

ବେଦବ୍ୟାସ ଚାଲିଗଲା ।

ଡର ମାଡ଼ିଥିଲା ।

ଭାବିଥିଲା ସେ ଆଉ ଯିବ ନାହିଁ ।

ତହିଁ ଆରଦିନ ସକାଳୁ ଡାକ୍ତରଖାନାକୁ ପୁଣି ସଂଖୋଳି ଆସିଲା ପ୍ରୀତି ନାଏକ । ଏଥର ଅଧିକାର ଭାରି କଲାପରି ଅଳିରେ ଅଳିରେ ।

ସେଦିନ ସଞ୍ଜରେ ପୁଣି ସେ ଯାଇଥିଲା ଓ ଫେରିଥିଲା । ତା ପରଦିନ ପୁଣି ପ୍ରୀତି ନାଏକ ଆସିଥିଲା, ପୁଣି ବେଦବ୍ୟାସ ଯାଇଥିଲା । ଏମିତି ଅନେକଥର, ଅନେକ ଦିନ । ତାର ଜୀବନରେ ପ୍ରୀତି ନାଏକ ଗୋଟିଏ ବିଶିଷ୍ଟ ଅଂଶ ହୋଇ ଉଠିଥିଲା ।

ଏକଥା ସେ ଅନୁଭବ କରିଥିଲା, ଭାବିନାହିଁ ।

କିନ୍ତୁ ଅନ୍ୟମାନେ ଲକ୍ଷି ଦେଖିଥିଲେ ।

ଆଉ ପହୀର ଲଭେ ଲଭି ଲଭି ବୁଝିଥିଲା ଭାନୁମତୀ । ଭାନୁମତୀ କଠୋର ଦାୟ ଉପରେ ହିଁ ଧାରଣା ଉପୁଜାଏ, ନାରୀକୁ ସେ ଧାରଣାରେ ବୁଝିବାକୁ ବେଦବ୍ୟାସ ଅଭ୍ୟସ୍ତ ନୁହେଁ । ଭାନୁମତୀକୁ ଭଲ ପାଉ ପାଉ କେତେବେଳେ ପ୍ରେମ ପରିବର୍ତ୍ତେ ଖାଲି ପ୍ରଶଂସା ଓ ସମ୍ମାନ ଦେବାକୁ ଆରମ୍ଭ କରି ସେ ତା ଠୁଁ ଦୂରକୁ ଅପସରି ଗଲାଣି ସେ ଭାବି ପାରିନାହିଁ । କ୍ରମେ ତା ବି ଗଲା । ଆଉ ଦେଖା ହିଁ ହୁଏନାହିଁ । ଦେଖା ହେଲେ ସେ କାମରେ ଗ୍ଲଲିଯାଏ । ତଭରେ ହଠାତ୍ କାର୍ଯ୍ୟବ୍ୟସ୍ତ ହୋଇ ଏ ଏଆଡେ ସେ ସିଆଡେ ଗ୍ଲଲିଯାଆନ୍ତି । କେବେ ସେ ତାର ନାଁ ଧରିବା ଛାଡ଼ି "ନର୍ସ, ସବୁ ଭଲ ତ" କହିବାକୁ ଆରମ୍ଭ କଲାଣି ସେ ଖିଆଲ କରି ନାହିଁ । ସଞ୍ଜରେ ପ୍ରୀତି ନାଏକର ଘରକୁ । ସେରିଣା ତାର ତତ୍ତ୍ୱାବଧାନରେ ଚେପରିକି ଟିକିଏ ସୁସ୍ଥ ହୋଇ ଆସୁଛି ବୋଲି ତାର ଭ୍ରମ ହୁଏ । ସେ ଲାଜ ଲାଜ ହୋଇ ମିଠାହସ ହସେ । ଗ୍ଲହା କରିଦିଏ, ଆପଣା ଜୀବନ କଥା ଗପେ । ଫଟୋ ଦେଖାଏ । ଡଳଖିଆ ଦିଏ, କେଉଁ କେଉଁଦିନ ତା ସଙ୍ଗେ ଥିଏଟର ବାଇସ୍କୋପ୍ ଦେଖିବାକୁ ବି ଯାଏ, ସେଠି ଅସ୍ୱାଭାବିକ ହୁଏ ନାହିଁ ।

ଭାନୁମତୀ ଶୁଖି ଯାଉଛି । ତାର ଆଖିରେ ଯେପରି କଣ ଅଭାବ ଅଛି । ତାର ସ୍ୱାଭାବିକ କ୍ଷିପ୍ରତା ଭିତରେ ଯେପରିକି ନିଜକୁ ଟାଣି ଓଟାରି ପୂର୍ବପରି ଚଢ଼ିବା ପାଇଁ ଏକ ଉଦ୍ୟମ ଚିହ୍ନ ପଡ଼ିଯାଇଛି । କ୍ରମେ ସେ କଳିଆ କରୁଛି, ଡିଉଟିର ବାଣ୍ଟ ବିଷୟରେ ଅନ୍ୟ ନର୍ସଙ୍କ ସଙ୍ଗେ କଳିଆ, ବେହେରା ସଙ୍ଗରେ ଅପଡ଼ । ଧୀରେ ଧୀରେ ଏଣିକି ସେ କଳିଆ ମଝିରେ ବଡ଼ ପାଟିରେ ଆପଣା ବଡ଼ିମା ବି ମଝିରେ ମଝିରେ ବଖାଣି ବସିଲାଣି, ଇତର ଲୁଭେ ।

ଡାକ୍ତର ବେଦବ୍ୟାସ ଭାନୁମତୀର ଏ ପରିବର୍ତ୍ତନର ଖବର ରଖେ ନାହିଁ । କିନ୍ତୁ ଭାନୁମତୀ ବେଦବ୍ୟାସର ସବୁ ପରିବର୍ତ୍ତନର ଖବର ରଖେ ।

ଭଲ ପାଇବା ତାର ପେଷା ନୁହେଁ, ପେଶା କେବଳ ନର୍ସପଣିଆ, ସ୍ୱାଧୀନ ରହି ଆପଣାକୁ ପୋଷିବାକୁ, ସେ କାମିକା ମଣିଷ । ସେହି କାମ ଭିତରେ ବିନା ଡକରାରେ ଆସି ପହଞ୍ଚିଥିଲା ବେଦବ୍ୟାସ, କଥାରେ ବ୍ୟବହାରରେ ବିଶ୍ୱାସ ଜନ୍ମେଇ ଥିଲା ଯେ ସେ ହିଁ ହେବ ତାର ଜୀବନର ଆଶ୍ରା, ବିଧିନିର୍ଦ୍ଦିଷ୍ଟ । ଭାଗ୍ୟର ଉଗାରି ଏତେଦୂର ତାର ବିଶ୍ୱାସ ଥିଲା । ତେଣୁ ଭାଗ୍ୟର ଅଯାଚିତ ବଞ୍ଚପଣ ଦେଖି ଆଦୌ ସେ ଆଶ୍ଚର୍ଯ୍ୟ ହେଲା ନାହିଁ । ତା ଅଭିଜ୍ଞତାରେ ଭାଗ୍ୟ ଚିରଦିନ ହିଁ ଅପ୍ରତ୍ୟାଶିତ, ଓଲି ଘେନି କୋଳି ତେଲାତଣି ଘେନି ଚକୁଳି ଖାଲି ମଣିଷର ହେତୁବାଦର ଦାମ୍ଭିକତା, ରୋଗୀ ସେବା କରି କରି ଧାଡ଼ି ଧାଡ଼ି ହୋଇ ବିଛଣାରେ ହତାଶ ରୋଗୀ ପୁଞ୍ଜା ପୁଞ୍ଜା ଦେଖି ଦେଖି ତାର ଏ ଆପଣା ଜୀବନଗତ ଧାରଣା ବାହାରୁ ବଳପାଇ ଅଟଳ ହୋଇ ରହିଥିଲା ।

କିନ୍ତୁ ପ୍ରେମ ଆସିଥିଲା । ତିଦିନର ଛଳନାରେ ଭୁଲି ସେବି ମିଛକୁ ସତ ବୋଲି ମଣିଲା, ଅନିଶ୍ଚିତକୁ ନିଶ୍ଚିତ ବୋଲି ଘେନିଲା, ତାହାରି ଉପରେ ଗଢ଼ିଗଲା ଭବିଷ୍ୟତକୁ ସ୍ୱପ୍ନର ବ ଲିଘର, ଆଉ ଠିକ ଯେତିକି ବେଳେ ସେ ହେଲା ତାର ଜୀବନର ସମୁଦାୟ ଅବଲମ୍ବନ ଯେ ବିନା ନୋଟିସରେ ଭୁଷୁଡ଼ି ପଡ଼ିଲା, ଜୀବନରେ ରଖିଗଲା

ଖାଲି ପମ୍ପା ସ୍ମୃତି । ସେ ତାକୁ ତାକୁ ଡକେ । ଭାନୁମତୀ ଦେଖିଲା ତାର ଅପବାଦ ତ ସାର ହୋଇଛି, ବେଦବ୍ୟାସ ଗଲାଣି ପ୍ରୀତି ନାଏକ ପଛେ ପଛେ ଯେତେବେଳେ ପରାଗ ବିଞ୍ଚା ଭଅଁର ପରି ପୁରୁଷ ସ୍ୱଭାବରେ ନାରୀ ପ୍ରତି ସ୍ନେହର ବ୍ୟାଖ୍ୟା ତାକୁ ସାନ୍ତ୍ୱନା ଦେଇ,ପାରି ନ ଥିଲା । ସାନ୍ତ୍ୱନା ଦେଉଥିଲା ସମୟ, ସେ ସବୁ ଭୁଲେଇ ଦିଏ ।

କିନ୍ତୁ ପୁଣି ସେଦିନ ବେଦବ୍ୟାସ ଅସିଥିଲା ଚିନ୍ତା ଡୋରରେ ଗଣ୍ଠି ପକେଇବାକୁ । ତିନିଦିନ ହେବ ପ୍ରୀତି ନାଏକ ସକାଳେ ସଞ୍ଜୋଳି ଅସି ନାହିଁ । ବେଦବ୍ୟାସର ବି କାମ ଭିଡ଼ । ଗୋଟାକୁ ଗୋଟା ପେନିସିଲିନ୍ କେସ୍ । ତିନି ଘଣ୍ଟାରୁ ବେଶୀ ଫୁରୁସତ୍ ନାହିଁ । ସେଦିନ ସକାଳେ ହଠାତ୍ ସେ ଦେଖି ପକେଇ ଥିଲା ନର୍ସ ଭାନୁମତୀକୁ, ଏପରି ବେଳାରେ ଯେତେବେଳେ ମନର ଭଳାବଡାଟ ଖୋଲା ଥାଏ । ତା ପରେ ଆପଣା ବଖୁରିରେ ବସି ସେ ଭାବିଥିଲା । ଅବ୍ଶୋଷ ଆସିଥିଲା । ଏ ତାର କଣ ହେଲା ? କେତେଦିନ ହେବ ସେ ଭାନୁମତୀକି ପଚାରି ବି ଯାଇନାହିଁ ? କାହିଁକି ହଠାତ୍ ବନ୍ଧନ ସୃଷ୍ଟ ହୁଏ ପୁଣି ହଠାତ୍ ଯାଏ ଭାଙ୍ଗି ? ଭୁଲ କାହାର ? ନା ଏ ମଜା ଦେଖାଳି କେଉଁ ଅଲକ୍ଷ୍ୟ ଦେବର ନିରଖିଆ ପାହାର ? ମନେ ମନେ ସେ ସୁସ୍ଥ ସବଳ କର୍ମପଟୁ ନର୍ସ ଭାନୁମତୀ ସହିତ ନିଉରୋଟିକ୍ ରୋଗିଣୀ ଖାମ ଖିଆଲୀ ପ୍ରୀତି ନାଏକକୁ ତୁଳନା କରି ଦେଖିଥିଲା । ପ୍ରୀତି ନାଏକର ତିନିଦିନ ଅଦର୍ଶନରେ ଆପଣା ଚେତନାରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହୋଇଥିଲା ତାକୁ ପୂର୍ଣ୍ଣ କରିବାକୁ ଭାବନାକୁ ବଳେଇ ନେଇ ସେ ବାଟ ମୁହଁରୁ ହିଁ ଖେଳି ଖେଳି ବିଟୋଳ ଲାଗିଥିବା ଖେଳେଣା କଣ୍ଢେଇ ପୋପାଡି ଦେଲା ପରି ପ୍ରୀତି ନାଏକର ସ୍ମୃତିକୁ ପୋପାଡ଼ିମାରି ସବୁ ହୋଇ ହସିଥିଲା ଏକ ସୁବିଧାବାଦୀର ହସ ।

ଆଉ ଛାଇ ଲେଉଟାଣି ବେଳେ ଅସ୍ତ ଯାଉଥିବା ସୂର୍ଯ୍ୟର ରଙ୍ଗିଣୀ ଶୋଭାରେ ଉତ୍ଫୁଲ୍ଲ ପ୍ରଲୁବ୍ଧ ପ୍ରକୃତିର ରୂପକ ପରି ଭାନୁମତୀ ରହିବା ଘର ସାମ୍ନାରେ ପହଞ୍ଚି ହସି ହସି ପଚାରିଥିଲା—"ମତି, ଗୃହା କପେ ଦେବନାହିଁ ? ଓଃ ବହୁତ ଦିନୁ ମଣିଷ ତମ ହାତରୁ ଚା' ଖାଇ ନାହିଁ । ଓଃ, ଯୋଉ କାମ ! ଧନ୍ୟ ବାବୁ ଡାକ୍ତରେ ଜୀବନ । ଟିକିଏ ଫୁରସତ୍ ନାହିଁ ତମ ପାଖକୁ ବି ଅସିବାକୁ ।"

ମନସ୍ଥ କରି ଆସିଥିଲା, ଉଦାର ହୋଇ ହିସାବୀ ଲୋକପରି ଅଳି ସେକଥା ପକେଇ ଠିକଣା କରିନେବ—"ମତି, ଆମର ବିଭାହେବା, ମୁଁ ଡାକ୍ତରକୁ ତୁମେ ନର୍ସ, ଆମେହିଁ ଗଢ଼ିବା ନୂଆ ଯୁଗ, ନୂଆ ଦୁନିଆଁ । ସଂସାରରେ ଅନେକ ରୋଗୀ, ଅନେକ ଟଙ୍କା, ଚାକିରୀ କରି ପର ହାତର ଫଳ କମ ହେବାକୁ ମୋର ଇଚ୍ଛା ନୁହେଁ । ଆମେ ବି ଡାକ୍ତରଖାନା ଖୋଲିବା, ହୋମ୍ ଖୋଲିବା ।"

କିନ୍ତୁ ଭାନୁମତୀ ହୋମ୍ ଖୋଲିବାକୁ ସୁବିଧା ଦେଲା ନାହିଁ । ହଠାତ୍ ସେ କଇଁ କଇଁ ହୋଇ କାନ୍ଦି ଉଠିଲା । ଅସମ୍ଭାଳ ହୋଇ ଉଠିଲା ତା'ର ଶୋକ । ସେହି କାନ୍ଦଣାରେ ସେ କହିଲା "କାହିଁକି ଅସିଲେ ମିଛରେ ମାୟା ଲଗେଇବାକୁ । ଯାଆନ୍ତୁ ଆପଣଙ୍କ ପ୍ରୀତି ନାଏକ ଅପେକ୍ଷା କରିଥିବ । ତା'ର ରୋଗ ଭଲ କରୁଛନ୍ତି ପରା ଆପଣ । ମୁଁ ରୋଗିଣୀ ନୁହେଁ ।"

ସେହି କାନ୍ଦଣା ଭିତରେ ଟାଇଁ ଟାଇଁ ହୋଇ ବାଜି ଉଠିଲା ତା'ର ବିଦାୟ ଘୋଷଣ, ଖାଲି ଯାଉନ୍ତୁ—ଯାଉନ୍ତୁ''—

ଆଉ ଦି'ଫାଳି କବାଟ ଆଉଜି ହୋଇ ଆସିଲା ଧୀରେ ଧୀରେ । ମଝିରେ ଅସହାୟ ହୋଇ ମରଣ କାନ୍ଦୁ କାନ୍ଦୁ ସେ ।

( ୧୫ )

ତା'ରେ ଏକା ପ୍ରୀତି ନାଏକ ।

ଆପଣାକୁ ପ୍ରବୋଧ ଦେଇଥିଲା, ତା' ନାଖି ନୁହେଁ ସାମାନ୍ୟ ଗୋଟାଏ ନର୍ସ—କିନ୍ତୁ ପ୍ରୀତି ନାଏକ୍,—ସେ ଏମ୍. ଏ. ସେ ଅଧ୍ୟାପିକା । ତା' କଥା ସ୍ୱତନ୍ତ୍ର ।

ପହିଲି ଦେଖାଦିନ ତା' ବିଷୟରେ ଯେଉଁ ବିରୋଧୀ ଭାବ ଆସିଥିଲା କ୍ରମେ ମୋହରେ ପଡ଼ି ସେ କାହିଁ ଭାଙ୍ଗି ହୋଇ ଲୁପି ହୋଇ ଗଲାଣି । ବେଦବ୍ୟାସ ଭୁଲି ଗଲାଣି ତେବେ ସେ ଆଶ୍ଚର୍ଯ୍ୟ ହୋଇ ଆଁ କରି ତା'କୁ ଚାହିଁଥିଲା । ଭାବିଥିଲା ବିଧାତାର ସେ ଏକ ବିଡ଼ମ୍ବନା । ତା'ର ରୋଗ କଥା ଭାବୁ ଭାବୁ କେବଳ ଆପଣା ଦେହର ଗୋଟାଏ ଗୁପ୍ତ ଉତ୍ତେଜନାରେ ତା' ଘରକୁ ମାଡ଼ିଯାଇ ଥିଲା । ଉଦ୍ଦେଶ୍ୟ ରଖି ନୁହେଁ । ପ୍ରବୃତ୍ତି ଉପରେ କୁତୂହଳ ପୁଣି ତା' ଉପରେ ସହାନୁଭୂତିର ଖୋଳ ପିନ୍ଧି । କୋଟ୍ ଉପରେ କୋଟ୍ ପିନ୍ଧି ବାହାରେ ଲୋକହସା ହେଲେ ବି ଭିତରେ ବେଶ୍ ଉଷୁମ୍ ଅନୁଭବ କରି ଆତ୍ମବିଶ୍ୱାସରେ ଭରଦେଇ ବୁଲିଚାଲି ଯାଇଥିଲା ଖାଲି ଏମିତି ।

ତାର ସେ ବ୍ୟକ୍ତିତ୍ୱ ସେଇଠି ସରିଛି । ସେଇଠି ଭିଣାଭିଣା ହୋଇ ଯାଉଛି ଉପରର ଅନେକ ଆବରଣ, ତାର ନୂଆ ବ୍ୟକ୍ତିତ୍ୱରେ ନୂଆ ଆଖି । ସେଥିରେ ପ୍ରୀତି ନାଏକ୍ ସେତେ ମନ୍ଦ ଦିଶେ ନାହିଁ । ଯାହା ଆଗେ ଲାଗୁଥିଲା ତାର ନିର୍ଲଜ୍ଜତା ବୋଲି ଏବେ ଲାଗୁଛି ସେ ତାର ଅଦରବୋଳା ଗେହ୍ଲାଳିଆମି, ସେହି ତାର ଅଖଳା ସ୍ନେହ ଯାହା ଆଉ ଦଶ ଜଣଙ୍କଠୁଁ ତାକୁ ସ୍ୱତନ୍ତ୍ର ଦେଖାଏ । ତାର କଥାଗୁଡ଼ିକ କେତେ ମାର୍ଜିତ ଓ ଆଧୁନିକ ଶୁଭେ । ତାର ସ୍ୱାସ୍ଥ୍ୟ ସେତେ ଆଖି ଦରଶା ନ ହେଉ ପଛେ, ଆଶା ଅଛି ପରେ ତା ଦେହରେ ମାଉଁସ ଲାଗିବ । ଏବେ ବେଳେ ସବୁ ଯୁକ୍ତି ତା ସପକ୍ଷରେ, କାରଣ ଆଉ କେହି ନାହିଁ । ପୁରୁଷ ଆଖିକି ଯୁବତୀର ଦୋଷ ଦିଶେ ନାହିଁ । ପ୍ରୀତି ନାଏକ ଆଉ ଯାହା ହେଉ, ବୟସ ନିର୍ବିଶେଷରେ ତଥାପି ସେ ଯୁବତୀ ।

ଚାରିଦିନ ସେ ଆସି ପାରି ନାହିଁ । ବେଦବ୍ୟାସ ବି ଯିବାକୁ ବେଳ ପାଇନାହିଁ । ଚାରି ଦିନର ଅଦର୍ଶନରେ କ୍ଷୁଧା । ଅନୁମତୀ ଗଲା । ମନେ ପଡ଼ିଲା ସେ କ୍ଷୁଧିତ । ତା ପରେ ଦିନେ ସଞ୍ଜ ଆଗରୁ ସେ ଯାଇ ପହଞ୍ଚିଲା ।

ଖଣ୍ଡେ ଦୂରରେ ଠିଆ ହୋଇ ଘର ଆଡ଼କୁ ଚାହିଁଲା, ଆଉ ଆପଣା ଅନ୍ତର ଭିତରୁ ହସ ଉଠି ଆସିଲା । ସେ ଜାଣି ଜାଣି ଆନନ୍ଦ ପାଇଁ ଆସିଛି, ବେଳ ବହୁତ ଅଛି, ତରତର ନାହିଁ, ଏମିତି ଆନନ୍ଦଟାକୁ ସେ ଚାରିଆଡ଼ୁ ଚାଟି ଚାଟି ଚାଖି ଚାଖି ଉପଭୋଗ କରିବ ।

ଯେଉଁ ଦୂରରେ ଠିଆ ହୋଇ ବେଦବ୍ୟାସ ସିଗାରେଟ୍ ବାହାର କଲା । ଆଉ ମନେ ମନେ ସିଗାରେଟ୍ ଧୂଆଁ ପିଉ ପିଉ ଭାବିଗଲା ଆପଣା ସାଫଲ୍ୟର କାହାଣୀ ।

ଜୀବନ ଅତି ସରଳ,—ସେ ଭାବୁଥିଲା,—ଅତି ଗଭୀରକୁ ନ ବୁଡ଼ିଲେ ହେଲା,—ଏହି ସିଗାରେଟ୍ ଧୂଆଁ ପରି ଜୀବନକୁ ଘେନି ପାରିଲେ ଫୁଙ୍କି ପାରିଲେ ଆଉ ଦୁଃଖର କାରଣ ନାହିଁ । କ୍ଷତି ଘୁମରି ନ ଅଟକିଲେ ହିଁ ହେଲା । ଦୁନିଆଁରେ କାନ୍ଦଣା ବହୁତ, ଥରେ ବୁଡ଼ିଲେ ଲୁହର ଲୁଣି ସମୁଦ୍ରରୁ ଉଠିବା ଅସମ୍ଭବ । ବରଂ ଆପଣା ଭାବନାକୁ ଠିକଣା ବାଟେ ଯୋଖି ପାରିଲେ ପ୍ରତି ନିମେଷରେ ଜୀବନ ସୁନ୍ଦର, ସୁଖକର, ଦୂରରେ ଛବି ପରି ଦିଶୁଛି ପ୍ରୀତି ନାୟକର ଘର, ଆଉ ସେଠି ଅଛି ଆନନ୍ଦ । ତାର ଲାଜ ନାହିଁ, ଡର ନାହିଁ, ସମାଜ ପ୍ରତି ଭ୍ରୂକ୍ଷେପ ନାହିଁ, କେଉଁ କଥାକୁ ପରୱା ନାହିଁ । ଖାଲି ସେ, ଆଉ ତାର କେତୋଟି ଖିଆଲ, ତାର ମନ ମାତି ଚଳନ୍ତି, ସେ ଯାହା ଭାବୁ ନିଜ ଉପାୟରେ ସେ ନିଜର ବିକାଶ କରିପାରୁଛି, ଆଉ ଅଛିତ ବେଶ୍,—ଖାତିରି କାହାକୁ ?

ପ୍ରୀତି ନାୟକ୍ ଦୂରରୁ ସ୍ମରଣରେ ଦିଶିଲା ଗୋଟିଏ ଅଦ୍ଭୁତ ସୁନ୍ଦର ବଣଜନ୍ତୁ ପରି, ସେ କେବଳ ତାରି ପୋଷା ମାନିଛି, ଆଉ ସମସ୍ତଙ୍କୁ ବଣ୍ୟ । ପ୍ରଶଂସା କରିବାକୁ ତା ଠିଁ ଅନେକ ଗୁଣ ସେ ପୁଣି ଆବିଷ୍କାର କଲା । ନିଜ ସୌଭାଗ୍ୟରେ ନିଜେ ଉଲ୍ଲାସ ଅନୁଭବ କଲା ।

ସିଗାରେଟ୍ ଖଣ୍ଡକ ଶେଷ କରି ଗ୍ରିଅରର ଖୋଲରେ ଭାବନା ଭର୍ତ୍ତି କରି ବେଦବ୍ୟାସ ଆଗେଇ ଚାଲିଲା ସେହି ଚିହ୍ନା ଘର ଆଡ଼କୁ । ଆପଣା ଭିତରେ ଗୁଞ୍ଜି ମାରିଲା ଉତ୍ପ୍ରେକ୍ଷା, ଆରମ୍ଭ ହୋଇଥିଲା ଠିକ୍ ଏହି ସମୟରେ, ଠିକ୍ ଏହି ସ୍ଥାନରେ, ତେଣୁ ଏତିକି ବେଳେ ଏହି ସ୍ଥାନରେ ତାର ଅନ୍ତର ଭିତରେ ଠିକ୍ ସେହିପରି ତୃଷ୍ଣାର ଆବେଗ, ଆଉ ଠେଲି ନେଇ ଚାଲେ ଠିକ୍ ସେହି ଦୁଆର ମୁହଁ ଆଡ଼କୁ । ଜୀବନର ସେହି ବିଶିଷ୍ଟ ପର୍ଯ୍ୟାୟରେ ଭାସି ଚାଲିଛି ବେଦବ୍ୟାସ ।

—ଡାକ୍ତର ନୁହେଁ, ଯନ୍ତ୍ର ଯୁଗର କାମନା କ୍ଷୁଧିତ ଭିକ୍ଷୁକ ଭାସି ଚାଲିଛି ସୁବିଧା ମାର୍ଗରେ ।

ଦୁଆର ମୁହଁରେ ବୁଢ଼ା ଚାକର । ନିଶ ଝୁଲେଇ ଦେଇ ସେ ଯେପରିକି ଠିଆ ଠିଆ ସ୍ୱପ୍ନ ଦେଖୁଛି । ବେଶ୍, ସବୁ ସେଠି ଏକପ୍ରକାର, ସବୁ ଆଶ୍ଚର୍ଯ୍ୟ ପ୍ରକାରେ ଉଦ୍ଭଟ, ଗଭୀର ମନର ଅରଣା ପ୍ରବୃତ୍ତି ପରି । ସବୁ ସତେକି ଏକା ଢଙ୍ଗର, ଏକା ସମୟରେ ଏକା ପ୍ରକାର ଆଲୁଅରେ ଏମାନଙ୍କ ଅବସ୍ଥିତି । ବାହାରେ ସେ, ଭିତରେ ସେ, ମଝିରେ ବେଦବ୍ୟାସ । ଆପଣା ଭିତରେ ତୋଫାନର ରଡ଼ ରଡ଼ ଶୁଭୁଛି । କାନରେ ଶୁଭୁଛି ଆପଣା ରକ୍ତର ଗର୍ଜନ । ଅଟକିବାକୁ ତର ସହୁନାହିଁ ।

ବୁଢ଼ା ଚାକର ମୁହଁ ବୁଲେଇ ଟିକିଏ ହସିଦେଲା । ବେଦବ୍ୟାସ ଅପେକ୍ଷା କଲା ନାହିଁ, ଭୁଷ କରି ଘର ଭିତରକୁ ପଶିଗଲା ।

ଅନ୍ଧାର ଭିତରେ କଣ ଯେପରି ଶବ୍ଦ ଶୁଭୁଛି, ମଣିଷର ଅତି ଆଦିମ ତଦ୍ଗତ ଭାଷା, ବ୍ୟାକରଣର ନୁହେଁ, କେବଳ ଭାବ ପ୍ରକାଶ ପାଇଁ ଇଂଗିତ ଦେବ । ମାଟିଆ ଉଗୁଡ଼ା ହେଉଛି । ମାଟିଆ ଭର୍ତ୍ତି ହେଉଛି ।

ଅନ୍ଧାର କଥା କହୁଚି ।

ବେଦବ୍ୟାସ ଟର୍ଚ୍ଚ ଲାଇଟ୍ ମାରିଲା, ସଙ୍ଗେ ସଙ୍ଗେ ତାର ସ୍ୱର ଓ ଘାଗଡ଼ା ସ୍ୱର-ମିଶି ଚିତ୍କାର ଶୁଭିଲା,—"କିଏ । କିଏ ।"

ଥରି ଥରି ତା ହାତରୁ ଟର୍ଚ୍ଚ ଖସି ପଡ଼ିଲା । ତଳେ ଗଡ଼ି ଗଡ଼ି ତଥାପି ଜଳି ଲାଗିଲା ସାନ ଟର୍ଚ୍ଚଟି, ଆଉ ବେଦବ୍ୟାସ ତଳକୁ ମୁହଁ ପୋତି କାଠପରି ଠିଆ ହୋଇ ରହିଲା । ଘର ଭିତରେ କଳରବ ଉଠିଛି, ତାର ଡେଣିକି ଖିଆଲ୍ ନାହିଁ ।

ଅଭିଭୂତ ହେଲା ପରି ମନେ ମନେ ଧ୍ୟାନ କରୁଛି ଗୋଟିଏ ଛବି, ପ୍ରକାଣ୍ଡ ଆକାର ଡାକ୍ତର ରମ୍‌ଜାନ୍ ଆଲି ଠିଆ ହୋଇ ରହିଛନ୍ତି । ତାଙ୍କର ବାହୁ ଉପରେ ଆଉଜି ଢଳି ପଡ଼ିଛି ପ୍ରୀତି ନାଏକ୍, ରମ୍‌ଜାନ୍ ଆଲିଙ୍କ ବିଖ୍ୟାତ କଳା ଦାଢ଼ି ତା ମୁହଁ ଉପରେ ଓହଳି ପଡ଼ିଛି ।

ଭାବନା ଉଭେଇ ଗଲା କାନ୍ଧ ଉପରେ ପ୍ରଚଣ୍ଡ ଝାଙ୍କରେ । ଦୁହେଁ ତାକୁ ଆକ୍ରମଣ କରିଛନ୍ତି । କଣେ ଝାଙ୍କୁଛି, ହଲୋଉଛି, ମୋଡ଼ୁଛି, ଆଉ କଣେ ବଣ ବିଲେଇ ପରି ଛିଣ୍ଡୋଉଛି, ଆଞ୍ଚୁଡ଼ୁଛି, ଓଟାରୁଛି । ଆଉ ତୁମୁଳ ଗର୍ଜନ, ତାର ଭାଷା ବିଗିଡ଼ିଛି, ଭାବ ପରିସ୍ଫୁଟ ।

ଝିଙ୍କା ଓଟରା ହୋଇ ସେ ପଦାକୁ ଆସିଲା, ବୁଢ଼ା ଗୃହକର ଅତି ତତ୍ପର ହୋଇ ହୋଇ ଆଣି ଥୋଇ ଦେଇଗଲା ଏକ ଲଣ୍ଠନ । ସଙ୍ଗେ ସଙ୍ଗେ ସମ୍ଭାଷଣ ଆରମ୍ଭ ହୋଇଗଲା ।

"ଡକ୍‌ଟର୍ ରମ୍‌ଜାନ୍ ଆଲି ।"

"ଡକ୍‌ଟର୍ ବଜବନ୍ତରାୟ । ଆପଣ ଏଠି କୁଆଡ଼େ ।"

"ଏ ମୋର ରୋଗୀ ଯେ ଡକ୍‌ଟର୍ ରମ୍‌ଜାନ୍ ଆଲି, ବହୁଦିନୁ ଚିକିତ୍ସା ଚଳେଇଛି—"

"ସେଇଥି ପାଇଁ ବୋଧେ କେସ୍‌ଟା ଟ୍ରାନ୍‌ସଫର ହୋଇଗଲା ମୋ ପାଖକୁ", ଡକ୍‌ଟର୍ ରମ୍‌ଜାନ୍ ଆଲି ହୋ ହୋ ହୋଇ ହସି ଉଠ ହାତ ବଢ଼େଇ ଦେଲେ, କହିଲେ, "ଆସନ୍ତୁ, ହାତ ମିଳାନ୍ତୁ । ଆପଣ ଅତି ପିଲା, ଅତି ସରଳ, ତହିଁରେ ଅବିବାହିତ, ଏସବୁ ସାଇକୋଲଜିକାଲ ରୋଗ ଭଲ କରିବାକୁ ଦରକାର ତ ଡାକିବେ ରମ୍‌ଜାନ୍ ଆଲିକୁ ।" ଗରିଲା ପରି ଛାତି ଫୁଲେଇ ଗମ୍ଭୀର ଶବ୍ଦ ବାହାର କଲେ । ବିକଟ ହସ ହସି କହିଲେ, "ଆଜିକାଲି ଏ ମହରଗ ଦିନେ ଅଣ୍ଡା ଗୃହିଣୀ ନିକା କରିପାରେ । ଅପଉଠି ନାହିଁ । ମାନେ ଗୋଟାଏ ନର୍ସ, ଗୋଟାଏ ପୂଝାରି, ଗୋଟାଏ ଗୃହରକ୍ଷୀ, ଗୋଟାଏ ଆୟା, ଏତକ ହେଲେଣି । ଆଉ ଗୋଟାଏ କିରାନି ଓ ଗୋଟାଏ ଟାଇପିଷ୍ଟ ହେଲେ ବି ଚଳିବ । ରମ୍‌ଜାନ୍ ଆଲି ହାତମୁଠା କରି ମୁଖି ଉଠାଏ ତ ବଣ ବିଲେଇ ବି ଅପେ ପୋଷା ମାନେ ।"

ପ୍ରୀତି ନାଏକ କେତେବେଳୁ ଘର ଭିତରେ ଅନ୍ଧାରରେ ଛପିଛି । ରମ୍‌ଜାମ୍ ଆଲିଙ୍କ ରହସ୍ୟ ମଝିରେ ତାର ଆକୁଳ ଚିତ୍କାର ଶୁଭିଲା "ଡାକ୍ତର ବାବୁ, ଫେର୍ ସେଇଟା

ଚାଲିଲଣି, ଉଃ—ଆଃ—ଦେଖିବେ ଆସନ୍ତୁ" ଚଞ୍ଚଳ ହୋଇ ବେଦବ୍ୟାସ ପୂର୍ବ ଅଭ୍ୟାସ ଅନୁଯାୟୀ ଦୁଆର ମୁହଁ ଆଡ଼କୁ ପାଦେ ମୋହିଲା କି ଡାକ୍ତର ଚମ୍‌ଚାନ୍ ଅଳି ତାର ହାତ ପାପୁଲିକି ବଜ୍ର ମୁଷ୍ଟିରେ ଧରି ପକେଇ ଝାଙ୍କି ଦେଇ କହିଲେ—"ହଉ ନମସ୍କାର ଆପଣ ଯାଆନ୍ତୁ । ମୁଁ ଠିକ୍ ପରୀକ୍ଷା ଆରମ୍ଭ କରିଥିଲି ତ ଆପଣ ପହଞ୍ଚି ଗଲେ । ଯାଉନ୍ତୁ" । "ହଁ ଯାଉଚି ଯାଉଚି" କହି ତର ତର ହୋଇ ଭିତରେ ପଶି ଧଡ଼୍‌କିନା କବାଟ କିଳିଦେଲେ ।

"ବାବୁ" ।

ସେହି ବୁଢ଼ା ଚାକର ଡାକୁଛି ।

"ଲଣ୍ଠନ ଧରି ଫାଟକ ଯାକେ ବାଟ ଦେଖେଇ ଯିବି ?"

ବେଦବ୍ୟାସ କିଛି ନ କହି ଫାଟକ ଆଡ଼େ ଧପାଳି ଗଲା । ସବୁଦିନେ ବୁଢ଼ା ଚାକର ମୂକଥାଏ । ଆଜି ମୁଖର ଯେତି ସଙ୍ଗେ ସଙ୍ଗେ ଭିଡ଼ି ଚାଲିଲା । ଉପରେ ପଡ଼ି କହିଲା "ଆପେ ପାଗଳୀ, ସମସ୍ତିଙ୍କୁ ପାଗଳ କରେ । ମଣିଷ ଧରି କଣ୍ଢେଇ ଖେଳ ଖେଳେ, କେଉଁଟାକୁ କିଛିଦିନ କୁଣ୍ଢେଇ ଧରେ ତା ପରେ ଫଚି ଫୋପାଡ଼ି ଦିଏ । ଦିଆଡ଼ୁ ଦିଟା କଣ୍ଢେଇ ଗୋଟେଇ ଧରି ମୁଣ୍ଡକୁ ମୁଣ୍ଡ ଠୋକାଠୋକି ଲଗାଏ । ଆପେ ଜଳେ, ଦୁନିଆରେ ନିଆଁ ଲଗାଏ । କି ସୁଖ ପାଏ ?

ପ୍ରାୟ ଦୁଇଶ ହାତ ଦୂରତା ପରେ ବେଦବ୍ୟାସ ଏ ଅଯାଚିତ ସହାନୁଭୂତି ଆଗରେ କାଳ ହୋଇ ରହି ପାରିଲା ନାହିଁ । କଅଁଳ ହୋଇ କହିଲା "ତୁମେ କେତେ ବର୍ଷ ହେବ ଏଠି ଚାକିରୀ କରୁଛ ବୁଢ଼ା ?"

"କଣ କହିଲେ ? ଚାକିରୀ । ବୁଢ଼ା ।" ବିକୃତ ହୋଇ ସେ ହସିଦେଲା, କହିଲା,—"ବୁଢ଼ା ନୁହେଁ ମୁଁ, ବୟସ ମୋଟେ ପଇଁଚାଳିଶ । ଆଉ ଚାକର ବି ନୁହେଁ—ମାନେ ଦରମା ନିଏ ନାହିଁ । ମୁଁ ଥିଲି ତାର ଅଭିଭାବକ ଓ ଗୁରୁ । ମୁଁ ପେନ୍‌ସନ୍ ପ୍ରାପ୍ତ ଶିକ୍ଷକ ଅଜ୍ଞା, ଯଦିଚ ବର୍ତ୍ତମାନ— ଖାଲି ଦ୍ୱାରପାଳ—ହେଃ— ହେଃ—ହେଃ—ଦ୍ୱାରପାଳ,—ଗେଟକିପର ଏଟ୍ ହେଲ୍‌ସ୍ ଗେଟ୍,—ଏ ପଥର ପରିଣତି ଠିକ୍ ଏତିକି ଦୂର, ଥରେ ଏ ପୋଷ୍ଟ୍‌ରେ ମୁକରିର୍ ହେଲେ ଆପେ ଆଖି ବୁଜେଇ ପଡ଼ିବ, ଓହ୍ଲେଇବ ଅକାଳ ବାର୍ଦ୍ଧକ୍ୟ ।"

ବେଦବ୍ୟାସ ଭଦ୍ରତା ରକ୍ଷି ନମସ୍କାର ବି କରି କହି ପାରିଲା ନାହିଁ । ଏକାଠରେ ବୁଲି ପଡ଼ି ଦୂର୍ ପଳା, ଦୂର୍ ପଳା ।

( ୧୬ )

ସେ କଣ ଭଲ କଲା ?

ବେଦବ୍ୟାସ ଭାବୁଛି । ଠିଆ ଠିଆ ମୂର୍ଚ୍ଛା ଗଲା ପରି ମଟର ଉପରେ ଆଉଜି ରହି ଅତି ତର ତର ହୋଇ ଭାବି ଯାଉଛି ।

ଅତୀତଟା ଦିଶି ଯାଉଛି,—ଭୁଲର ମାଳା, ସବୁଯାକ ଏକାଠି ହେଲେ ବି ଭୁଲ୍ । ଗୋଟା ଗୋଟା ତ ଭୁଲ୍ ହିଁ । ମଣିଷ ଗୋଟାଏ ଭୁଲ୍‌ରୁ ଆଉ ଗୋଟାଏ ଭୁଲ୍‌କୁ ଗତି କରି କରି ଆସି ପହଞ୍ଚିଛି ଏତେ ବାଟ । ତେଣୁ କଣ ତାର ପରିଣାମ ଏହି ଦୁଃଖ ?

ବୁଢ଼ା ବାପ ଚିଡ଼ି ଧରି ଚିଠି ଲେଖିଥିଲେ,—"ବୟସ ହେଲା ଏଥର ବା' ହ' ନ ହେଲେ ଦେହ ଯା'କୁ କିଏ ଦେଖିବ ? ଘର ସମ୍ଭାଳିବ କିଏ ? ଅଣ୍ଡିରା ଚଣ୍ଡିଗ ଘର କରଣା କଲେ ସବୁ ଉଡାଡ଼ି ପକାନ୍ତି, ମନେ ମନେ ନିଜକୁ ଭାବନ୍ତି ଭାରି ବୁଧିଆ ବୋଲିଆ । ଘରକୁ ଲକ୍ଷ୍ମୀ ନ ଆଣିଲେ ମଣିଷ ରହେ ଅଲକ୍ଷଣା ହୋଇ, ତୁମେ ଯେତେ ପାଠ ପଢ଼ ଶାସ୍ତ୍ରର କଥା ବେଦର ଗାର, ନଇଲେ ପାଇବ ପଛକୁ ବାପା, ଆମେ ନଥିବୁ, ଆପେ ବୁଝୁଥିବ । ନେଢ଼ିଗୁଡ଼ କହୁଣୀକି ବୋହି ଯାଉଥିବ । ଆଉ ବାଟ ନଥିବ । ଓଥରର ବସିବା ଜାଗା ବି ଅପବିତ୍ର । ତମେ ଦେଖିବ, ତମର ଏ ପାଠ କି ଟଙ୍କା କି ସହରିଆ ନାଁ କିଛି ଶାନ୍ତି ଦବ ନାହିଁ, ପ୍ରାଣ ହାକୁ ହାକୁ ହେଉଥିବ, ବୁଧି ବଣା ହେଉଥିବ, କେଉଁ କଥାରେ ହେଲେ ମନ ଲାଗିବ ନାହିଁ ।"

ବାପାଙ୍କ କଥାରେ ସେ କାନ ଦେଇନାହିଁ ।

ସେ ବି ବକି ବକି ତୁନି ପଡ଼ନ୍ତି ।

ଆଜ ଭାବୁଚି, ସେ ବି ଭୁଲ୍, ତାର ସବୁ ଭୁଲ୍ । ଏଇତ ପ୍ରେମ । ହୁଏତ ତା' ଆଡୁ ଭାଙ୍ଗିଛି ନହେଲେ ଆର ପଟରୁ ଭାଙ୍ଗିଛି । କିନ୍ତୁ ସୌଖିନ୍ ପ୍ରେମ ଭାଙ୍ଗିଛି ଠିକ୍ ଚ୍ଛହା ପାତ୍ର ପରି । ଭାଙ୍ଗିଛି ନିଶ୍ଚୟ । ତେଣୁ ପ୍ରେମ ପ୍ରେମ ନ ଭାବି ସେ ଯଦି ବାହା ହୋଇଥାନ୍ତା ତେବେ ହୁଏତ ଶାନ୍ତିରେ ଥାନ୍ତା । ପୁଣି ଭାବୁଛି,—ଏପରି ଭାବିବା ବି ଭୁଲ୍ । ପ୍ରେମର ଦୋଷ କ'ଣ ? ଭାନୁମତୀ ରାଜି ଥିଲା, ଆଡେ଼ଇ ଗଲା ସେ ନିଜେ । ପ୍ରୀତି ନାଏକ୍ ମୂଳରୁ ଥିଲା ସେହିପରି, ତା'ର ଜାଣିବା ଉଚିତ ଥିଲା । ତଥାପି ଯଦି ପ୍ରୀତି ନାଏକ୍ ଆଡ଼କୁ ସେ ମୋହିଲା ତେବେ ସେହି ଗୋଟାଏ ଧକ୍କା ସମ୍ଭାଳି ନେଇ ରମଜାନ୍ ଆଲି ଚ୍ଛଲିଥିବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ ହୁଏତ ସବୁ କୈଫିୟତ୍ ଦିଆ ଘେନା ସରି ଯାଇଥାନ୍ତା ଓ ଅବସ୍ଥା ସୁଧୁରି ଯାଇଥାନ୍ତା । ଯଦି ତା' ବି ନ ହେଲା ତା ହେଲେ ଶେଷରେ ତ ଥିଲା ଟୁନି । ଆଉ ଭାବି ହେଲାନାହିଁ । ବାରମ୍ବାର ଲାଗିଲା— ସେ ନୁନିକି ଯେପରି ଭଲ ପାଇଥିଲା । ଆଉ ଏପରି ଭାବେ କାହାକୁ ଭଲପାଇ ନଥିଲା । ଭଲ ପାଇବ ବି ନାହିଁ ।

ପାଗଳ ପରି ଲାଗୁଛି । ଆଉ ମନ ଦମ୍ଭ ମାନୁ ନାହିଁ । ବାହାରେ ନିକର୍ତ୍ତବ୍ୟ । ଭିତରେ ନିସ୍ତେଜ ଲାଗୁଛି ବଡ଼ି ବଡ଼ିକା, ତଣ୍ଟି ଶୁଖେଇ ଶୁଖେଇ ପାଟିକି ଉଠି ଆସୁଛି ତାଡ଼ି, ପାଟି ଲୁଣି ମାରି ଯାଉଛି । କପାଳ ମଝିରେ ଅଗ୍ନିଏ ଗରମ ହୋଇ ଯାଇ ମୁଣ୍ଡ ଚ୍ଛରିଆଡୁ ତାଉ ବିଛେଇ ଦେଉଛି, ମୁଣ୍ଡ ଭିତରେ ଅସହ୍ୟ ଯନ୍ତ୍ରଣା । ଓଠ ଗୁଟି ଗୁଟି ତରତର ହୋଇ ଭାବୁଛି,—

କ'ଣ ହେଇଯାଉଛି ତାର ? ଚ୍ଛରିଆଡ଼େ ଏତେ ଲୋକ ଯେ । କଣ ଭାବିବେ ସେମାନେ ? ଡାକ୍ତର ବେଦବ୍ୟାସ ବଳବନ୍ତରାୟ ପାଗଳ । ପାଗଳ ।

ଅତଳରେ ଚମକି ଉଠିଲା ମନ । ମନେ ପଡ଼ିଲେ ପାଗଳ ଲୋକମାନେ । ସେ କଣ ଏ ଭଦ୍ର ସମାଜରେ ପାଗଳ ହୋଇ ଗଡ଼ିବ, ନାଚିବ, ଗୀତ ବୋଲିବ, କାମୁଡ଼ି ଗୋଡ଼େଇବ, ଢେଲା ଫୋପାଡ଼ିବ, ପିନ୍ଧା ଲୁଗାକୁ ଖିଣ୍ଡା ଖିଣ୍ଡା କରି ଚିରିବ ?

ନା—ନା—ସେ ପାଗଳ ହେବ ନାହିଁ । ବରଂ ମୃତ୍ୟୁ ଭଲ, ପାଗଳ ହେବା ନୁହେଁ ।

ଶେଷ ମୁହୂର୍ତ୍ତରେ ଆତ୍ମରକ୍ଷା ପାଇଁ ଆପଣାଠିଁ ଥିବା ପ୍ରକୃତିର ଡ଼ାକ ଯେପରିକି କାନରେ ବାଜିଛି । ଆଉ ସେ ନେଉଟି ଆସୁଛି । ଧୀରେ ଧୀରେ ପରିସ୍ଥିତି ପ୍ରତି ସେ ସଚେତ ହେଉଛି । ଆଖି ଫାଡ଼ି ଫାଡ଼ି ଚାରିଆଡ଼େ ଚାହିଁ ଦେଖୁଛି,—ଲୋକେ ବସିଛନ୍ତି କି ବୁଲୁଛନ୍ତି, ଠିଆ ଠିଆ ମୁହାଁମୁହିଁ ଗପ କରୁଛନ୍ତି । ତାଙ୍କ ଉପରୁ ସେ ନୂଆ ପ୍ରେରଣା ଖୋଜୁ ନାହିଁ ଲୋଡ଼ୁ ନାହିଁ, କିନ୍ତୁ ବାହାରକୁ ଚାହିଁ ଆପଣା ମନ ବଳ ସଞ୍ଚୁଛି—ଯେ ସଂସାର ଦମ୍ଭ ଅଛି, ଭାଙ୍ଗି ପଡ଼ି ନାହିଁ, ସେ ବି ଦମ୍ଭ ଅଛି । ପାଗଳ କୁହିଁତ । କି ଭୟାନକ ସେ ଅବସ୍ଥା । ମନକୁ ମନ ଟାଣ କରି କହି ଲାଗିଛି, ଶୁଣୁଛି ସେ । ଶୁଣୁଛି ତାର ଆତ୍ମା, ଆଉ କେହି ଶୁଣୁ ନାହିଁ । ମୁଣ୍ଡ ଭିତରେ ଓଲଟ ପାଲଟ ବନ୍ଦ ହୋଇ ଦପ୍ ଦପ୍ କରି ଖାଲି ଇଞ୍ଜିନ୍ ଚାଲିଲା ପରି ଲାଗି ରହିଛି ଗୋଟାଏ ଧାରାବାହିକ ସ୍ପନ୍ଦନ, ଝାଳ ବୋହି ଯାଉଛି । ଏଥର ସେ ଆପଣାର ଦେହକଷ୍ଟ ଅନୁଭବ କରି ପାରୁଛି, ଆଉ ପରିଣାମ କଳି ଆପଣାକୁ ବୁଝେଇ ଲାଗିଛି—ଏମିତି ତ ମଣିଷ ପାଗଳ ହୁଅନ୍ତି, ଭାବନା ଉପରେ ଗହନ ମନ ଓ ଚିଆଁ ମନ ମଝିରେ କବାଟ ଯାଏ ଭାଙ୍ଗି, ମନ ଗହ୍ୱରର ଉଚ୍ଛୁଳା ଅରଣା ଭାବନା ପଦାକୁ ବାହାରି ବିପ୍ଳବ ସୃଷ୍ଟି କରେ । ସେହି ଉଦ୍‌ଭଟ ପ୍ରଶ୍ୱାଶ ଭଙ୍ଗୀରେ ପାଏ ରୂପାନ୍ତରିତ ସାଫଲ୍ୟ, ସେହି ଅବସ୍ଥାରେ ସ୍ଥିର ହେବେ । କ୍ରମେ ଭାବୁ ଭାବୁ ଆହୁରି ହୋସ୍ ଆସିଲା, ଗହଳି ଭିତରେ ଗୋଟି ଗୋଟି କିଆ ମୁହଁ ବାରି ହେଲା, ସେମାନଙ୍କ ସହିତ ଆପଣା ସମ୍ପର୍କ ମନେ ପଡ଼ିଲା । ନିତି ଚଳନ୍ତି ସମାଜରେ ସେହି ସମ୍ପର୍କର ସମ୍ବନ୍ଧଗତ ମୂଲ୍ୟ କିଛି କିଛି ଅନୁଭବରେ ଆସିଲା, ଦ୍ୱିତୀୟ ଚମକରେ ଦୋହଲି ଗଲା ଏଇଆ ଭାବି,—

ସେ ବ୍ୟବହାରରେ ଭୁଲ କରି ନାହିଁତ ? ଲୋକେ କଣ ଭାବୁଥିବେ ? ହେଇ କେତେବେଳୁ ତ ସେ ଆସିଲଣି, ଏ ପର୍ଯ୍ୟନ୍ତ କାହା ସଙ୍ଗେ ଭଲ କରି କଥା କହି ନାହିଁ ।

ଲୋକେ କଣ ଭାବୁଥିବେ ?

ଲୋକେ କଣ ଭାବୁଥିବେ ?

ହୁଏତ ଆପଣା ମୁହଁର ଛବିରେ ସେ ସବୁ ମନୋଭାବ ପଦାରେ ପକାଇ ଦେଇ ସାରିଛି । ଓଃ କି ଲଜ୍ଜାର କଥା । ତତ୍ପର ହୋଇ ଚାଲିଯାଇ ସେ ପହିଲେ ଯାହାଙ୍କୁ ଆଗରେ ଦେଖିଲା ତାଙ୍କୁ ହିଁ ଅତି ଆନନ୍ଦ ଦେଖାଇ ଦଣ୍ଡବତ ହେଲା ।

ଗଦାଧର ବାବୁ । ବୟସ୍କ ଲୋକ । ମୁଣ୍ଡ ମଝିରେ ବେଶ ଅସାଏ ଚନ୍ଦା । ଥଳଥଳ ପେଟ, ବାତଜ୍ୱରରେ ଗୋଟିଏ ପାଦ ଖୁବ୍ ଫୁଲିଯାଇ ସେହିପରି ରହିଛି । କୌଣସି ଅଫିସରେ କିରାଣି ଥିବା ଲୋକ ନୁହନ୍ତି ।

କିନ୍ତୁ ତାର ଗଦ୍‌ଗଦ୍ ନମସ୍କାର ଓ ବିନୟ ସ୍ୱରରେ ନଇଁପଡ଼ି ଅପେକ୍ଷା କରି ରହିଥିବା ଭଗୀଙ୍କୁ ଗଦାଧର ବାବୁ ଅପ୍ରସନ୍ନ ହୋଇ ଅନାଇଁ ରହିଲେ, କିଛି ନ କହି ଅନ୍ୟଆଡ଼େ ବାଟ କାଟି ଗଲେ ।

ବେଦବ୍ୟାସ ଚିନ୍ତିତ ହେଲା, ଗମ୍ଭୀର ହୋଇ ତାଙ୍କ ପିଠି ଆଡ଼କୁ ଅନେଇଁ ରହିଲା । ଲୋକଟାର ନାଁ ମନେ ପଡ଼ୁନାହିଁ, କିନ୍ତୁ ସେ ଯାଙ୍କୁ ଚିହ୍ନିଛି ତ' କେଉଁଠି ଦେଖିଛି ।

ସେ ଚିହ୍ନି ପାରିଲେ ନାହିଁ, ନା କଣ ?

ନା ମନରେ ଆଉ କିଛି ଭାବିଲେ ?

ଧନ୍ଦି ହେଉ ହେଉ ଫେର ମନେ ପଡ଼ିଲା,—ତାକୁ ସ୍ୱାଭାବିକ ହେଲାପରି ଦେଖାଇବାକୁ ହିଁ ପଡ଼ିବ । କାଳେ ଲୋକେ କି ଧାରଣା କରିଛନ୍ତି ତାଙ୍କୁ ଦୂର କରିବାକୁ ପଡ଼ିବ ।

କିନ୍ତୁ ଅତି ଘନିଷ୍ଠ ଲୋକଙ୍କୁ ଏଡ଼ି ଏଡ଼ି ନଚଳିଲେ ସେମାନେ ଖୋଳି ତାଡ଼ି ଏଣୁ ତେଣୁ ପଚାରି ପାରନ୍ତି ।

ବେଦବ୍ୟାସ ଜାଣି ଶୁଣି ମୁହଁରେ ଏକ କୃତ୍ରିମ ହସର ଭଙ୍ଗୀ ଫୁଟାଇ ପାରିଲା । ଦାନ୍ତ ଉପରୁ ଓଠକୁ କୁଞ୍ଚେଇ ନେଇ ହସକୁ ସେଠି ଚିରସ୍ଥାୟୀ କରିବାକୁ ଚେଷ୍ଟାକଲା । ସେହି ଏକ ଠାଣିରେ ସମସ୍ତିଙ୍କ ଆଡ଼କୁ ଅନେଇ ଅନେଇ କାହାରିକି ପ୍ରକୃତରେ ନ ଅନେଇ ଭାସି ଚାଲିଲା ଜନସ୍ରୋତରେ—ଆପଣା ଧନ୍ଦାରେ ବିଭୋର ଅଥଚ ସମାଜରେ ସଭ୍ୟତାର ଦାସ ହୋଇ ସେହି ଦାସତ୍ୱର ଉର୍ଦ୍ଦି ପିନ୍ଧିଲା ପରି ପଦାକୁ ଦେଖାଇ ଲାଗିଛି ଖାଲି ଗୋଟାଏ ହସର ଖୋଳପା ।

ଭୁଲି ଲାଗିଛି ସେ । ଅଥଚ ହସ ମୁହଁ ବଦଳୁ ନାହିଁ । ମୁହଁ ହସୁ ନାହିଁ । ଆଖି ହସୁ ନାହିଁ, ପ୍ରାଣରେ କାନ୍ଦଣା ହିଁ ।

ତଥାପି ଦାନ୍ତ ଦେଖାଇଲା ପରି ଗୋଟାଏ ହସର ପ୍ରେତ ଛାଇ, ଅଥଚ ଭୁଲି ଗଲାଣି ତାକୁ । ମନ ଭିତରେ କାରଣ ଖୋଜି ଖୋଜି କଳ୍ପନାରେ ଆପଣାକୁ ଦିବାକର ପଳେଇଠି ଯୋଖି ନେଉଛି । ଭାବୁଛି,— ସେ ବି ହୋଇଥାନ୍ତା ସେହିପରି । କଳ୍ପନାରେ କଳ୍ପନାରେ ବଳର ପ୍ରବାହ ଆସୁଛି, ଭାବୁଛି,—ସହଜ ଥିଲାତ ! ଟୁନିର ନିଷ୍ପେ ମନଥିଲା, ତୁଚ୍ଛ କଥା ଠୁଁ ଆହୁରି ପରିସ୍ଫୁଟ ଥିଲା ତାର ଗୁହାଣିର ନିବେଦନ । ଦୁହିଁଙ୍କ ମନରେ ଥିଲା ଏକ ଉଦ୍ଦେଶ୍ୟ । ଅଥଚ ପେଟରେ ଓଦାକନା ଦେଇ ଲୋକ ଦେଖାଣିଆ ଧଳା ହସ ହସି ଭଦ୍ରତାର ଭେକ ପିନ୍ଧି କଟେଇ ଦେଉଛି ସମୟ । ଗାର ଡେଇଁ ନାହିଁ । ତ୍ୟାଗ ଦେଇ ନାହିଁ, କାହାରିଠୁଁ ମୁଳେଇ ନାହିଁ ଗାଳି, ମନ ଭିତରେ ଏତେ ବଡ଼ ତୋଫାନ ମନେ ମନେ ମାରିଛି । ଅଥଚ କେତେ ସରଳ ଥିଲା ବାଟ । ସଂସ୍କାରକୁ ନ ଅନେଇଁ ଟୁନି ସହିତ ପରାମର୍ଶ କରି ଦୁହେଁ ଏକାଠି ବାହାରି ଯାଇ ବିଭା ହୋଇ ପାରିଥାନ୍ତେ, କାହାଣୀ ଗଢ଼ି ପାରିଥାନ୍ତେ, କେତେ କଣ କରି ପାରିଥାନ୍ତେ । ଟାଣୁଆ ଲୋକ କାମ କରିଯାଏ । ତା ଉତ୍ତାରୁ ଚଳେ ସମାଜ ତାକୁ ଚଳେଇ ନେବାକୁ ଯୁକ୍ତି ସଜାଇ ଆଗେଇ ଆସେ । ଏତେ ବଡ଼ ନାଟକ ଗଲା ଖାଲି ମନେ ମନେ । ପରିଣତି ହେଲା ବେଳକୁ ଟ୍ରାଜେଡ଼ି ହିଁ କେବଳ ।

ଦୁର୍ବଳତା,—ଅକ୍ଷମଣୀୟ ଦୁର୍ବଳତା ।

ତହିଁକି ସାନ୍ତ୍ୱନା ନାହିଁ ।

ହୋ' ହୋଇ ଲୋକେ ଉଠିଲେଣି ।

କାରଣ ଏଥର ଭୋଜନ ବଢ଼ା ହେଲାଣି ।

ସମସ୍ତେ ପୂର୍ବ ଅବସ୍ଥାଠୁଁ ଅଧିକ ଚଞ୍ଚଳ, ଖୁସି ଅଛନ୍ତି । ଭୋଜନବେଳ ହେବାରୁ ଜନ୍ତୁର ଉଲ୍ଲାସ ।

ହୋଇ, ପ୍ରାୟ ଠେଲା ଠେଲି ହେଲପରି ସେମାନେ ହାତ ଧୋଇବାକୁ ଯାଉଛନ୍ତି । ଆସନରେ ବସିବାକୁ ଯାଉଛନ୍ତି । ଦେଖୁ ଦେଖୁ ସମସ୍ତେ ବସି ପଡ଼ିଲେ । ଆରମ୍ଭ ହେଲଣି ଭୋଜିର କଳରବ ।

ଏତେ ଥାକର ମନ, ଏତେ ଜାତିର, ଏତେ ରୁଚିର । ଭୋଜନର ଆଦିମ ସାମ୍ୟରେ ଦିଶୁଛି,—ସମସ୍ତେ ଏକାପରି । ଆପେ ଭାଗ ନ ଦେଉଣୁ ପର ଭୋଗ କରୁଛି ଦେଖି ତାକୁ ଲାଗୁଛି ସେ ଅପ୍ରାତିକର ବର୍ବରତା ହିଁ ଦେଖୁଛି, ଦେଖୁଛି ମଣିଷର ପଶୁପଣ । ନଷ୍ଟସ୍ୱାସ୍ଥ୍ୟ ଲୋକ ସ୍ୱାସ୍ଥ୍ୟବନ୍ତ ଲୋକଙ୍କ ଜୀବନ ବିଳାସ ଦେଖି ଆହତ ସ୍ପର୍ଦ୍ଧାରେ ନୀତିଶାସ୍ତ୍ର ବଖାଣିଲା ପରି ବେଦବ୍ୟାସ ସେହି ଦୃଶ୍ୟକୁ ଗ୍ରହି ମଣିଷର କ୍ଷୁଦ୍ରତାହିଁ ସ୍ମରଣ କରୁଛି । ମନେ ମନେ, ଏଇ ଏମାନେ ଗୋପୀ ମାରୁଛନ୍ତି, ତୁଣ୍ଡରେ ଯେତେ ଆଦର୍ଶବାଦ ବଖାଣନ୍ତୁ ପ୍ରକୃତରେ ସେହି ଜଡ଼ ପ୍ରଧାନ ଜନ୍ତୁ ହିଁ,—ଯେଉଁ ଜନ୍ତୁ କେବଳ ଆମିବା, ଛତୁ ଓ ନେଳି ଶିଉଳିରୁ ହିଁ କ୍ରମ ବିବର୍ତ୍ତନରେ ଜନ୍ମ । ଅଦ୍ୟାପି ଯାହାର ପ୍ରଧାନ ଗୁଣ କ୍ଷୁଧା । ପ୍ରଧାନକୁ ଯା ହଜମ କରିବା । ନେତା, ଶିଳ୍ପପତି, ଶାସକ, କର୍ମଚାରୀ, ପଣ୍ଡିତ, ବ୍ୟବହାରଜୀବୀ, କବି, ଏହି ଯେତେ ଭୋଜିରେ ବସିଛନ୍ତି ଏ ସହରର ପ୍ରଧାନ ପ୍ରଧାନ ଲୋକେ ସମସ୍ତେ ସେହି କ୍ଷୁଧା ପ୍ରଧାନ ଆମିବା ସନ୍ତାନ, ଛତୁ—ପ୍ରପୌତ୍ର, ଶିଉଳି—ତନୁଜ । ସେହି ଏକ ଦ୍ୟୋତନା,—କ୍ଷୁଧା ।

ସେହି ଏକ କ୍ରିୟା—ହଜମ୍ କରିବା ।

ସେ ବାହାରେ ଅଛି ।

ମନେ ପଡ଼ିଗଲା, ତାଆଣାଟା ପରି ଗ୍ରହି ରହିଛି ସେ କଣ ?

ଗ୍ରହି ରହିବା ଲୋକ ସେ ଏକା ନୁହେଁ । ଗ୍ରକରମାନେ ବେଡବାଡ଼ିରେ ପିଟି ଘଉଡେଇବା ସତ୍ତ୍ୱେ ବଡ଼ ଫାଟକ ବାଟେ ଦଳେ ଭିକାରି ଭିକାରୁଣୀ ଧସେଇ ପଶିଛନ୍ତି । ଆଉ ପଶିଛନ୍ତି ଦଳେ କୁକୁର । ସେମାନେ ସମସ୍ତେ ଭୋଜିକି ଗ୍ରହି ରହିଛନ୍ତି ।

ଆଉ ଗ୍ରହି ରହିଛି ସେ ନିଜେ ।

ସେ ଏ କଣ କରୁଛି ।

ହଠାତ୍ ଯେପରିକି ବିଜୁଳି ଝଲକରେ ସେ ଦେଖି ପାରିଲା, ଏ ବିନ୍ୟାସରେ ଉପହ୍ର ସବ ପାତ୍ର ଏକା ସେ ।

ଏକା ସେ,—ଆଉ କେହି ନୁହେଁ ।

ହେଉ, ଏତେଲୋକ ଖାଇ ବସିଛନ୍ତି ଅଥଚ ସେ ଖାଉ ନାହିଁ । ଏ ଲୋକ ନ ଖାଉଥିଲେବି ଅପେକ୍ଷା କରିଛନ୍ତି, ନିଶ୍ଚୟ ଖାଇବେ, ଅଥଚ ସେ ଖାଇବ ନାହିଁ, ଏତେଲୋକ ଏପାଖ ସେପାଖ ହୋଇ ଆପଣା ଉଦ୍ଦେଶ୍ୟ ଘେନି ଚଳପ୍ରଚଳ ହେଉଛନ୍ତି ଅଥଚ ସେ ଅଛି ନିଶ୍ଚଳ, ସେମାନେ ସମସ୍ତେ ମନେ ମନେ ତାକୁ ଥଟ୍ଟା କରୁଛନ୍ତି । ପ୍ରକାଶ୍ୟରେ ମୁହାଁ ମୁହିଁ ଥଟ୍ଟା କରିବାକୁ ସମୟ ଆସୁଛି, ଡେରି ନାହିଁ ।

ହଠାତ୍ ଲାଗିଲା,—ଆପଣା ପାଗଳାମିରେ ଏତେବାଟ ମାଡ଼ିଆସି ଜନଗହଳିରେ ମଝିରେ ଅନ୍ଧାରରେ ଆଡ଼େଇ ହୋଇ ସେ ଲଙ୍ଗଳା ହୋଇ ଠିଆ ହୋଇ ରହିଛି, ସମସ୍ତେ ଜାଣନ୍ତି । ନ ଜାଣିଲା ପରି ଅପେକ୍ଷା କରି ରହିଛନ୍ତି ଖାଲି ।

ଉପହାସ,—ଉପହାସ,—ମୁହଁ ଦେଖାଇବାକୁ ବାଟ ନାହିଁ ଅନୁଭବ କଲା, ପଳାୟନ ଏକମାତ୍ର ବାରପଣ ।

ଏକା ନିମିଷେକେ ଗୋଟାଏ ଦୁନିଆଁ ତା ଆଗରେ ହଠାତ୍ ଦପ୍ କରି ନିଭି ଗଲା । ଗୋଟାଏ ସୌର ଲୋକର ବିଲୟ ଘଟିଲା । ଗୋଟାଏ ଯୁଗର ଅବସାନ ହେଲା ।

ନୂଆ ମଣିଷ ଡ଼'କ୍ଟର ବେଦବ୍ୟାସ ତା ଜୀବନରେ ପହିଲିଥର ହୋଇ ଯାହା ଭାବିଲା ତାହା କଲା, ଯାହା କଲା ଜାଣି ଜାଣି କଲା,—ଲୋକେ ଭେଜିବୁ ଉଠିବା ଆଗରୁ ସେ ଭୁଷ୍ କରି ଜୀପ୍ ଗାଡ଼ିରେ ଷ୍ଟାର୍ଟ ଦେଇ ଗାଡ଼ିରେ ଚଢ଼ି ପଳାଇଲା ।

ଗାଡ଼ିର ପ୍ରଚଣ୍ଡ ଶବ୍ଦରେ ଅନେକେ ଅନେଇଁଥିଲେ, ଅନେକେ କୁହାକୋହି ହୋଇଥିଲେ ।

ତାର କହିବାକୁ କାହାଣୀ ନାହିଁ, ବୁଝେଇବାକୁ କୈଫିୟତ୍ ନାହିଁ, ସେ ଆସିଥିଲା ସେ ଲୁଚି ଯାଉଛି, ସେତିକି ।

---

# ବିଶ୍ୱାସ

## ( ଗଳ୍ପ )

ଆମ ଗାଁରେ, —ଠାଁ ନାଁ ଗୋଟମା, —ଗୋଟମା ଗାଁରେ ଯେ କଳିଯୁଗରେ ଶ୍ରୀକୃଷ୍ଣ ଉତ୍ପନ୍ନହେଲେ କେମିତି ଯେ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ପଥରର ମୂର୍ତ୍ତି ନୁହନ୍ତି ସେ । ଆମ ଗାଁଠୁ ସେହି ଏକା ତିମିରି ନଈ ବନ୍ଧେ ବନ୍ଧେ କୋଶେ ତଳକୁ ଗଲେ ବୁଢ଼ା ଶିମିଳି ଗଛ ପଳଖେ ଯେଉଁ କାଳିଅଟଣ୍ଡ, ଖରଦିନେ କେଉଟ ସେଠି ଜାଲ ପକାଇଲା ବେଳେ କଣଟାଏ ଲାଗିଲା, ସେ ପଥରର କୃଷ୍ଣମୂର୍ତ୍ତି, ଛାତିଏ ଉଞ୍ଚ, ସରକାରି ଲୋକେ ପଛେ ତାକୁ ନାଶିଲେ, ନେଇଗଲେ, ନେଲେ ଦିଲ୍ଲୀ କି କଲିକତା କି ଭୁବନେଶ୍ୱର କି ବିଲାତ କୁଆଡ଼େ ଠାଏ । ଶୁଣିଥାଇଁ । କେବର କଥା ହେଲାଣି । କିନ୍ତୁ ଆମ ଗୋଟମା ଗାଁ କଥାତ ସଂପୂର୍ଣ୍ଣ ଭିନେ । ତାଆନ୍ତା ମଣିଷ । କଳା ମିଶ୍ ମିଶ୍ । ପୁଚୁକା ଗାଲ । ଫାଳ ଫାଳ ଆଖି, କଜଳ ନାଇ ଢଳଢଳ । କୁଞ୍ଚୁ କୁଞ୍ଚୁ ବାଳ । କୁନ୍ଦିଲା ପରି ହାତ ଗୋଡ଼, ଆବୁ ଆବୁ ଦେହ । ମୁଁ ଆଠ ବର୍ଷର ସେତେବେଳେ । ବେମିବୋଉ ଖୁଡ଼ୀ ଦୂରରୁ ଦେଖାଇଦେଲେ, ଫୁସ୍ ଫୁସ୍ କରି କହିଲେ "ଅନାରେ ବୁରୁନ୍ଦି, ହେଇଟି ମାହାପୁରୁ ଶ୍ରୀକୃଷ୍ଣ । ଗୋଡ଼ତଳେ ପଡ଼ ।" ଆମ ଦାଣ୍ଡରେ କୃଷ୍ଣ ଗୋଡ଼ରେ ଗୋଡ଼ ଛନ୍ଦି କେଡ଼େ ସୁନ୍ଦର ବାଙ୍କୁଲି ହୋଇ ଠିଆ ହୋଇଥାନ୍ତି, ବଇଁଶୀଟିଏ ଧରିଥାନ୍ତି ହାତକୁ ଛନ୍ଦି ପକାଇ । ଫୁଙ୍କୁ ଥାନ୍ତି । ଖୁଡ଼ୀ କହିଲେ "କଣ ବାଜୁଚି ଜାଣିଚୁ ନା ? ଖାଲି ରାଧା-ରାଧା-ଆହାହାହା—" ଖୁଡ଼ୀଙ୍କର କଣ ହେଲା କେଜାଣି ଖାଲି ଲୁହ ଧାର ନିଗିଡ଼ି ଯାଉଥାଏ ।

କହିଲେ, "କେତେ ଜନ୍ମର ତପଫଳ କେଜାଣି ଛାର ଗୋଟମା ଗାଁର, ମା'ପୁରୁ ଉତ୍ପନ୍ନହେଲେ । ଗଲା, ସବୁ ଆଶା ପୂରିଯିବ । ଯେ ବଇକୁଂଠ ହେଇଗଲାରେ ବୁରୁନ୍ଦି ବଇକୁଂଠ । ଲକ୍ଷ୍ମୀ ମାଡ଼ିଯିବ । ଆଉ କାହାରି କିଛି ଊଣା ରହିବ ନାହିଁ । ତୁ ମନେ ମନେ ଯାହା ମାଗିବୁ ମିଳିବ ।"

ଖୁସି ହୋଇ କହିଲି "ମାଗିଲି ।"

"କଣ ?"

"ଅବଧାନେ ଉରି ପିଟୁଚନ୍ତି, ଯାଉନ୍ତୁ ଆମ ଗାଁରୁ ବିଦାହୋଇ ।" "ହାଁରେ ଗୁଣ୍ଡାଳ, ଏଇଥି ମୁଁ କହିଲି । ଆଉ ମାର୍ ।"

"ମାଗିଲି ।"

"କଣ ?"

"ଆମ୍ବସଢ଼ା ଖାଇବି ।"

ଖୁଡ଼ୀ କହିଲେ "ଅରେ ଓଲ୍ଲ, ମାହାପୁରୁ ଉଷ୍ଣ ହେଲେ । ଆମ ଗାଁ ଖାଲି, —ଉଠିବ ପଡ଼ିବ । ଧାନ, ସୁନା, ଶାଢ଼ୀ, ଲୁଗା, – ନହଡ଼ି ଢାଙ୍ଗିବ । ଖେତରେ, —ଗୋଟାକ ଡିଟା ଫଳିବ । ପାଳକ, —ଯେତେବେଳେ ଯାହା, ଧୋଇ ମରୁଡ଼ି ନାହିଁ, ମୁଗ ପେଇଁ ବି ପାଣି । ଘର, —ସମସ୍ତଙ୍କର ଖାଲି ଧୁଳିଆପିଟା । ଗୋରୁ ଗାଈ, —ସମସ୍ତଙ୍କର ପଲ ପଲ, ଆଉ ନଉଡ଼ି ନଉଡ଼ି ଘିଅ ଦୁଧ ଛେନା । ଦୁଖୀରଙ୍କ, —କାହାରିକି ଗୋଟିଏ ଦେଖିବୁ ନାଇଁ । ଛନ୍ଦ ମନ୍ଦ, —ଡମାରୁ ନଥିବ, ସମସ୍ତେ ହେବେ ମୁନୀଋଷି ଭଳି । କେହି ମୁହଁ ବି ଶୁଖେଇବେ ନାହିଁରେ, ଖାଲି ସବୁବେଳେ କିରି କିରି ହସୁଥିବେ, ନାଚି ନାଚି ବୁଲୁଥିବେ । ଗାଁ କଳି, —ଆରେ ସମସ୍ତେ ତ ପ୍ରେମରେ ଭୋଳ, କିଏ ଖୁରି କରିବ ? ବୁଝିଲୁ, ହେଲା ସତ୍ୟଯୁଗ, ଶ୍ରୀକୃଷ୍ଣ ଆଇଲେ ।" ପୁଣି କହିଲେ "ମହାପୁରୁ, ତେମେ ଅନ୍ତରକଥା ଜାଣ, ତମକୁ ନାରିଲା, ମୁଁ କଣ କରିବିଟି ।" କାନ୍ଦି କାନ୍ଦି ଧୂଳିରେ ଲମ୍ବ ହୋଇ ପଡ଼ିଲେ । କିଛି ବୁଝି ପାରିଲି ନାହିଁ । ଦେଖିଲି, କେତେ ସେମିତି ପଡ଼ିଛନ୍ତି ।

ତାଙ୍କରେ, ନାଲୁ ବଡ଼ାପା ଡାକିଲେ "ହେଇ ବୁରୁଦା" । ହାଡ଼ୁଆ ଗାଡ଼ୁଆ ମୁହଁ, କପାଳ ଉପରେ ନୋଗ୍ନକୋଗ୍ନ ଚମ, ଟିକି ଟିକି ଆଖି କୋରଡ଼ ଭିତରୁ ଜଳେ, ତାଙ୍କ ଉଞ୍ଚ ଶୁଆ ଥଣ୍ଟିଆ ନାକଟା ଦେଖିଲେ ଛାତି ଥରେ । ମୋ କାନକୁ ଆଙ୍ଗୁଠି ଦି ଟିପରେ ଯାପି ଧରି କହିଲେ "ଉଦୁଉଦିଆ ଖରାରେ ଛାଇତଳେ ବସା ନାହିଁ ଶୁଆ ନାହିଁ, କୁଆଡ଼େ କୁକୁର ଧାଉଡ଼ି ଦଉଡ଼ୁଚୁ ? କଣ କୃଷ୍ଣ ଦେଖି ଆଇଥିଲୁ ? ଗୁଲ୍ ।" ପାଖରେ ତାଙ୍କର ଶୋଇବା ବଖୁରି, ଏକୁଟିଆ ଚଳନ୍ତି, ହାତରେ ରାନ୍ଧନ୍ତି, କେହି ନାହାନ୍ତି । ରଡ଼ିଲେ "କୃଷ୍ଣ ଦେଖି ଆଇଥିଲୁ କିନା ସତ କହ, ନହେଲେ ଫେର୍ କାନ ଧରିବି ।"

"ଚେମୀ ବୋଉ ଖୁଡ଼ୀ ଦେଖେଇ ଦେଲା ।"

"ତୋ ମୁହଁରେ— । ଶୁଣ୍ ଖବର୍ଦ୍ଦାର୍, ସେଇଟା ଆମ ଗାଁ ଛଟି ସୋଇଁ ବେହେରୁଣୀଆ ପୁଅ ବଟିଆ । ଛଟିଆ ଆଗେ ଆମ ଗାଁ ରମନଅମାରେ ରବଣ ହଉଥିଲା, ମଲାଣ । ତା ମା ଥିଲା ତନ୍ତୀଆଣୀ, ବିଧବା । ଛଟିଆ ମଲାରୁ ପୁଅକୁ ନେଇ କୁଆଡ଼େ ପଳେଇଲା । ସେ ବଟିଆ କଥା ମୁଁ ଜାଣିଚି, ଏଡ଼େ ଭଣ୍ଡ ଠକ ଦୁଷ୍ଟ ସଂସାରରେ ନଥିବ, କେତେଠି କେତେ ଫିକର କରିଛି, ଭୁଲେଇବା ଆଖିରେ ଭେଲିକି ଲଗେଇବା ଲୋକଙ୍କ ସର୍ବନାଶ କରିବା ଯା ସ୍ୱଭାବ । ଉରି ଖରାପ ଲୋକ ।"

ତାଙ୍କ କଥା ସବୁଯାକ ମୁଁ ବୁଝିପାରୁ ନଥାଏ, ଲାଗୁଥାଏ, ସେ କହୁଛନ୍ତି ସେ କଣ ଖରାପ କାମ କରେ, ଆପେ ପାଟିରୁ ବାହାରିଗଲା, "କାହିଁକି ବଡ଼ାପା ?"

"ଆରେ, କୃଷ୍ଣଙ୍କୁ ତ ଜାରା ଶବର ଶର ମାରିଲା, ତାଙ୍କ ଦେହରୁ ପ୍ରାଣ ଛାଡ଼ିଲା, ସେ ଦେହ ବି ଦାହ ହେଲା । ସେତ କେବଳ କଥାରେ । ଠାକୁର ନ ହେଲେ ବି, ମଣିଷ ଭିତରେ କେତେ ସାଧୁ ମହାତ୍ମା ଥାଆନ୍ତି, ନିଜ ନିଜ କାମ କରନ୍ତି, କେତେ ଲୋକଙ୍କ ଉପକାର କରନ୍ତି, ମିଳାମେଳ ଆସନ୍ତି, ମରନ୍ତି । ଆଉ କ'ଣ ଜନ୍ମ ହୁଅନ୍ତି ? ତାଙ୍କ ଆତ୍ମା ଆଉଥରେ ଜନ୍ମ ହେଉଥିବ, ହେଲେ ସେ ଭିନ୍ନ ଚେହେରା, ସେଇ ଆଗର ଲୋକ ବୋଲି ଚିହ୍ନା ହେବ ନାହିଁ । ଏଇଟା କୃଷ୍ଣ ନୁହେଁ । କୋଉ ଠାକୁର ନୁହେଁ, କୋଉ ମହାପୁରୁଷ ନୁହେଁ, ଛତରା ଛୋକାର, ମଚ୍ଛୁଆ, ବଦ୍‌ମାସ୍, ଠକ, ପାପୀ,—ସେ ବଟିଆ ।"

ଡରି ଡରି ତୁନି ହେଲି । ମୋ ମନ ଭିତରେ ନାନା ପ୍ରଶ୍ନ ଖେଳୁଥାଏ, ବଡ଼ବାପାଙ୍କ ମୁହଁ ଆଖି ଆଗରେ ଜଳୁଥାଏ, ଆଉ କିଛି ପଚାରିବାକୁ ମନ ହେଲାନାହିଁ । ସେ କହି ଯାଉଥାନ୍ତି । "ବଟିଆ ଯେ ଗୋଟାମା ଗାଁ ମଣିଷଙ୍କୁ ଭେଳିକି ଲଗେଇ ଗାଁଟି ଯାକରେ ନଷ୍ଟ ହେଲାଣି । ବେଶୀ ଲୋକ ତାକୁ ମାନିଲେଣି, ସେ କୁଆଡ଼େ କୃଷ୍ଣ, ସେ କୃଷ୍ଣ ହେଲେ ସେମାନେ ସବୁ ବି ଦେବଅଂଶୀ, ସମସ୍ତେ ମିଳିମିଶି ଭୋଗ ଖାଇବେ, ଆଖପାଖ ଗାଁରେ ଚରି ବୁଲିବେ, କେହି ଜାତି ପିଟେଇବ ନାହିଁ, ଯାହା ମନ ତା' କରନ୍ତୁ । ବଟିଆକୁ ନିନ୍ଦିଲେ ମାରି ଗୋଡ଼ାଉଛନ୍ତି, ମୁଁ ତାଙ୍କ ଶତ୍ରୁ, ବଟିଆ କହିଚି ମୁଁ କଂସ । କି ଅନ୍ଦାଉଦି କରିବେ କେଜାଣି । ବଟିଆ ଭାବିଚି ଏ ଗାଁରେ ସମସ୍ତେ ହେବେ ତା କିଂକର ଯେ ସବୁଦିନେ ଗାଡ଼ିମାଡ଼ି ପେଷିଥିବ ଏଠି, ବୋପା ଅଜା ଜମିଦାରି ରଖିଯାଇଛନ୍ତି ତା ପାଇଁ । ଯେ ନମାନିଲା, ବଟିଆ ଖାଲି ଏ କଦମ ଗଛ ତଳେ ଠିଆ ହୋଇ ପାଟିଟାଏ କରିବ, ଏଇଟା ଅମୁକ ଅସୁର, ହଟିଆ ଗୁଡ଼ିଆ ବକାସୁର, ପାନ ବୋଉ ପୁତନା, ବନା ସୋଇଁ ଅର୍ଘାସୁର, ଯାହାକୁ ଯାହା କହିଦେଲ ଲୋକେ ପାଳି ଧରିବେ । ହଉ, ମୁଁ ତା ଗୋଛି ଓଷ୍ଟୁଛି ଯେ, ମୋ ହାବୁଡ଼ରୁ ସେ ଖସି ପାରିବ ନାହିଁ । ତେବେ ଗୋଟିଏ କଥା । ତୁ ତ ପଢ଼ରଟଲି, ତୁ ତା' ପାଖେ ପାଖେ ଥିବୁ, ନଇଲେ ଦୂରରେ ଥାଇ ବି ତାକୁ ଅନିଷା ରଖିଥିବୁ, ସେ ଯାହା ଯାହା କରୁଚି ମତେ ଆସି କହୁଥିବୁ । କେମନ୍ତ ?"

"ହଉ ବଡ଼ାପା ।"

ବଡ଼ାପା ମତେ ସଙ୍ଗରେ ଖୁଆନ୍ତି, ଦିଅଁଳି ତାଙ୍କ ଖଟୁଲିରେ ବିଜେ ଠାକୁର ପାଖେ ଯାହା ଭୋଗ କରନ୍ତି କଦଳୀ କି ପିଜୁଳୀ କି ମୁଆଁ, ମତେ ଦିଅନ୍ତି । ତାଙ୍କ ବାରିରୁ କୋଳି, ପିଜୁଳୀ, କଦଳୀ, ଅମୃତଭଣ୍ଡା ମତେ ଦିଅନ୍ତି । ମୁଁ ତାଙ୍କୁ ଡରେ ସତ, କିନ୍ତୁ ଭଲପାଏଁ । ମତେ ସଙ୍ଗରେ ନେଇ ନଈକି ଗାଧୋଇ ଯିବାକୁ ଭାରି ଜିଦି କରନ୍ତି, ମୁଁ ଡରେଁ, ମତେ ପାଣିରେ ବୁଡ଼ାନ୍ତି, ବାଲି ଲାଗିଥିବା ତଉଲିଆରେ ମୋ ପିଠିକି ରଗଡ଼ନ୍ତି ବୋଲି ଆଉ ମୋ କାଛୁରୁ ଶ୍ଳେଡା ଛଡ଼େଇ ଲହୁଲୁହାଣ କରନ୍ତି ବୋଲି । କିନ୍ତୁ ମୋ ଆଖିରେ ସେଇତ ସବୁଠୁ ବଡ଼ ସବୁଠୁ ମାନ୍ୟତା ଲୋକ ଓ ମୋ ବୋଉକୁ ଛାଡ଼ିଦେଲେ ତାଙ୍କୁହିଁ ତ ମୁଁ ବେଶି ମାନେ । ମୁଁ ତାଙ୍କ ପାଇଁ ଗୁଇନ୍ଦା ହେବାକୁ ରାଜି ହୋଇଗଲି, ମତେ ଏତେବଡ଼ ଦାୟିତ୍ୱ ଦିଆଗଲା, ସେ ଦେଲେ, ତେଣୁ ମୋ ମନ କୁନ୍ଥେ ମୋଟ ।

କିନ୍ତୁ ମୋ ବିଶ୍ୱାସ ବିଷୟରେ କରେ କ'ଣ ? ଯେ କୃଷ୍ଣ କି ବଟିଆ ? ଆମର ସବୁ ଭଲ ହୋଇଯିବ, ଯାହା ଲୋଡ଼ିବୁଁ ତା' ଖାଇବୁଁ ସେଇଆ କରେଇବାକୁ ଯେ

ଆସିଛି କି ଆସିଛି ମିଛରେ ଭକ୍ତି ନିଜ ସୁବିଧାଟି କରିନେବାକୁ, ନିତେ ପାଦପୂଜା ପାଇ ଆପଣା ଗିହାଡିଯାକ ଆମ ଗାଁର ସର୍ବେସର୍ବା ହୋଇ ବସିବାକୁ ? ତେମାନେ ବୋଉ ଖୁଡ଼ୀ କହିବା କଥା ବିଶ୍ୱାସ କରିବି ନା ବଡ଼ାଙ୍କ କଥାରେ ?

ବଡ଼ ଆଶା କରି ବଡ଼ ବିଶ୍ୱାସରେ ବୋଉକୁ ପଚାରିଲି, ସବୁକଥା କହିଲି । କୋଳଥ ପଛଡି ଥାଳିଆଏ ମୋ ଆଗରେ ଠେଲିଦେଲା, କହିଲା "ଡେରିରୁ ହେଲାଣି, କେତେବେଳେ ଯାଇ ଖାଇଥିଲୁ । ଏବକ ଖାଇଦେ ।"

"ନାଇଁ ତୁ ମତେ କହ । ସେ କୃଷ୍ଣ ନା ବଟିଆ ?"

ବୋଉ ମତେ ବୁଝେଇ ଦେଲା, "ଅରେ ପୁଅ, କାହା ଘରେ ଦୁଃଖ ଧନ୍ଦା ନ କଲେ ଆମର ତ ପେଟ ପୂରିବ ନାଇଁ, ମୋର ମୁଁ ଲାଗିଥାଏ ଧାନ ଉଷୁମେଇବି, ଢିଙ୍କି ଚଢିବି, ପାଛୁଡିବି, ବାଟବି, ଯେତେବେଳେ ଯାହା । ତୁ ବି ବଡ଼ଟିଏ ହବୁ, ଦି ଅକ୍ଷର ପଢିବୁ, କୋଉ କାମରେ ଲାଗିଯିବୁ. ଆମ ଦୁଃଖ ଯିବ । କିଏ କୃଷ୍ଣ ହେଲେ କେତେ. ବଟିଆ ହେଲେ କେତେ, ଆମର କି ଯାଏରେ ? କୃଷ୍ଣ କ'ଣ କହିବିନି, — କାମ ନ କଲେ ଖାଇବାକୁ ମିଳିବ ? କାହାର କୋଉ ଆଶା ଅଛି, ତେମାନେ ତେମୀ ପେଇଁ ବର ଖୋଜୁଚି, ପଛଡା ବାପା ଦୋକାନ ଦେଇଚିନି, ଆହୁରି ନାଉ ଖୋଜୁଚିନି, ଲୋକେ ଖୋଜୁଚିନି ସବୁଥିରୁ ଆହୁରି ଅହୁରି ମିଳନ୍ତା, ଘଡିକା ଘଡ଼ି, ସେଇମାନେ ଖୋଜୁଚିନି, କୃଷ୍ଣ ଆସନ୍ତୁ. କୃଷ୍ଣ ଦଉନ୍ତୁ । ମୋର କୋଉଥିକି ଆଶା ନାଇଁ । ତୁ ମନିଷ ହେବୁ ସେତିକି ଆଶା । ତୋ ବାପା ତ ଛାଡ଼ିଦେଇ ସେ ପୁରକୁ ଗଲା । ତୋ ପାଇଁ ଆଶା ଅଚ୍ଛା କୋଉଠୁ ଫଳିବ ଯେ ମୁଁ ଧନ୍ଦାଳି ହେବି ? କିଏ ମେଂବର ହେବେ, କିଏ ଗଉଡ଼ି କରିବେ କୋଠା ପିଟିବେ, ଜାଣି ତାଙ୍କ ଆଶା ତାଙ୍କ କୃଷ୍ଣ ।"

"ତା'ହେଲେ ଏ କୃଷ୍ଣ ନୁହେଁ ସେ ବଟିଆ, ନାଇଁ ବୋଉ ?"

"ଥିରି ହ ଥିରି ହ, ଅଉ କହନା । ଅରେ, କିଏ ସତେ କ'ଣ ସେକଥା କ'ଣ କେହି କହିପାରିବ ? ଅଜି ବଟିଆ ବୋଲି ହାନିମାନିଆ କରି କହୁଥିବୁ, କିଏ ଶୁଣିମ ତ ଆମ କପାଳ ଫାଟିଲା । ସେ ମନିଷ ତ ଗୋଟମା ଗାଁଯାକକୁ ନଚେଇଉଚି, ସତେ ତା ଭିତରେ କିଛି ଗୁଣ ଥିବ ତ ଜାଣିଦେବ ଆମୁକୁ । ଆମର କି ଯାଏ ସେ ତାର ଯାହା ମନ ତା ହେଉଥାଉ । ଅଉ, ତାକୁ କୃଷ୍ଣ ବୋଲି କହିବୁଲିବା ବି ଆମର କି ଦରକାର ? କେଜାଣି ସତେ ସେ କୃଷ୍ଣ ନ ହେଇ ଆମରି ପରି ଛାର ମଣିଷଟାଏ ହେଇଥିବ, କୋଉ ଗାଁ ର ଠକଟାଏ, ସେଉଠୁ ଯେତେବେଳେ ଧରାପଡ଼ିବ ତା ସଙ୍ଗରେ ଆମେ ବି ଲୋକହସା ହେବା, ବାରଛିଆ ଛିକର ଶୁଣିବା, ମିଛ ହେଲେ କଥାତ କେତେ ଲୁଚିବ ନାହିଁ ଫୁଟି ବାହାରିବ, ଚୋରର ଘର ସବୁଦିନେ ତ ଅନ୍ଧାର ହୋଇ ନ ଥିବ, ଯିବ କୁଆଡ଼େ ? ଆମର କି ଦରକାର ?"

'ଓହୋ, ଏତେ କଥା ଥାଉ, ତୁ କହ ସେ ମାହାପୁରୁ କୃଷ୍ଣ କି ନୁହେଁ ?'

"ଅରେ, ସକଳ ଘଟେ ନାରାଏଣ, କୃଷ୍ଣ ତୋ ଭିତରେ ଅଛନ୍ତି ମୋ ଭିତରେ ଅଛନ୍ତି ତା ଭିତରେ ଅଛନ୍ତି । ସେମିତ ।"

"କଣ ସେମିତି ? ତୁ ବାଁଉରେ ପଡୁଚୁ । ନାଇଁ ? ଆଲୋ ଏ କିଏ ?"

"କହିଲି ପର, ମତେ ଜଣା ନାହିଁ ସେ କିଏ । ଏତେ କଥା ଜାଣିବା ମୋର ଦରକାର ନାହିଁ ତୋର ଦରକାର ନାହିଁ । ସେ ତାର ଯେ ହଉ । ଆମର ତା ସଙ୍ଗରେ କି କାମ୍ ? ଆମ କାମ ଆମୁକୁ ବଳେଇଛି ।"

"ସେ କିଏ ?"

"ପଟେଇ ହଉଥା । ଲୁଙ୍କୁଚିଅଳି ହଉଥା । କିଏ ଶୁଣୁଚି ?" ବୁଝିଲି, ଆଉ ତୋଉକୁ ଝଲେଇ ଲାଭ ନାହିଁ ।

କୃଷ୍ଣ ରହିଥାନ୍ତି ମଥୁରି ସାହୁ ମହାଜନଙ୍କ ଘରେ । ପଚେରୀ ଦାଣ୍ଡଘର । ବେଢ ବଡ କାଠ ଝରକା, କଣ ଧାଏ ଝଙ୍କାଣି ଗୋଟା ଝୋଟାଙ୍କରେ ତିନିଟା ଗୁରିଟା ବେଢ ବଡ ତାଲା । କାନ୍ଥସାକ ଠାକୁରଙ୍କ ଛବି । ବଡ ଝଟ ଓଷ୍ଟ ଗଡି ତକିଆ ପଡିଥାଏ । ଫୁଲମାଳ ଝୁଲୁଥାଏ । ଝୁଣା, କପୁର, ଫୁଲ, କେତେ ବାଡି ବାସ୍ନା । ଖଟ ଉପରେ କୃଷ୍ଣ । ଦାଣ୍ଡଘରେ ଦାଣ୍ଡିଏ ସଂକୀର୍ତ୍ତନ । କୃଷ୍ଣଙ୍କ ପାଖେ ଖଉଳି । କୃଷ୍ଣ ଖାଉଥାନ୍ତି, ପଠ, ଲହୁଣୀ ଫଳ, ମିଠେଇ, ବଢିଖିର ପରି ଗାଢ ଆଉଟା ଦୁଧ ଗିଲାସେ ଗିଲାସେ ପିଉଥାନ୍ତି । ପାନ ଚୋବାଉଥାନ୍ତି । ହସୁଥାନ୍ତି । ଯେ ଆସୁଥାଏ ସଙ୍ଗେ ସଙ୍ଗେ କହୁଥାନ୍ତି ପୂର୍ବ ଜନ୍ମରେ କଣ ସେ ହୋଇଥିଲା, ଭାଗବତରେ ଲେଖା ଅଛି, କି ଲେଖା ନାହିଁ, ତା ବି କହୁଥାନ୍ତି । ଯାହାକୁ କହୁଥାନ୍ତି ସେ ଖୁସିରେ କୁରୁଳୁଥାଏ । ମଥୁରି ସାହୁ ମହାଜନ, ବହୁତ ଜମିବାଡି, ଜମି ଆଉ ସୁନା ବନ୍ଧା ରଖି ଟଙ୍କା ସୁଧରେ କରଜ ଦିଏ, ପାହୁଲାଟିଏ ଛାଡେ ନାହିଁ, ମୁଣ୍ଡ ବାଡେଇ ଦେଲେ ଶୁଣେ ନାହିଁ, ନିଜ ଲାଭ ଛଡା କାହା ହାନି ଲାଭରେ ସେ ନଥାଏ, — ତେବେ ଏତେ କଥା ଯେତେବେଳେ ଜାଣି ନ ଥିଲି, ଶୁଣିଲି ମଥୁରି ସାହୁ ମଥୁରି ସାହୁ ନୁହନ୍ତି, ସେ ନାଂଦ ରଷି । ବୁଢା ମଥୁରି ସାହୁ ଖଟ ପାଖେ ତଳେ ଚେକା ପକେଇ ହାତଯୋଡି ବସିଥାନ୍ତି, ବେଳେ ବେଳେ ଆଖିବୁଜି "କୃଷ୍ଣ କୃଷ୍ଣ" କହୁଥାନ୍ତି କେତେବେଳଯାଏ । ଧାଣ୍ଡୁ ଢେନା ସୁବଳ ହେଲେ, ନରି ମହାନ୍ତି ସୁଦାମ, ଡେଙ୍ଗା ଧଡିଆ ଚିଣିଚିଣା ପୁରୋହିତ ବିଶି ନନା ହେଲେ ଶ୍ରୀବଛ, କିଏ କେତେ କଣ ବୋଲି ଲୋକେ କୁହାକୋହି ହେଲେ । ଥାଏ ଥାଏ ହଠାତ୍ ଗାଁଯାକ ଖବର ଚହଟିଯାଏ, ଲୋକେ କାବା ହୋଇ ଶୁଣନ୍ତି ।

"ହେ ଶୁଣିଲଣି । କେଳୁ ଘରେ ଦେଇ ନିଜେ ନନ୍ଦ ରଜା ।"

"ଏଁ । କେଳୁ ଘରେ ଦେଇ । ବିଚାରର ପାଞ୍ଚମାଣ ଜମିକୁ ବାର ପ୍ରାଣୀ କୁଟୁମ୍ବ, ଦୁହାଳ ଗାଈ ପଟେ ଅଛି, ଦି ଛଟେଇଙ୍କି ଦଉଥିବ, ମଇଚାଏ । କେଳୁ ତ ଜାତିରେ ଖଣ୍ଡେଇତ ।"

"ଆରେ ସେଥିରେ କଣ ଅଛି ? ସେ ଯୁଗରେ ଥିଲା ନନ୍ଦ ରଜା ଏ ଯୁଗରେ ଗୋଟାଏ ଗାଁରେ କେଳୁ ଘରେ ଦେଇ ହୋଇ ଜନ୍ମ ହୋଇଛି । ନିଜେ ମହାପ୍ରଭୁ କହିଲେ । ଅଇଛା ତ ଚିହ୍ନା ଚିହ୍ନି ହେଲା, ଆଉ ଯାଏ କୁଆଡେ ? ଯୋଉ ବୁଢାବୁଢୀ ଯୋଉ କାନ୍ଦ । ବୁଢାର ତ ମାଇପ ମରିଚି ଦି ବର୍ଷ ହେଲା, କହିଲା ବାପ ଧନରେ, ତୋ ମା କୁଆଡେ ଗଲା ?"

ଅଚକିତ ମହାରଣା ଖବର ବାଣ୍ଟୁଥାନ୍ତି, କହିଦେଇ ଲୁହ ପୋଛିଲେ । ସେଉଠୁ ପୁଣି କହିଲେ,

"ମାହାପୁରୁ କହିଲେ,— ମାତା ଯଶୋଦା ବି ଅଛି ଏ ଗାଁରେ, ଦେଖ ଆସିବ । ଯେ କଳିଯୁଗରେ ସବୁ ଓଲଟ ପାଲଟା କାହାକୁ କିଏ ଚିହ୍ନିବ ଯେ କେମେ ଚିହ୍ନନ୍ତ ? ଲୋକେ କଣ ନିଜକୁ ଚିହ୍ନନ୍ତି ? ସେଇଥିପାଇଁ ତ ହବୁ ଅଡ଼ୁଆ, ଯାବତ ଜଞ୍ଜାଳ । ଠାକୁର ହେଉଛନ୍ତି ପଥର, ଖରଖିଆ, ତାଙ୍କ ଉପରେ ଯେ ଯାହା କରୁ, ଉଁ କି ଚୁଁ ନାହିଁ । ସେ କାଳର କେତେ ଯେ ଲୀଳା ହେଉଛନ୍ତି ଏ କାଳରେ ମାଇପେ, କିଏ ଘର ଓଗେଳଛି ବାସନ ମଜୁଛି ତ କିଏ ଘୋଡା ଚଢୁଛି । କେତେ ମଇପେ ବି ହେଉଛନ୍ତି ମର୍ଦ୍ଦ । ଯୁଗ ଓଲଟା । ଦେଖିବ ମୋ ମା ଆସିବ । ଖୋଜି ଖୋଜି ଆସିବ ମୋ ଯଶୋଦା ମା । ଆହା, କେତେ ଖୋଇଦିଲୁ ଦେଇଥିଲୁ ମତେ, କେତେ ସେବା କରିଥିଲୁ, କେତେ ମୋ ଅଦୋଉତି ସହିଥିଲୁ । ମୋ ନାଁ ଶୁଣିଲେ ତା ଥନରୁ ଖିର ବୋହିଯାଏ ।"

କହୁ କହୁ କଣ ହେଲା ଜାଣିଚ ? ବାଡ଼ି ଖଣ୍ଡିଏ ଧରି ନଇଁ ନଇଁ ଅଣ୍ଟାଳି ଅଣ୍ଟାଳି କାଣି କାଣିକା ଆଇଲା ବୁଢ଼ୀ କପିଳି ଜେନା । ଦେଖିଥିବ, ଆଗେ କେତେ ଯୋଦ୍ଧାଟାଏ ହେଇଥିଲା । ସବାରି କାନ୍ଧେଇଲେ ତା କାନ୍ଧକୁ ସଟ ଦେବାକୁ ଲୋକ ମିଳୁନଥିଲେ । ମାଟି ଖୋଳିଲେ ଏକା ତିନିଜଣ ମୁଲିଆଙ୍କ କାମ କରିବ । ଶେଷ ତାକୁ ଝୁଣି ଦେଲା ମୋଡ଼ି ଦେଲା, ସହଜେ ତ ବୁଢ଼ୀ ହେଲା । ଆମ ରାମ ନଅମୀ ଯାତରେ ହନୁମନ୍ତ ହଉଥିଲା ସେ, ଆଉ ସେତେ ପରାକ୍ରମୀ ହନୁମନ୍ତ କିଏ ହବ ? ହୁଂ ହୁଂ ପାଟିକରି ହାତରେ ଝାଙ୍କି ଝାଙ୍କି ବଡ଼ ବଡ଼ ଆମ୍ବ ଡାଳ ଭାଙ୍ଗି ଆଣି ବୋହି ନାଚୁଥିଲା । ସେଇ କପିଳି ଜେନା ଏବେ ସତେକି ବାଁକୁଲି ତାଙ୍କ ଖଣ୍ଡେ ।"

ଅଚ୍ୟୁତ ମହାରଣା ଦମ୍ ନେଲା । ସମସ୍ତଙ୍କ ଦୁଃଖରେ ସେ କଥା କହୁ କହୁ ରୋହିଯାନ୍ତି, ଆଉ ବସି ଠକ ଠକ କରି ତା କାଠ କାମ କରୁଥାନ୍ତି, କାମିକା ଲୋକ ।

କହିଲେ "କଣ ହେଲା ଜାଣିଲ ? ଯେମିତି କପିଳି ଜେନାକୁ ଦେଖି ପକାଇଲେ ଯେମିତି ମାହାପୁରୁ ଖଟ ଉପରୁ ଫକ୍ କିନା ଡେଇଁ ପଡ଼ି ତାକୁ କୁଣ୍ଢେଇ ପକାଇ ପାଟିକଲେ, "ହେଇଟି ମାତା ଯଶୋଦା, ବୋଉ ହେ ବୋଉ, ମତେ ଚିହ୍ନ୍ ନିଜକୁ ଚିହ୍ନ୍, ତୁ ମାତା ଯଶୋଦା, ମୁଁ ତୋ ଗେହ୍ଲା ପୁଅ କୃଷ୍ଣ," କେଳୁ ଘଡ଼େଇ ଆଡ଼କୁ ହାତ ଦେଖାଇ କହିଲେ "ଦେଖିଲୁ କିଏ ? ଯେ ମୋ ବାପା ନନ୍ଦ ରଜା," ଦଣ୍ଡାରେ ଝାଞ୍ଜ ମୃଦଙ୍ଗ ବାଜି ଉଠିଲା, ଝାଳି ଜି-ଜି-ଜି-ଜି-ଝାଇଁ, ଜିଜିଜିଜି ଝାଇଁ, ହରି ବୋଲ ପଡ଼ିଲା । କେଳୁ ଘଡ଼େଇ କପିଳି ଜେନା ଆଡ଼କୁ ଜାବା ହୋଇ ରହିଲା, କପିଳି ଜେନା ତାଠୁ ସାତ ବର୍ଷ ବଡ଼ ।

ସେଉଠୁ ମଥୁରି ସାହୁ ଘରୁ ଶାଢ଼ୀ ଖଣ୍ଡେ ଆଣି କପିଳି ଜେନାକୁ ପିନ୍ଧେଇ ଦେଲେ, ହାତରେ ଖଡ଼ୁ କଙ୍କଣ ନାଇ ଦେଲେ, ମୁଣ୍ଡରେ ସିନ୍ଦୂର ମାରିଦେଲେ, ବୁଢ଼ାର ବନ୍ଦାମୁଣ୍ଡ, ପାକେଲା ନିଶ, ମାଇପେ ଦେଖି ହୁଳହୁଳି ପକାଇଲେ, ବନ୍ଦାପନା କଲେ । ବୁଢ଼ୀ ପାଟି ଫିଟୋଉନଥାଏ, ଗୁଲୁରୁ ଗୁଲୁରୁ କରି ଅନାଉଁଥାଏ । ଦେଖିବ ଯାଅ କେଳୁ ଘଡ଼େଇ ଆଉ ଯେ ଡିହେଁ ଯାକ ସେଇଠାରେ ବଇଚନ୍ତି ।"

ବିଲା ମାରି ଦୌଡ଼ିଲି । ସତକୁ ସତ, ସେଇଆ । କପିଳି ଜେନାକୁ ଦେଖି ହସିବି କଣ, ଡର ମାଡ଼ିଲା । ତାଟକା ହୋଇ ପଳାଇ ଆସିଲି । ବଡ଼ାପାଙ୍କୁ ସବୁ କଥା କହିଲି ।

ଫୁଲମାଳ ପକାଇ କୃଷ୍ଣ ଘର ଘର ବୁଲୁଥାନ୍ତି । ମାଇପେ ବେଢ଼ିଥାନ୍ତି । କିଏ କୋଡ଼ରେ ବସେଇ ଖୋଇ ଦେଉଛି, କିଏ ଆଞ୍ଜୋଇ ଦେଉଛି, କୁଳୁକୁଳୁଆ ପାଣିକୁ କିଏ କଂସାରେ ନେଇଯାଉଛି ସମସ୍ତେ ଟୋପିଏ ଟୋପିଏ ପାଟିରେ ପକାଉଛନ୍ତି । ଶୁଣିଲି ସେ କୁଆଡ଼େ ଅଧରାମୃତ । ଝିଅ ବୋହୂଙ୍କ ଭିତରେ ପୁଣି, ଶୁଣିଲି ମହାପୁରୁ କହି ଦେଇଛନ୍ତି, କିଏ କିଏ ସବୁ ଅଷ୍ଟ ପାଟ ବଂଶୀ, କିଏ କିଏ କୁଆଡ଼େ ସଖୀମାନେ, ଲଳିତା, ବିଶାଖା, ଏମିତି କେତେ ନାଁ । ଶୁଣିଲି, ରାଧା ବି ଚିହ୍ନା ପଡ଼ିବେ ଯେ, ଦିନି ନାହାନ୍ତି, ସେଇଠୁ ରହାସ ଯାତ୍ରା ହେବ, ଝୁଲଣ ହେବ, କେତେ କଥା ହେବ । କୃଷ୍ଣଙ୍କ ପାଖେ ସବୁବେଳେ ଗହଳି, ମାଇପେ ମିଶିପେ ପେଲାପେଲି, ଯେ ଡାକି ନେଉଛି ସେ ଡାକି ନେଉଛି, କେତେ ଲକ୍ଷ ଲକ୍ଷ ଗୋଡ଼ ତଳେ ପଡ଼ିବା, କେତେ ଗେଲ, କେତେ ଘଷା ଅଁଉସା, ଚିଞ୍ଚା, ଝାଳ ପୋଛା, କେତେ ଖୁଆ ପିଆ, ଯେତେ ଯେତେ ସୁଆଦିଆ ଜିନିଷ, ଥାଳିକି ଥାଳି, ଯାହା ବଳିଲା ଭୋଗ ବୋଲି ଯେତକ ବଣ୍ଟାବଣ୍ଟି ଛଡ଼ାଛଡ଼ି, କେତେ ବାଜା, ଗୀତ, ଶଙ୍ଖ, ହୁଳହୁଳି ।

ମୋ ମୁଣ୍ଡ ଘୂରି ଯାଉଥାଏ । ସବୁ ଆଶ୍ଚର୍ଯ୍ୟ ଲାଗୁଥାଏ । ଭାବୁଥାଏ ଗୋଟାଏ କିଛି ଘଟିବ । କେତେଥର ମୋର ଉଡ଼ିବାକୁ ଇଚ୍ଛା ହୁଏ, ଦି ବାହାକୁ ଫରକଟାଏଁ ସଳଖେ, ଡେଣା ପରି ହଲାଏ । ମନେ ମନେ ସେହି ରୂପକୁ ଭାବେଁ ଆଉ କହେଁ ସତେ ଯେବେ ତୁ କୃଷ୍ଣ ତେବେ ମୁଁ ଏଥର ଚଢ଼େଇ ପରି ଉଡ଼େଁ । କୋକେ ମତେ କାବା ହୋଇ ଅନାନ୍ତୁ ।'' ଡିଏଁ । ଯେଉଁ କଥାକୁ ସେହିକଥା । ତଥାପି ଆହୁରି ନାନା ଇଚ୍ଛା ଫାନ୍ଦୁଥାଏ । ଆଶା ଛାଡ଼େ ନାହିଁ । ବିଶ୍ୱାସ ବି ଆସେ ନାହିଁ ।

ତହିଁ ଆର ଦିନ ଦି ପହର ଗଡ଼ି ଯାଇଥାଏ । ତଥାପି ଟାଣ ଖରା ଆଉ ଗୁରି ଆଡ଼ ନିଛାଟିଆ । ଏତିକିବେଳେ ମୁଁ ମୋର ଏକୁଟିଆ ବୁଲୁଥିଲି । କେଉଁଠି ଚଢ଼େଇଟାଏ, କେଉଁଠି ଗୋଧିଟାଏ, ବୁଲି ବୁଲି ଦେଖିବାହିଁ ମୋ ଆନନ୍ଦ । ନିଛାଟିଆରେ ବୁଲିବାକୁ କେଡ଼େ ଶରଧା ଲାଗେ, ଯାହା କରେଁ ମନା କରିବାକୁ କେହି ନାହିଁ । ନାନା ଖିଆଲ ମନେ ପଡ଼ୁଥାଏ । ବଡ଼ ତୋର କୂଳ ପାଖେ ବେଙ୍ଗ ଗୁଡ଼ାଏ ପାଣିରେ ପହଁରୁଥିଲେ । ମନହେଲା ଟେକା ପକେଇବି । ପକେଇଲି ଗୋଟାକୁ ଗୋଟା । ତୋଟାଟାଏ, ତା ତଳେ ଅରମା, ଠାଏ ଠାଏ ହୁଙ୍କା, ନିଛାଟିଆ ଥାନ । ଠାଇ ଠାଇ ଶୁଭିଲା । ରହିଗଲି । ଆମ୍ବ ଗଛ ତଳେ ଠିଆ ହୋଇଛି ଜଣେ । ବିଡ଼ି ଫୁଙ୍କୁଛି । ପେଟକୁ ବାଡ଼ୋଉଛି । ସେ ବିଡ଼ି ଖଣ୍ଡ ସରିଲା । କାନ ସନ୍ଧିରୁ ଆଉ ଖଣ୍ଡେ କାଢ଼ିଲା, ପାଟିରେ ଗେଞ୍ଜିଲା । ଅଣ୍ଟାରୁ ଦିଆସିଲି କାଢ଼ିଲା, ନିଆଁ ଲଗେଇଲେ । ଆଶ୍ଚର୍ଯ୍ୟ ହେଲି । ଯେ ତ କୃଷ୍ଣ । କୃଷ୍ଣ ବିଡ଼ି ଟାଣୁଛନ୍ତି । ଧୂଆଁ ଛାଡ଼ୁଛନ୍ତି । ପୁଣି ଠାଏ ଘୁଞ୍ଚି ଯାଇ ଝାଡ଼ା ବସିଲା । କୃଷ୍ଣ ଝାଡ଼ା ବସିଛନ୍ତି । ମନେ ମନେ ଉତ୍ତର ପାଇଗଲି, - ବଡ଼ାପା ଠିକ୍ କହୁଥିଲେ, ଯେ କୃଷ୍ଣ ନୁହେଁ ଯେ ବଟିଆ । ଏକା ଦଉଡ଼ାରେ ଧାଇଁଲି, ମନ ଭିତରେ ଉଲ୍ଲାସ ଉଠୁଥାଏ—''ମୁଁ ଜାଣିଲି । ମୁଁ ଜାଣିଲି ।'' ଏହି ଆନନ୍ଦ ।

ବଡ଼ାପା କବାଟ କିଳି ଶୋଇଥିଲେ । କବାଟରେ ଥରେ ବାଡ଼େଇ ଅଟକି ଗଲି, କାହିଁକି ଖରାରେ ବୁଲୁଥିଲି ବୋଲି କାଳେ ଗାଳି ଦେବେ ।

ଚେମୀ ବୋଉ ଖୁଡ଼ି ତଥାପି ମାନିବାକୁ ନା-ରାଜ୍ । କହିଲେ ''ତୁ କି ବୁଝିବୁରେ ବାଦର ମେଞ୍ଚଡ଼ ଟୋକା ବୁଢ଼ୁଦା । କୃଷ୍ଣ କଥା ବୁଝିବୁ,—ତୁ ! ହଇରେ, ନରଲୀଳାଟି

ଯେ, ସମସ୍ତେ ଯାହା କହନ୍ତି ମାହାପୁରୁ ସେଇଆ କରିବେ । ସେ ମାହାପୁରୁ ହେଲେ ବୋଲି ଝାଡ଼ା ଫେରି ଯିବେ ନାଇଁ ? ଏବେ ମିଣିପ ବିଡ଼ି ଟାଣୁଛନ୍ତି, ଯେ କୃଷ୍ଣ ବୋଲି ବିଡ଼ି ଟାଣିବା ତାକୁ ମନା ? ଜଗତ ଯାକର କତୋଟି ମେ, ବିଡ଼ି କଣ ଜଗତରୁ ବାହାର ? ଏ ନୋକା କି କଥା କହୁଛିବା ।"

ମୋ ମନ ମାନିଲା ନାହିଁ । କି କୃଷ୍ଣଙ୍କ କାବୋର ଅତକୁ କୁତୁହଳ କମିଲା ନାହିଁ, ଭକ୍ତ ଥାଏଁ, ଚଢ଼ ବାପାଙ୍କୁ କହୁଥାଏଁ । ସେଇ କେତେ ଦିନ ଗାଁରେ କଣ ଯେ ଲାଗିଥାଏ । ସଂକୀର୍ତ୍ତନ, ହରିବୋଲ, ହାଦ ବୋଲା, ଭଜନ ବୋଲା, ଠା ଠାକେ ପୋଥି ପୁରାଣ ପଢ଼ା, ଦଳ ଦଳ ହୋଇ ଗୀତ ବାଇଦ କରି କୃଷ୍ଣଙ୍କୁ ଧରି ନାଚ, ଘରେ ଘରେ ପିଠାପଣା, କୃଷ୍ଣଙ୍କୁ ଆଗରେ ରଖି ପଟୁଆର ବାହାର କରି ଗାଁ ଯାକ ବୁଲା, ନାହାରେ ବସେଇ ବୁଲା । ପାଖ ଗାଁରୁ ଭଗତ ଦଳ ଆସୁଥାନ୍ତି, ଗହଳି ବଢ଼ୁଥାଏ । ହୁରି ପଡ଼ିଥାଏ, "ସବୁ ଅସୁଖ ନାଶ ଯିବ, ଯେତେଠି ଯେ ଥିବେ, ସମସ୍ତିଙ୍କ ମନୋବାଞ୍ଛା ପୂର୍ଣ୍ଣ ହେବ, ଧନ ଦରବ ସୁଖ ମିଳିଯିବ ।"

ଏକୁଟିଆ ଝେଣ୍ଡା ପରି ଠିଆ ହୋଇଥାନ୍ତି ନାକୁ ବଡ଼ୋପା । ଲୋକଙ୍କୁ କୋଧ ଉଡ଼ାନ୍ତି, "ନିଶାରେ ମାତିଲ, ବୁଦ୍ଧିକି ଚୁଲିରେ ପୁରେଇଲ, ଧର୍ମ କର୍ମ ବୁଡ଼େଇଲ, ବାପ ଅଜାଙ୍କ ଇଜତ ମହତ ତଳେ ପକେଇଲ, ଯାହା କରୁଚ କାନରେ ମଣିଷ ହାତ ଦବ ଶୁଣିଲେ –" ଆଉ କୃଷ୍ଣଙ୍କୁ ଦେଖିଲେ ବାର ଅବର୍ଜିଆ କଥା କହି କୋଧନ୍ତି । ସେ ହସିଦିଏ, କହେ "କଂସାସୁର ଏକଥା କହିବ ନାହିଁତ କିଏ କହିବ ?" ଚାଲିଯାଏ । ବେଳେ ବେଳେ ଭକ୍ତ ମାନେ ଠେଙ୍ଗା ଉଞ୍ଚେଇ ଦଶହରା ପୂଜା ହେଉଥିବା ପୁରୁଣା ଖଣ୍ଡା ଉଞ୍ଚେଇ ବେଇଁ ବେଇଁ ବଡ଼ି ବଡ଼ି ଧାଇଁ ଆସନ୍ତି, ପାଟି କରନ୍ତି "ଆରେରେ ଦୁରାତ୍ମା କଂସାସୁର, ତୋର ମରଣ ନିକଟ ହେଲା," ବଡ଼ୋପା ଫାର୍ସାଟାଏ ମୁଠେଇ ଚାଙ୍କ ଟଙ୍ଗି ପିଣ୍ଡା ଉପରେ ଠିଆ ହୁଅନ୍ତି ପାଟିକରନ୍ତି "ଯେ ଏ ପିଣ୍ଡାକୁ ଉଠିବ ଆଗ ତା ମୁଣ୍ଡଟା ଦାଣ୍ଡରେ ଗଡ଼େଇବି ଜାଣିଥା, ଏଇ ମୋ ପ୍ରତିଜ୍ଞା ।"

ଅନ୍ଧାର ହେଲେ ଦୁଇ କେତେ ଜଣ ବେଳେ ବେଳେ ବଡ଼ୋପାଙ୍କ ପାଖକୁ ଆସନ୍ତି, ଫୁସ୍ ଫୁସ୍ କରି ଗାଁ ହାଲଚାଲକୁ ଗାଳିଦିଅନ୍ତି, ବଟିଆକୁ ଝିଂଗାସନ୍ତି, ବଡ଼ୋପା କହନ୍ତି "ଆଉ ଭଲେଇ ହେନା, ତୁମେ ଛେରୁ ଗୁଡ଼ାକ ।" ସେମାନେ କେତେ କଣ ବୁଝାନ୍ତି, ଚାଲିଯାନ୍ତି ।

କେତେଦିନ କୃଷ୍ଣଲୀଳା ଚାଲିଥାନ୍ତା ମୁଁ ଜାଣେ ନାହିଁ । ସେତେବେଳେ କଣ ବା ମୁଁ ନିଜେ ଜାଣିଥିଲି । ଭାବି ପାରୁଥିଲି । ଆଜି ଭାବୁଛି, ହେଲା ଏଥିପାଇଁ ଯେ ଆମ ଗାଁ ଲୋକେ ତାଙ୍କ ଅନ୍ତର ଭିତରେ ଯେଉଁଆ ଲୋଡ଼ୁଥିଲେ, ଦେଖିପାଇଁ ନିଜକୁ ତିଆରି କରିଥିଲେ । ଠକି ହେବାକୁ ଖୋଜିଲେ ଠକ ଆସନ୍ତି, ବାନ୍ଧି ହେବାକୁ ମନ ହେଲେ ବନ୍ଧନ ଆସେ, ମାଡ଼ ଖାଇବାକୁ ମନ ହେଲେ ମାଡ଼ ବସେ । ମନ ଝୁରେ, ହାତ ଗୋଡ଼ ସେଇଆ ବେ ମୁହେଁ, ଘୋଟ କଢ଼ାଏ, ଘଟଣା ଘଟେ । ତେବେ, ମୋ ଭାବିବାରେ କଣ ଅଛି ? ଗୋଟମା ଗାଁ ଗୋଟାକପାଇଁ ମୁଁ କଣ ଖଡ଼ି ଗୋଟାଳି ସାଧି ଭବିଷ ଦେଖିଥିଲି ? ମୋ ଭାବନା ଭୁଲ୍ ବି ହୋଇପାରେ, ହୋଇଥିବ । କିନ୍ତୁ ଘଟଣା କଣ ଭୁଲ୍ ?

କୃଷ୍ଣଲୀଳା ଚାଲିଥାଇଥିଲା ନାହିଁ ଗାଁ ଭିତରେ ଅନ୍ତତଃ ଜଣେ ଲୋକ ତା ବିରୁଦ୍ଧରେ ବାଣ ହୋଇ ଠିଆ ହେଲା ବୋଲି । ବଡ଼ ପାଟିରେ ଦାଣ୍ଡ କମ୍ପେଇ ତୁହାଇ ତୁହାଇ ଶୁଣାଉଥିଲା, "ଯେ ମିଛ, ଯେ ଫାନ୍ଦି, ଯେ ଧପ୍‌ପା ବାଜି, ମୁଁ ଯାକୁ ମାନେ ନାହିଁ ।

ଯେ ଅନ୍ୟାୟ, ଯେ ପାପ, ମୁଁ ଯାକୁ ସହିବି ନାହିଁ ।" ନାକୁ ବଡ଼ାପା ।

ସେତେବେଳେ ଭାବୁଥିଲି, ବଡ଼ାପା ସେପରି କହିବାରେ ଅସ୍ୱାଭାବିକତା କିଛି ନଥିଲା । ନା ସ୍ୱାଭାବିକ କି ଅସ୍ୱାଭାବିକ କିଛି ଭାବୁ ନଥିଲି । ପିଲାମନ, ସେପରି କହିଲେ ବୋଲି ସେ କଣ ଗୋଟାଏ କଲେ ଏଭଳି ଧାରଣା ମୋର ନଥିଲା ।

କିନ୍ତୁ ଆଜି ପଛକୁ ଅନାଇଲେ ଦେହ ଶୀତେଇ ଉଠେ,—କଣ ସେ ନକଲେଟି ସେହି କଥା କେଇପଦ କହି । ସେତେବେଳେ ଗାଁରେ କୃଷ୍ଣ ଅବତାର ନାଁରେ ଆଖିବୁଜା ବିଶ୍ୱାସ, ତା ବିରୁଦ୍ଧରେ ନିବୁଜା ମନ ଭିତରେ କିଛି ଭାବିବାକୁ ଲୋକୁଆ ଭୟ,—ସତେ ଯେମିତି ମନ କଥାର ସ୍ୱର ପଦାକୁ ଶୁଭିବ କିଏ ଶୁଣିବ । କହ କୃଷ୍ଣ କୃଷ୍ଣ ତମେ ମହାପୁରୁ ତମେ କୃଷ୍ଣ, ଗୋଟି ଗୋଟିକିଆ ହୋଇ କହ, ଏକାସଙ୍ଗରେ କହ, ଅନ୍ୟ କଥା କହନା । କୃଷ୍ଣ ନୁହଁ କହିବାକୁ ଯେମିତି ପାଟିରେ ତୁନି ବନ୍ଧା ହୋଇଛି, ତାଲା ପଡ଼ିଛି । କହିଦେଲେ ସତେ ଯେମିତି ସଂଗେ ସଂଗେ ମୁଣ୍ଡରେ ପାହାର ପଡ଼ିଯିବ, ମୁହୂର୍ତ୍ତକେ ଚଉଦିଗ ଅନ୍ଧାର ଦିଶିବ । ଗାଁ ଲୋକଙ୍କ ହାତରେ ବଳଅଛି, ଠେଂଗା ଅଛି, ଖଣ୍ଡା ଅଛି, ରାଗିଲେ ମୁହୂର୍ତ୍ତକେ ମାରଣା ଖଣ୍ଡ ହୋଇଯିବେ, ତାଙ୍କୁ ମତେଇବାକୁ ଟେହିବାକୁ ରଗେଇବାକୁ ଅଛି ତାଙ୍କ କୃଷ୍ଣ ଅବତାର, ଯାହାକୁ ମୁଣ୍ଡେଇଛନ୍ତି, ଆଶା କରିଛନ୍ତିସେ ତାଙ୍କ ବାଞ୍ଛା କଳ୍ପତରୁ ।

"ଆରେରେ ଦୁରାଚ୍ଛର କଂସାସୁର, ଯେଉଁ ଜିଭରେ କହୁଚୁ ସେ ଜିଭଟା ମୂଳରୁ ଓପଡ଼ା ହବ, ଆମେ ତୋ ଛାତି ଚିରିବୁ, ତୋ କଲିଜା ଛିଣ୍ଡେଇବୁ, ତୋ ଅନ୍ତ-ନାଡ଼ି କାଢି ବେକରେ ପଇତା କରିବୁଁରେ ପାମର ଅସୁର ।"

"ହଉ ହଉ, ତିହକୁତୀମାନେ, ମୋର ପଦେ କଥା, ମୋ ପିଣ୍ଡାକୁ ଉଠିବ କି ଓଦେଖିଥା ଏ ପାର୍ଶ, ବେକ ମୁଣ୍ଡାରୁ ଦେବି ଡିଗର କରି ।"

ଆଜି ଭାବୁଛି, କେମିତି ସେ ଏତେଟାଣରେ କହିପାରୁଥିଲେ ।

ବଡ଼ ମା ନଥିଲେ, ବହୁତ ଦିନୁଁ ଯାଇଥିଲେ । ଦି ପୁଅ, ଜଣେ ଘରୁ ପଳାଇ, ଯାଇ ଗ୍ଲାଳିଶ ବର୍ଷ ହୋଇଥାଏ । ବଞ୍ଚିଛି କି ମରିଛି ପତ୍ତା ନାହିଁ । ଜଣେ ବିଦେଶରେ ଥାଏ, ଆସେ ନାହିଁ କି ପତ୍ରରେ ନାହିଁ, ଆପଣା ସଂସାର ବୋଲି ମାୟା ନଥାଏ । ସମ୍ପତ୍ତିକି ଲୋଭ ନଥାଏ । ଆପେ ଅର୍ଜିଥିଲେ ବହୁତ, ବାପ ଅଜା ବି ଛାଡ଼ି ଯାଇଥିଲେ ବହୁତ, ଦି ପୁଅଙ୍କ ପିଛା ସବୁ ଉଡେଇଥିଲେ । ଜମି ଜମାଣ, ଭାଗରୁ ଯାହା ମିଳେ । ହାତରେ ଫୁଟେଇ ଖାଇ ଯାହା ବଳିଲା ତାକୁ ଗାଁ କାମରେ ଉଡ଼ାନ୍ତି । ରାମ ନଅମୀ ଯାତ୍ରା ତାଙ୍କରି ଧନରେ ହୁଏ, ସେଇଥିରୁ ଠାକୁରଙ୍କ ସାଜ, ଯାତ୍ରା ପାଇଁ ପୋଷାକ ମୁଖା, ନିଶଦାଢ଼ୀ, ତାଳ, ବାଜା । ସେଇଥିରୁ ବର୍ଷ ସାରା ନଈବେ ମଈବେ ଗାଁ ଦାଣ୍ଡରେ ପିଲାଙ୍କ ପାଇଁ ବାଳଲୀଳା, ମଈବେ ମଈରେ ଗାଁ ଯନ୍ତାଳକୁ ଆଗ ସେ ଭେଳାନ୍ତି ଭେଡା ଦିଅନ୍ତି, ଦୋଳଯାତ୍ରା ହେଲେ ଯାହାଥାଏ ବୋହି ଦିଅନ୍ତି । "ଥିଲେ ଥିବି, ମଲେ ଯିବି" ଏଇଆ କଥା କଥାକେ କହନ୍ତି, ଟୋକା ବୁଢ଼ା ସମସ୍ତଙ୍କ ସଙ୍ଗେ

ତପାଭଠା କରନ୍ତି, ମୃଦଙ୍ଗ ଆଖଡ଼ାରେ ବଜାନ୍ତି, ନାଚନ୍ତି ବଜାନ୍ତି । ନିଜେ ନାଚି ଅଥବା ଗତେ ଟୋକାଙ୍କୁ ନାଚ ଶିଖାଉଥିବାର ବି ଦେଖିଛି, ଗୀତ ଗାଇ ଧିଯା ବଜେଇବା, ପଖୋଉଜ କି ମୃଦଙ୍ଗର ତାଳ ବଜେଇବା ଯେତ ଯବୁଦିନେ । ନିଜ କାମ ନିଜ ହାତେ ହାତେ, କାହାକୁ ଖୁଆମତ ନାହିଁ ।

ବନ୍ଧ କୂଳେ ତେଂରା ଦେଉଦାରୁ ଗଛରେ ଶାଗୁଣାଟାଏ ବସା ବାନ୍ଧିଲା । ବଡ଼ାପା କହିଲେ "ଗାଁ ବସ୍ତି ଉପରେ ଶାଗୁଣା । ଗାଁକୁ ଅଶୁଭ । ଘଉଡ଼ ଯାକୁ ।" ଟେକା ଭୁଲିଲା, କିନ୍ତୁ ଏତେ ଉଞ୍ଚକୁ ପାଏନାହିଁ । 'ଚଢ଼ ହାଣ ବସା' ସେ ବଟେଗିଲେ । କେହି ଭରସିଲେ ନାହିଁ । ଏତେ ଉଚ, ଡାଳ କେତେ ସରୁ ସରୁ ଦିଶୁଛି, ମଣିଷ ପଡ଼ିଲେ ମଲା । ପୁଣି ସେ ଗଛରେ କଟକଟିଆ ନାଗ ଥାଏ ଲୋକେ କହନ୍ତି । କଟୁରୀ ଅଣ୍ଟାରେ ଖୋଷି ଆପେ ଚଢ଼ିଗଲେ ବୁଢ଼ା, ଶାଗୁଣା ବସା ହାଣି ପୋଯାଡ଼ି ଦେଲେ, ଓହ୍ଲାଇ ପଡ଼ିଲେ ।

ସେହି ସେ ନାକୁ ବଡ଼ାପା, ଜୀବନକୁ ଲୋଭ ନଥିଲା ।

ଗାଁ ଲୋକେ ଚଦୁଥାନ୍ତି, ଧମକୋଉଥାନ୍ତି । ଦିନେ କହିଲି 'ବଡ଼ାପା ।" ମୁଁ କାନ୍ଦିଲି । ମତେ ଥାପୁଡ଼େଇ ଦେଇ କହିଲେ "ରହମ ବୁଢ଼ୁଛି, ଜନ୍ମ ହୋଇଲେ ନଷ୍ଟେ ମରି—ମରଣ ଛାରେ କିପାଁ ଡରି ?"

କୃଷ୍ଣବଳ ନିଶ୍ଚୟ ବାଧ୍ୟ ହେଲେ କୃଷ୍ଣଙ୍କୁ କହିବାକୁ, "ମହାପ୍ରଭୁ, କେତେ କାଳ ଏ ଦୁଷ୍ଟ କଂସାସୁର ଏମିତି ଦ୍ରୋହ କରୁଥିବ, ନିନ୍ଦା କରୁଥିବ ? ତୁ ନାଥ ପରମ ଦୟାଳୁ । ଦୁଷ୍ଟ ନିବାରି ସନ୍ଥ ପାଳୁ । ଫୁଙ୍କ୍ ତୋ ଶଙ୍ଖ । ପେଶ୍ ତୋ ଚକ୍ର । ପିଟ୍ ତୋ ଗଦା । ଛାଡ଼୍ ତୋ ପଦ୍ମ ।"

"ସେମିତିରେ ହେଇଟା ମୋକ୍ଷ ହୋଇଯିବ ସେମିତି ନାଇଁ ସେମିତି ନାଇଁ", ଆଉଜଣେ କହିଲା, "ମହାପ୍ରଭୁ ତାକୁ କଲବଲ କରି ମାର, ସେଉଠୁ ନରକକୁ ପଠା ।"

କୃଷ୍ଣ ଚିନ୍ତା କଲେ । କହିଲେ "ଅଭିଶାପ ଦେବି ।"

ସେଦିନ ଦାଣ୍ଡରେ ସେ ଗଲାବେଳେ ବଡ଼ାପା ପାଟି କଲେ "ଆରେ ଭଣ୍ଡ ଭଣ୍ଡ ବଟିଆ, କେଇଦିନ ଏ ଯୁଆଡ଼ି ଚଳେଇଥିବୁରେ ? ଆରେ ଯେ ବାଘର ଘରେ ମିରିଗର ନାଚ ଦେଖାଉଚୁ, ଉଧୁରିବୁ ନାଇଁରେ, ଉଧୁରିବୁ ନାଇଁ ।"

ସଙ୍ଗେ ସଙ୍ଗେ ସମସ୍ତଙ୍କୁ ଶୁଣେଇ କୃଷ୍ଣ ଇସ୍ତାହାର ଦେଇଲେ,

"ଶୁଣିଥା ସମସ୍ତେ ଆଜିଠୁ ଦଶଦିନେ ଯେ ଦୁରନ୍ତର କଂସ ଧ୍ୱଂସ ହେବ, ତା କାଳ ପୂରିଲା, ଶାପ ଦେଲି ।"

"ଆରେ ତୋ ଶାପକୁ ହେଇଟି ମୋ ଛେପ । ଥୁ । ତୋ ଶାପର ଏଡ଼ିକି ଯଦି କାଟୁ ଅଛି ଧ୍ୱଂସ କରୁନୁ ଦେଖନ୍ତେ ସମସ୍ତେ, କର୍, ମୁଁ ଠିଆ ହୋଇଛି ।"

ସମସ୍ତେ ତାଙ୍କୁ ଅନାଇଁ ଠିଆ ହୋଇଥାନ୍ତି, ସତେ ଅବା ଦେଖିବେ ତାଙ୍କ ମୁଣ୍ଡ ହାକୁକିନା ଜଳି ଉଠିବ । କିନ୍ତୁ କୃଷ୍ଣ କହିଲେ

"ରେ କଂସାସୁର, ତତେ ଆଉ କ୍ଷମା ନାହିଁ, ବହୁତ କ୍ଷମା କଲିଣି, ଆଜିଠୁ ଦଶଦିନ ଦିନ ତୁ ଧ୍ୱଂସ ହେବୁ ।"

ବଡ଼ାପା କହିଲେ "ଶୁଣିଥା ସମସ୍ତେ, ଆଜିଠୁ ଦଶଦିନ ଦିନ ଯଦି ମୁଁ ନ ମରିଛି ତେବେ ଆଜିଠୁଁ ଏଗାରଦିନ ଦିନ ଯା ମୁହଁରେ ଲୋକେ ମୁତିବେ, ଏଇ ସର୍ତ୍ତ ମୋର ରହିଲା ।"

ପୁଣି ଘୋ ଘା, ଚଢ଼ା ଚଢ଼ି, ବଡ଼ାପାଙ୍କୁ ଗାଳି, ସେଇଠୁ ହଟିଗଲେ । "ଦେଖ୍, ଯାହା କହିଥିଲି ମନେ ରଖିଥିବୁ" ବଡ଼ାପା ତୁନିତୁନି କରି ମତେ ଚେତେଇ ଦେଲେ, "ନିଘା ରଖିଥିବୁ, ଯାହା ଶୁଣିବୁ ଯାହା ଦେଖିବୁ ଆସି ମତେ କହିଦବୁ । ଏମାନେ ମୋ ଅନର୍ଥ ପାଞ୍ଚୁଛନ୍ତି । ବାରିରୁ ପିଜୁଳି ତୋଳିନେବେ, କଦଳୀ ହାଣିନେବେ, କେତେବେଳେ ଏ ଘରେ ନିଆଁ ଲଗେଇ ଦେବେ, କିଏ ଜାଣିଚି ?"

ମୋର ଆହୁରି କୁତୂହଳ ବଢ଼ିଲା । ବୁଲି ବୁଲି ଦେଖୁଥାଏଁ, ଉଣ୍ଡୁଥାଏଁ, କାନେଇଥାଏଁ । ସେହି ଚଢ଼ା ଚଢ଼ି ଝାଲି ଶୁଣୁଥାଏଁ, ସମସ୍ତେ କୁହାକୋହି ହେଉଥାନ୍ତି ବଡ଼ାପା ମରିବେ । କାଳ ପୂରିଲା । ଲୋକେ ତାଙ୍କୁ ବି ଅନିଷା କରିଥାନ୍ତି, କଣ ବେମାରି ଧରିଲାଣି କି ନାହିଁ । କିଏ କହୁଥାଏ, "ବେମାରି କଣ ଦରକାର ? ସାପ କାମୁଡ଼ିବ, ନ ହେଲେ ବଜ୍ର ପଡ଼ିବ, ନହେଲେ ହଠାତ୍ ଗୋଟାଏ ଝଡ଼ ବାନ୍ଧି, ନଶିଷଟା ଟଳି ପଡ଼ିବାକୁ କେତେ ବେଳ ଲାଗେ ?"

ବଡ଼ାପା ତାଙ୍କ ଅଭ୍ୟାସ ଅତୁଟ ରଖିଥାନ୍ତି, ସକାଳୁ ଗାଧୁଆ, ସକାଳେ ତି ପହରେ ସଞ୍ଜରେ ଘଣ୍ଟାଏ ଲେଖାଏଁ ଠାକୁର ପୂଜା ନିଜର ନିତ୍ୟାନି କାମ, କିଛି ଅଟକେ ନାହିଁ । ଗାଁରେ ବୁଲନ୍ତି, ଗାଁ ମତି ଗତି ବିଷୟରେ ତାଙ୍କ ମତାମତ ତାଙ୍କ ସମାଲୋଚନା ଗପନ୍ତି, କିଏ ଶୁଣୁ ନ ଶୁଣୁ । ତାଙ୍କ ସାହସ ଦେଖି ଲୋକେ କାବା ହୁଅନ୍ତି । ନାନା କଥା କହନ୍ତି ।

"ବୁଢ଼ାର ଭରି ହେମନ୍ତ ।"

"ଆରେ ଅସୁର ପରୁ, କଂସାସୁର, ତାଙ୍କ ବହପ କେତେବ ଉଣା ଥିଲା ? ମଲାଯାଏ ଯୁଝୁଥିବେ । ମୁଣ୍ଡ ଛିଣ୍ଡିଯିବ, ଶରଣ ପଶିବେ ନାହିଁ ।"

"ଏତେ ଟାଣ ଦେଖାଇ କଣ ହେବ ? ମରଣ ନିଶ୍ଚିତ ।"

ଦଶଦିନ ହେଲା । ସେଦିନ ଗାଁରେ ଭରି ଚହଳ । ସଂକୀର୍ତ୍ତନ ଆଉ ମଝିରେ ମଝିରେ ଜୟକାର ଗର୍ଜନରେ ଗାଁ ଉଠୁଥାଏ ପଡ଼ୁଥାଏ । କେତେ ଲୋକ ଦିନଯାକ କୁହାଟ ଛାଡ଼ୁଛନ୍ତି, "ଆଜି—ଆଜି କଂସାସୁର ବଧ ହେବ ।"

ବେଳେ ବେଳେ ଦଳେ ଦଳେ ଲୋକ ପାଟି କରି କରି ବଡ଼ବାପାଙ୍କ ଟର୍ଚ୍ଚି ପିଣ୍ଡାଯାକେ ଦଉଡ଼ି ଯାଆନ୍ତି—"ରେ ରେ ରେ ରେ ଦୁଷ୍ଟ କଂସ, ଇଷ୍ଟ ସ୍ମର୍, ଆଜି ତୋ ଶେଷ ଦିନ ।" ପୁଣି ଲେଉଟି ଯାଆନ୍ତି ।

ଖଣ୍ଡେ ଦୂରରେ ସାହି । ମୋ ବୋଉ କାନ୍ଦୁଥାଏ । କୁଟୁମ୍ବର ମାଇପେ ମନଦୁଃଖ କରୁଥାନ୍ତି । ଦେମୀ ବୋଉ ଖୁଡ଼ୀ କହିଲେ—

"ମା'ପୁରୁ କହିଚନ୍ତି ସେ କଂସ । ମିଛ ନୁହେଁ । ତେବେ ତାଙ୍କୁ କଂସ କରି ଜନମ ଦେଲା କିଏ ? ସେଇ ମା'ପୁରୁ ତ । କାହିଁକି ? ସେ କଣ ନିଜେ ଲୋଡ଼ିଥିଲେ ? ହଉ, ମା'ପୁରୁଙ୍କ ଲୀଳା, ତାଙ୍କ ଦୟା ।" ସେ ବି କାନ୍ଦୁଥାନ୍ତି ।

ରାତି ହେଲା । ବଡ଼ାପା ଖାଇଲେ, ଶୋଇଲେ ।

ସକାଳ ପାହିଲା ବେଳକୁ ତାଙ୍କ ଦୁଆର ଆଗରେ ଲୋକ ଗହଳି । କବାଟ ଖୋଲିବ କି ନାହିଁ ?

ପାଟି ଶୁଣି ବଡ଼ାପା ବାହାରିଲେ । ବାବା ହୋଇ ସମସ୍ତେ ତାଙ୍କୁ ଅନେଇ ରହିଲେ । ବଡ଼ାପା ରଡ଼ିଲେ, 'କାହିଁ ଗଲା ସେ ବଜାତ୍ ବଟିଆ ? ଠିଆ ହୋଇଛ କଳା ପରି ଚାହିଁଛ କଣ ? ଧରିଆଣ ତା ଚୁଟି ଧରି । ସରୁଚ, ଦଶ ଦିନ ତ ଗଲା, କେଉଠି ତା ଶାପ ଫଳିଗଲା ? ହେଉଛଟି ଗୋଟାଏ ତ ମୁଁ ।''

ଏତେ ତ । କୃଷ୍ଣ କାହିଁଗଲେ ? ଖୋଜା ପଡ଼ିଲା । ମଥୁରି ସାହୁ ଘରେ ତ ନାହାନ୍ତି, ଝାଟ ଖାଲି, ରଡ଼ିରେ ଥିଲେ । ଗାଁସାରା କେଉଁଠି ଦିଶୁନାହାନ୍ତି । ଆଖ ପାଖରେ କେଉଠି କେହି ଦେଖି ନାହିଁ ।

କୁଆଡ଼େ ଉଭେଇ ଗଲେ କୃଷ୍ଣ ? ରୋଗୀର ରୋଗ ଭଲ ହୋଇ ନାହିଁ, ଛୋଟାର ଗୋଡ଼ ସିଧା ହୋଇ ନାହିଁ, ଗରିବଙ୍କ ଭଙ୍ଗା କୁଡ଼ିଆ ଧଳିଆପିଟା ବଡ଼ଘର ହୋଇନାହିଁ, କାହାରି କିଛି ସଂପଦ ବଢ଼ି ନାହିଁ, ଆଶା ଫଳି ନାହିଁ, ଚେମୀ ପାଇଁ ବର ମିଳି ନାହିଁ, ଏବେ ଆଶା କରି "ହେଉ ହେବ'' ଭାବୁ ଭାବୁ କୁଆଡ଼େ ଅଦୃଶ୍ୟ ହେଲେ । ବାଟେ ଘାଟରେ ସେହି କଥା । ଲୋକେ ଗପୁଛନ୍ତି, ଗର୍ମ ବିଦାରି ହେଉଛନ୍ତି, ବୃଥା ତାକୁ ମୁହଁକୁ ଅନେଇ ବସି କେତେଦିନ ମାହାଳିଆ ଗଲା, କାମ ମାରି ହେଲା, କଉଡ଼ାକର ଲାଭ ନାହିଁ । ଖାଲି କଣ ସେତିକି ? ତାକୁ ଦେବାରେ ମାତି କିଏ କେତେ ଧନ ଖର୍ଚ୍ଚ କରି ପକାଇଛି, ଘର ଉଜାଡ଼ି ଦେଇ ବସିଛି, କିଏ କେତେ ତାକୁ ଭେଟି ଅଜାଡ଼ିଛନ୍ତି ଟଙ୍କା ପଇସା, ସୁନା ରୂପା, ଦାମୀ ଲୁଗା—ସବୁ ଗଲା । ଆଉ କେତେ ଲୋକ,—ବାଡ଼ ବୁଢ଼ିଆ ହୋଇ ପ୍ରକାର ପ୍ରକାର ସେବା କରିବାରେ ଲାଗିଥିଲେ, ବାର ହାନିମାନିଆ କାମ, ଅଇଣ୍ଠା ତୁଣ୍ଡରେ କହିବାକୁ ଲାଜ । କେତେ କଥା ପଦାକୁ ଫୁଟିଲା, କେତେ କଥା ଲୋକେ ଘୋଡ଼ାଇ ପକାଇଲେ । କିନ୍ତୁ ସମସ୍ତିଙ୍କ ତୁଣ୍ଡରେ ସେହି ଏକା କଥା—"ସେଇଟା କୃଷ୍ଣ ନୁହେଁ, ବଟିଆ । ଠକ, ଭଣ୍ଡ, ଚୋର, ବଦମାସ, ଆଉ ଥରେ ଭେଟ ମିଳନ୍ତା କି ।''

ଲୋକେ ବଡ଼ାପାଙ୍କ ପାଖକୁ ଆସିଲେ, ବାଁରେଇ ହେଲେ, ତାଙ୍କୁ ପ୍ରଶଂସା କଲେ, ତାଙ୍କଠୁଁ କ୍ଷମା ମାଗିଲେ । ସେ କହିଲେ,

"ତେମଠିଁ ଚେତା ପଶିଲା ସିନା, ବୁଧି କାହିଁ ? ବୁଧି ଥିଲେ ଭାବନ୍ତ କାମ ନ କଲେ କେବେ କିଛି ବା ମନକୁ ହୋଇଯିବ ? ଆରେ ଓଲୁ, କାମ ନ କଲେ ଖାଇବାକୁ ଦଉଥିବ କିଏ ? ନିଜ ମନକୁ ଦେହକୁ ଘରକୁ ଗାଁକୁ ନିଜେ ସଫା ନ କଲେ କରିଦେବ କିଏ ? ପୁଣି, ଯେତେ କାମ କଲେ ବି, ଯେଉଁଟା ଅସମ୍ଭବ ସେଇଟା ହେବ କେମିତି ? ଖାଲି ଆଶା କଲେ ? ଆଶା କଲେ କାମ ନ କରି ରାତିକା ରାତି ବଡ଼ଲୋକ ହେବ ? ବୁଧି ନଥିଲାଯାକେ ତୁମେ କାମ ନ କରି ଆଶା ପଛରେ ଧାଇଁ, ତୁମକୁ ଲୋକ ଠକୁଥିବେ, ଅଡ଼େଇଥିବେ, ନଚାଉଥିବେ । ଆଜି ବଟିଆ ସିନା ଗଲା, କାଲି କୋଉ ହୁଟିଆ ନ ଆସିବ କିଏ କହିବ ?''

ସଞ୍ଜବୁଡ଼େ ଗାଁ । ଲୋକ ଜମା ହେଲେ । ବଡ଼ ଫାଳ ଆଉ ଦଉଡ଼ିରେ ବଡ଼ାପା ଗୋଟାଏ ରୂପ ଗଢ଼ିଥିଲେ କହିଲେ "ଏଇଟା ବଟିଆ'' । ଯାକୁ ଯାହା କରିବାର କର ।''

—

# ପରିଦର୍ଶକ

ସମ୍ବାଦଟା ଅବଶ୍ୟ ଉଡ଼ାଉଡ଼ିରେ ଆସିଥିଲା ପରିଦର୍ଶନକାରୀ ଆସିବେ ବୋଲି କିନ୍ତୁ କିଏ ଜାଣିଥିଲା ଏମିତି ହଠାତ୍ ସେ ଆସି ପଡ଼ିବେ ? ଗସ୍ତ ମଫସଲକୁ ଏମିତି କେତେ ସମ୍ବାଦ ଆସେ, କିନ୍ତୁ ସବୁ ସମ୍ବାଦ ସତ ହୁଏ ନାହିଁ । ଯାଙ୍କ ଆସିବା କଥାଟା ବି ହାଟରୁ ଶୁଣିକରି ଆସି ଯେତେବେଳେ ବିନେଇ ପରିଡ଼ା ଦନେଇ ପଣ୍ଡା ଦୋକାନରେ କହିଥିଲା ସେତେବେଳେ ମାଷ୍ଟ୍ରେ ଅବିଶ୍ୱାସରେ ହସି ଦେଇ କହିଥିଲେ 'ହଁ ହଁ ଆସିବେ—ଆସିବେ—ଆଉ କିଛି କାମ ନାହିଁ ଯେ ଏ ମଫସଲକୁ ଦଉଡ଼ି ଆସିବେ । ଦେଖିବ ଟଇଥା । ଆରେ ବାବୁ ଏ ଦୁନିଆଁରେ କେତେ ବଡ଼ ବଡ଼ କଥା ନ ଘଟୁଛି, ଘୋର ରାଜନୈତିକ ପରିବର୍ତ୍ତନ, ଯୁଦ୍ଧ, ଭୂମିକମ୍ପ, କ୍ରିକେଟ୍ ଖେଳ, ଏଥିରେ ଚଣ ନା ଲୋକ ଦଉଡ଼ିଆସିବେ ମଫସଲକୁ ? ଧର ଯଦି ବା ଆସିବେ, ତେବେ ନାଲି ସଡ଼କ ଛାଡ଼ିଲେ ତ ଖାଲି କହାରି ବିଲ ଦଣ୍ଡା ବାଲିପଠା, ମଝିରେ ତ ନଈଟା, ମଟର ଆସିବା କଥ ନୁହଁ, ସାଇକଲ ଆସିବା କାଠିକର ପାର, ଖରରେ ଏତେଦୂର କିଏ ଆସିଲାଣି ନା ? ଖାତାଟା ମଗେଇ ନେଇ ପାରନ୍ତି, ଇନ୍‌କ୍ୱାଇରି କରି ଦେଇ ଡାକବଙ୍ଗଳାରେ ରହି ଖାତାରେ ପରିଦର୍ଶନର ମନ୍ତବ୍ୟ ଲେଖିଦେଇ ପାରନ୍ତି, ତା ନକରି ପରିଦର୍ଶନ କରିବାକୁ ଏଠିକି ବୋଲି ଚାଲି ଆସିବେ । ସେ କଣ ତୁମ ଆମ ଭଳିଆ ଲୋକ ହେଉଛନ୍ତି ନା ?''

ଦନେଇ ପଣ୍ଡା କାଠ ତାବଲ ଉପରେ ତା ଆସନ ଉପରେ ବସିଥାଏ, ହାତରେ ଏକ ଲମ୍ବା ଦଣ୍ଡି, ମୁଣ୍ଡ ଉପରେ ଶିକରୁ ନାନା ଦ୍ରବ୍ୟ ଓହଳିଥାଏ, ମାଳମାଳ ହୋଇ ସୂତାରେ ବନ୍ଧା ହୋଇ ବିଡ଼ି, ନଲ୍‌ଟଣ ପିତା ଗୋଛାଏ, ଗୁଡ଼ାଏ ଚାରି ପଇସିଆ ଚୂହା ପୁଟ୍‌କା ତା ଉପରେ ବୀର ପୃଥ୍ୱୀରାଜ ଘୋଡ଼ା ଉପରେ ଚଢ଼ି ମୁକୁଟ ନାଇ ଲମ୍ବା ବର୍ଛା ଧରି ବଡ଼ ବଡ଼ ଆଖିରେ ଦୁନିଆକୁ ଅନାଇଁ ରହିଲା ଅବସ୍ଥାର ଛବି, ତା ପଛ ପଟରେ କାନ୍ଥ ଉପରେ ନାନା ପ୍ରକାର ଛବି ମରା ହୋଇଥାଏ, ଦେଶର କେତେ ଭୂତପୂର୍ବ ମନ୍ତ୍ରୀଙ୍କର ଯାହାଙ୍କ ଭିତରୁ କାହାରି କାହାରି ତିରୋଧାନ ବି ଘଟିଛି । କେତେ ପ୍ରସିଦ୍ଧ ଜନନାୟକଙ୍କର ଛମାସ ତଳେ ସହରକୁ ଆସିଥିଲା ଏକ ସିନେମା ଯେ ତାର ବିଜ୍ଞାପନ ଛବି, ଏକ ଗଣେଶ ଛବି, ଖୁବ୍ ଅଳ୍ପ ଲୁଗାପଟା ପିନ୍ଧି ଅଧା ହସଟିଏ ମୁହଁରେ ଖଞ୍ଜି ସଳଖେ ସାମ୍ନାକୁ ଚାହିଁଥିବା ଅବସ୍ଥାରେ ସିନେମା ଅଭିନେତ୍ରୀ ଶ୍ରୀମତୀ ଉଲ୍‌ଫାଙ୍କ ରଙ୍ଗିଣୀ ଛବିଟିଏ, ଆଉ ଗୋଟିଏ ଜାତୀୟ ସଞ୍ଚୟ ଯୋଜନାର ବିଜ୍ଞାପନ ।

ତର୍କ ବୁଝେଇ ଲୁଣ ଚି'ପଇସାର ଜଣକୁ ଦେଉ ଦେଉ ଦନେଇ ପଣ୍ଡା ତାଙ୍କ ଯୁକ୍ତିକୁ ସମର୍ଥନ କରି କହିଥିଲା, "ମାଷ୍ଟ୍ରେ ଯାହା କହୁଚ ଠିକ୍ କଥା । ବସ ତୁନି ହୋଇ । କାହାର ଗରଜ ପଡ଼ିଛି ପରିଦର୍ଶନ କରି ଆସିବ ?"

"ଅସନ୍ତ ଭଲା ! ନ ଆସିଲେ ଆମ କାମ କଣ ଦେଖିବେ କଣ ଜାଣିବେ ?"

ଦନେଇ ପଣ୍ଡା କହିଲେ "ହଁ ସେଇଆ ନୁହଁ କଣ ?" ତାଙ୍କ ଦେଖା ଦେଖି ଜଗୁ ସେଠୀ, ମୋହନ ଖେଇ, ନରି ମହାରଣା, ଛେଣ୍ଟ ରଥ ଏମାନେ ବି କହିଲେ, "ସେଇଆ ନୁହେଁ କଣ ?"

କିନ୍ତୁ ମାଷ୍ଟ୍ରଙ୍କ ମନ ଶାନ୍ତି ଲାଗିଲା ନାହିଁ । ମନ ଭିତର ଘୁଣ୍ଟାଳି ହେଲା । ଭାବିଲେ "ସତେ ଯଦି ସେ ଆସି ପହଞ୍ଚିବେ ? ସେକଥା କିଏ ମନା କରିବ ? ଟିକିଏ ଛୁଟିଆର ଥିଲେ ଭଲ ।" ଅଚ୍ଛା ମୁଷ୍କିଲ କଥା, ଦ୍ୱିତୀୟ ଶିକ୍ଷକ ଉଦ୍ଧବ ଉଷ୍ଣ୍ଟୁଳ ସାମାନ୍ତ କେଉଁଦିନୁ ଦାଡ଼୍ ନାହାନ୍ତି—ଶାମ ସ୍ୱଉତୁସ୍ୱୟେ, ଗାଁରେ ନୂଆ ଘର ତିଆରି ତୋଳା ଲାଗିଛି । ବିଚରା ପନ୍ଦର ଦିନ ହେଲା ସେଇଥିରେ ବ୍ୟସ୍ତ । ହେଡ଼ପଣ୍ଡିତେ ଶାମ ସ୍ୱଉତରଙ୍କ ଅଭାବ ବେଶୀ ବେଶୀ ଅନୁଭବ କରୁଛନ୍ତି । ମନେ ପଡ଼ୁଛି,—ମୁହଁ ଖୋଲ୍ ଟିକିଏ, ଅମାନିଆ ଆଉ ଅଡାଗିଆ ବି, କିନ୍ତୁ ଚଳେଇ ନେଇ ଭାବୁଛନ୍ତି, ଯାହା କହ ପଛେ କଥାବାର୍ତ୍ତାରେ ଚାଲାକ ଚତୁର ଭାରି । ଟୋକା ବୟସ, ପଚିଶି ଡେଇଁ ନାହିଁ, ଗଜୁରୁ ଗଜୁରୁ ନିଶ ରେଖିଛନ୍ତି, ବିଶାଳପାତିଆ ମୁହଁ, ପୋଷାକ ଲୁଙ୍ଗୀ ଗେଞ୍ଜି ଚପଲ, ପୂରା ଆଧୁନିକ, ବୟସ ଯେତି ଟିକିଏ ଅମାନିଆ ହେବା ତ ସ୍ୱାଭାବିକ । କାହାରିକି ଡର ଭୟ ନାହିଁ, ଭଡ଼୍ ଭଡ଼ ଉତ୍ତର ଦେଇଦେବ, ଖାଲରେ ପଡ଼ୁକି ଢିପରେ ପଡ଼ୁ । ସ୍ୱଉତର ମାଷ୍ଟ୍ର ଟୋକାଟା ପାଖରେ ଥିଲେ ଭଲ ହୋଇଥାନ୍ତା ।

ତାଙ୍କ ନିଜର ସାହସ ବସି ବସି ଦବି ଦବି ଯାଉଛି ପରିଦର୍ଶନ ନାଁ ଶୁଣି । ପଦାକୁ ଅନେଇଲେ ଦୃଷ୍ଟି ଯାଇ ଅଟକୁଛି ଦିଗ୍‌ବଳୟର ଗାରରେ । ପରିଦର୍ଶନ । ବୟସ ପଚାଶ ଡେଇଁଲା । ଜମି ପାଞ୍ଚମାଣ ଯେ ମାଣକ ଲାଗି ମକଦ୍ଦମା ଲାଗି ଲାଗି ଛିଡ଼ିଲା ବେଳକୁ ତିନିମାଣ ଜମିର କିଣା ମୂଲଠୁଁ ବଳେଇଲାଣି । ସେହି ମକଦ୍ଦମାରେ ବୁଡ଼ୀର ଅଳଙ୍କାରତକ ଗଲା, ନାକରେ ନିଜ କାଠି, ଦିହଳ ବଳଦ ଥିଲେ ତାଙ୍କୁ ବି ବିକ୍ରି କରିବାକୁ ପଡ଼ିଲା । ଜମିକି ଚଷୁଥିଲେ ଭାଗ-ଚାଷି, ଦିବର୍ଷ ହେଲା ସେମାନେ କଣ ମୁଠିଏ ମୁଠିଏ ଗଣ୍ଡିଏ ଗଣ୍ଡିଏ ପକାଇଦେଇ ଚାଲି ଯାଉଛନ୍ତି ଆଉ ଅଧିକ ନୁହେଁ, ପଚାରିଲେ ଆଙ୍ଖି ଟାଣ ଟାଣ କରି ଦିକଥା କହିଦେଇ ଯାଉଛନ୍ତି, ନ୍ୟାୟ ଆଉ ଆଇନ୍‌ର କଥା, କିହୋ ଆମେ ଖଟିଲୁ ଆମେ ଫସଲ ଉପୁଜେଇଲୁ ତମେ ପିଣ୍ଡାରେ ବସି ଖଡ଼ି ଗୋଟାଳି ଧରି ପିଲାଙ୍କୁ ପାଠ ପଢ଼େଇଲ ଖାଲି ତମ ନାଁରେ ଜମି ଅଛି ବୋଲି ଆମେ କାହିଁକି ଆମ କମେଇଯାକ ନେଇ ତମ ହାତରେ ଟେକି ଦେବୁଁ ? ଯାହା ଦଉଚୁ ସେ କଣ ଯଥେଷ୍ଟ ଦୟା ନୁହେଁ ? ତା ବି ଦିଅନ୍ତୁ ନାହିଁ ଯେ ଖାଲି ତମକୁ ବିକଳ ପାଇ । ବିକଳ ପାଇବା କଥାବି । ଘରେ ବିଧବା ଟିଏ ଅଛି, ଫେର୍ ତାର ଗୋଟିଏ ସାତ ବର୍ଷର ଝିଅ, ତାଛଡ଼ା ନିଜେ ବୁଢ଼ୀ ଯେ ତାର ବି ଗୋଟିଏ କରମା ନଷ୍ଟି ସେ ଅଢ଼େଇ ବର୍ଷର ପୁଅ । ଶ୍ରମର ମର୍ଯ୍ୟାଦା ସ୍ୱୀକାର କରି ପଣ୍ଡିତିଆଣୀ ଓ ତା ଝିଅ ପରଘରେ ଧାନ ବି କୁଟନ୍ତି, କିନ୍ତୁ ପଡ଼ିଶା ଗାଁରେ ମହାଜନ ଗନ୍ଧର୍ବ ପଧାନ ଏଇ ଛମାସ ହେଲା ଧାନକୁଟା କଳ ଖଣ୍ଡେ ପକେଇଲାଣି ଯେ ସାମନ୍ତଙ୍କ ଧାଉଡ଼ି ସେଇଠିକି, ଯାଁ କୁଟ୍ ଚଣୀଏ ଉପାସ ପଡ଼ନ୍ତୁ ପଛେ । ଆଶା ଭରସା କେବଳ ଏଇ ନିମ୍ନ ପ୍ରା ସ୍କୁଲରେ

ହେ: ପ: ଚାକିରି ଖଣ୍ଡକ, ମାସକୁ ଛତିଶି ଟଙ୍କା, ସବୁବେଳେ ଭୟ, କାଳେ ସେଇ ଚାକିରି ଖଣ୍ଡକ ଉପରକୁ ମାଡ଼ ଆସିବ ନାଇଁତ ।

ଶାମ ଖଡଡର ସେ ଚାକିରିକି ବି ନାପସନ୍ଦ କରେ । କହେ ଓଃ । ଚାକିରି ଫେର୍ ଯେ । ଲୋକୁଟାଏ ପାଞ୍ଚ ଛ'ଘଣ୍ଟା ଦେହ ଖଟେଇଲେ କାହା ବାରିରୁ ଘାସ ଉପାଡ଼ିଲେ ବେଳବୁଡ଼୍ କୁ ପାଁ ପୁକା ଇଣ୍ଟାରେ ମାରୁଚି । ଆଉ ଆମେ କଣ ନା ଏ ଦେଶର ଭବିଷ୍ୟତ୍ ପାଇଁ ମଣିଷର ମୁଣ୍ଡ ଗଢ଼ିବାକୁ କମାରଶାଳ ବସେଇଚୁ, ଆମ ମୂଲଟାବି ସେତିକି । ଫେର୍ ଚପରାଶି ଉଣ୍ଟି ପିନ୍ଧି ଧାଁ ଧପଡ଼ କରୁଚି ନଇଲେ ଟୁଲ୍ ଉପରେ ବସି ପାନ ଖାଉଚି ଆଉ ଢୁ଼ଲୋଉଚି ତା ମୂଲଟା ଆମ ମୂଲଠୁ ଅଧିକା । ଫେର୍ ଡାକହରକରା ଚିଠି ବାଣ୍ଟୁଚି ତା ମୂଲଟା ଆମଠୁ ଦୋହରା । ଆରେ କିଳାପୋଡାଇ ସଡର ହେଲାଣି କିଏ କେବେ ଲକ୍ଷ୍ୟ ନେଲେ ଆମରି ଚାକିରିରେ ଲେଖାଅଛି ଖାଲି ସ୍ୱାର୍ଥ ତ୍ୟାଗ, କର୍ତ୍ତବ୍ୟ ନିଷ୍ଠା, ଅନାସକ୍ତି ଯୋଗ, ଦେଶସେବା, ଦେଶର ସଂସ୍କୃତି ସଂରକ୍ଷଣ, ଦେଶର ଭବିଷ୍ୟତ୍ ଗଠନ, ପେଟରେ ଓଦାକନା ପକେଇ, ଘରଠୁ ମାନେ ଗାଁ ଗୋଟାକରେ ଯାହାର ଦୟା ହେଲା ତାଠୁ ମୁଠିଏ ଭୋଜନ ଭିକ୍ଷା ନେଇ ମାସକୁ ମାସ ଚବିଶି ଛତିଶି ଏତିକି ପେଇଁ...

ରଇଥା ବାବୁ, ଏବେ ପାଟି କରନା, ହେ: ପ: (ହେଡ଼ ପଣ୍ଡିତ) ହିସାବରେ ଗମ୍ଭୀର କଣ୍ଠରେ ସେ ରେକି ଦିଅନ୍ତି, ରଇଥା ଶାମ, ଏତେଗୁଡ଼ାଏ କହନା, ବିପଦ ଅଛି ।

ଆଃ ବିପଦ, ଛାଡ଼ି ବିପଦ, କଣ କହନ୍ତି ନା,

ଆରେ ଅମର ଦାବୀ ଆଗେ ରୋଟି ମକାନ୍ କପଡ଼ା ଦୋ ନାହିଁତ—

ମୋ ଆଗରେ ଏଗୁଡ଼ା କହନା ଶାମ, ଦରମା ଯାହା ହଉ ମୁଁ ଏଠି ହେ: ପ:

ହେ: ପ: ହାଃ ହାଃ ହାଃ, ଏଇସା ହେଃପ ନାହିଁ ମାଙ୍ଗ୍ତା, ଏଇସା ହେ'ପ ଗାଦି ଛୋଡ଼ । ଶୁଣ ପଣ୍ଡିତ, ଆମ ପେଟ ଜଳୁଚି । ଛାରିଡା ଦେହର ନେଳୁଡ଼ି ଚିଣ୍ଟୁଚି । ତୋଫାନ ଆଉ ବଢ଼ିରେ ଘର ଦି ବଖରା ଗଲା ଦବ କିଏ ? ମ୍ୟାଟ୍ରିକ୍ ଯାକେ ପାଠ ପଢ଼ିଲି, କେତେ ଦଉଡ଼ି ଧାପଡ଼ି, ଫେଲ୍ ହେଲି ସେକଣ ମୋ ଦୋଷ ? ପାଶ୍ କରିଥିଲେ ବି କଣ ହେଇଥାନ୍ତା । ପେଟ ବିକିଳା ଲୋକ ଲୋକ ଢାଳାଢେ ସବୁବେଳେ ସଙ୍ଗୀତ ଗାଇ ହୁଏ ନାହିଁ ।

ତା'ସତ, ତେବେ ସ୍ଥାନ କାଳ ପାତ୍ର ତ ଅଛି । ପିଲାଗୁଡ଼ାକ ବେଡା ବେଡା ଆଖି କରି ଅନେଇଁଲେଣି ଯେ । ସେଟୁଡ଼ା କଣ ଭାବିବେ ।

ସେଗୁଡ଼ା ବି ଆମପରି ଦିନେ ହେବେ । ତାଙ୍କ ବେଳକୁ ଅଛୁରି ହାଉ ହାଉ । କଣ ଖାଇବେ ? ମଣିଷ ଢେଳୁଛନ୍ତି ଖାଦ୍ୟ ଢେଳୁନାଇଁ । ଧର ଚିଡ଼ାକାଟି ବଢ଼ିବେ, କାହାକୁ ଚିଡା କାଟିବେ ? କେଇଜଣ ବଞ୍ଚି ପାରିବେ ସେ ଉପାୟରେ ?

ଯେ ଯାହାହଉ କଥାଗୁଡ଼ାକ ଏମିତି କହିଲେ ବିପଦ ପଡ଼ିବ ଯେ ।

ତମେ ସେମିତି ଭାବୁଚ କାହିଁକିନା ତମ ବେଳେ ଦେଶଥିଲା ପରାଧୀନ, ଆମ ବେଳେ ସ୍ୱାଧୀନ ଦେଶ ।

ଯାଅ କାମରେ ଲାଗ, ଅଚ୍ଛା ଏଠି ତମ କାମ ପିଲାଙ୍କୁ ପାଠ ପଢ଼େଇବା କାମ, ଏଗୁଡ଼ା ବକିବା ନୁହେଁ ।

ମୋ ହଜୁର୍ । କିନ୍ତୁ ଯେତେ ଏମିତି କଥା କହିଲେ ବି ଛତିଶିଟା ସନ୍ତୁଷ୍ଟ ହେବ ନାହିଁ ହେ.ପ.ସ.ଙ୍କ (ସହକାରି ସବ୍‌ଇନିସ୍‌ପେକ୍‌ଟର)ଙ୍କୁ ହାତରେ ରୋଷେଇ କରି ଖାଇବାକୁ ଦେଲେ ବି ନୁହେଁ, ମଙ୍ଗଳାଷ୍ଟକ ବୋଲି ବୋଲି ତାଙ୍କୁ ଅଭ୍ୟର୍ଥନା କଲେ ବି ନୁହେଁ ।

କଣ ହେଲା ସେଇଠୁ ? ମୋ ପାଟି ଝଡିଲି ତାଙ୍କ ପାଇଁ ତା ହାତରେ ମୁଠାଏ ଫୁଟେଇ ଦେଲି । ଭଦ୍ରଲୋକ ଆସି ପହଞ୍ଚିଲେ ଯେ ତାଙ୍କୁ ଟିକିଏ ରଖି ଦବା ବି ପାପ । ସେ ଫେର୍ ପଇସା ଯାଚୁଥିଲେ ମନା କଲି । ଛି, ଏଛ କଥାକୁ ଧରିଚ କାମ ?

ନାଇଁ ମୁଁ ଧରି ନାଇଁ, ଲୋକେ ଯାହା କହୁଛନ୍ତି ସେଇଆ କହିଲି । ତେବେ ଭାରି ସୁଆଡିଆ ରକ୍ଷି ଜାଣିଚ ଏ କଥା ସତ । ତେବେ ନିଜ ପାଇଁ ରନ୍ଧ ନାହିଁ, ଭେଦାରେ ଖାଅ ପଣ୍ଡିତେ, ଏକଥା ବି ସତ । ଆଉ ସେଇ ଦିନଟା ତାଙ୍କପେଇଁ ଠେକେର୍ ବସେଇ ପରେପକାଉଣ ଦୋଗାୟ କରିଥିଲ, ଏକଥା ବି ସତ ।

ନାଇଁ, ଏତେ କଥା ଶୁଣି ହଜମ କରିବାକୁ ଆଉ ଧୈର୍ଯ୍ୟ ନଥିଲା । ପିଲାଗୁଡ଼ାକ ଠିଆ ହୋଇ ଶୁଣୁଥିଲେ ଥୋକାଏ ହସି ହସି ଗଡୁଥିଲେ । ମୁଣ୍ଡେ ବେଳ ହେଲାଣି । ପେଟ ଖଙ୍କା ହେବାରୁ ତଳିପଟ ବାଁ ପଟ କାମୁଡୁଥାଏ । ମୁଣ୍ଡକୁ ରାଗ ଚଢ଼ିଲା । ଦେଲେ ଝାଡ଼ି ମୁହେଁ ମୁହେଁ ।

ଏଁ ! ଇଂରେଜି ଦି ଅକ୍ଷର ପଢ଼ିଚନ୍ତି ବୋଲି ଭାରି କୁହାଳିଆ ହେଉଚନ୍ତି । ମନକୁ ନଗଲା ଦଉଡ଼ି ପାଉନାହିଁ । ଉନ୍ତୁ ଚନ୍ତୁ ମାନୁନାହାନ୍ତି । କଥାରେ ବାଗ ନା ବରଗ ନା ଝଣ୍ଟା ନା ଲଗାମ । ମନ କ'ଣ ହେଉଛି କିଏ ଖୁସାମତ କରୁଥିଲା ଆସି ଏଠି ମାଷ୍ଟର ହବାକୁ ? ବାରମ୍ବାର ଏମିତି କଥାଗୁଡ଼ାକ ଶୁଣେଇ ଶୁଣେଇ ପିଲାଗୁଡ଼ାଙ୍କୁ ଖରାପ କରିଦେବ ଯେ ।

ଟିକିଏ ବଦଳା । ତହିଁଆର ଦିନଠୁ ରଉତର ଆଉ ଆସିଲା ନାହିଁ, ଛୁଟି ଦରଖାସ୍ତ ବି ଦେଖା ନାଇଁ, କଣନା ଘରକାମ ଲାଗିଛି । ତା ନାଁରେ ବି କିଛି କହିହେଉ ନାହିଁ, ଗାଁ ଲୋକଙ୍କୁ ସେ କେମିତି କେମିତି ପଟେଇ ରଖିଥିଲା । ବୁଢ଼ାଏ କହନ୍ତି ସେ ଭାରି ବୁଦ୍ଧିଆ । ଟୋକାଏ କହନ୍ତି ସେ ଏକ ଆଗୁଆ ଯୁବକ-ନେତା । ସେ ବଡ଼ପାଟି କରିପାରେ, ମତେଇପାରେ, ତତେଇପାରେ, ସବୁଠୁ ବଡ଼ କଥା ଯେ ସେ କଥା କହିପାରେ ଆଉ ଶୋଧିପାରେ, ଗାଁରେ ଯଦି ଭୋଟ ନିଆ ହୁଅନ୍ତା ତେବେ ଆଗ ହୁଅନ୍ତା ନାମ ରଉତର । ଯଦି ତାର ଟିକିଏ ଧନବଳ ଥାଆନ୍ତା ଖାଲି ପଦାରେ ଯାଇ ବୁଲାବୁଲି କରିବାକୁ ତେବେ ସେ ଆଉ ଉପରକୁ ଯାଇ ଥାଆନ୍ତା ବୋଲି ଅନେକେ କହନ୍ତି ।

ସ୍କୁଲ ପରିଦର୍ଶନ ହେବ ଭାବି ହେଡ ପଣ୍ଡିତ ତାଆରି କଥାକୁ ବାରମ୍ବାର ଭାବୁଥାନ୍ତି,—ଥାଆନ୍ତା କି ସେ । ଗାଳିଦେଉ ପଛେ, ଗୋଟାଏ ବଳ, ଗୋଟାଏ ସାହାଯ୍ୟ । ଦିପଦ ଭଲ ଭଲ କରି ଏକ ରିପୋର୍ଟ କି ଅଭିନନ୍ଦନ ପତ୍ର ବି ଲେଖି ପାରନ୍ତା । ଦୋ ଦୋ ପାଞ୍ଚ ହେଉଥାନ୍ତି ଯେ ଆଜି ସଞ୍ଜବୁଢ଼େ ତାଙ୍କ ଗାଁକୁ ଯାଇ ତାଙ୍କୁ ଡାକି ଆଣିବେ କି ନାହିଁ ।

ସ୍କୁଲ ଆରମ୍ଭ ହେଲା । ମନ ଭିତର ଘୁଙ୍ଗାଳୁ ଥାଏ ସେହି କଥା, ଯେପରିକି ଏକ ଅନ୍ତର୍ନିହିତ ଆତଙ୍କ । ସେହି ସ୍କୁଲ ଘରଟି ତାଙ୍କ ବସା । ସ୍କୁଲ ଘରଟି ସମୁଦାୟ କୋଡ଼ିଏ ହାତରେ ଆଠ ହାତ ହୋଇ ତି ବଖରା । ଚାରିପାଖେ ବାଡ଼ ଘେରେଇ ଅରଏ ବଗିଚା ବି ଅଛି । ସାମ୍ନାରେ ଚଳରେ ବନ୍ଧା ହୋଇ ଓଦା ଲୁଗା ଓଦା ଗାମୁଛା ଶୁଖୁଛି । ଦୁଆରବନ୍ଧ ପାଖେ ତଳେ ବସି ସେ ପାନବଟା ଖୋଲି ସେ ଗୁଆକାଡ଼ିରେ ଗୁଆ କାଟିବାକୁ ଆରମ୍ଭ କଲେ । ଆଉ ପାଟିଟାଏ କଲେ "ପଢ଼ ସମସ୍ତେ ପଢ଼ ।" ଶିଶୁ ଶ୍ରେଣୀରେ ତେରଜଣ, ପ୍ରଥମରେ ଆଠଜଣ ଓ ଦ୍ୱିତୀୟ ଶ୍ରେଣୀରେ ଛଅଜଣ ଏମିତି ଆଜି ସତେଇଶି ଜଣ ପିଲା ଆସିଛନ୍ତି, ଯେଉଁଥିରେ କିଛି ଯାଏ ନାହିଁ, ହାଜିରା ବହିରେ ଅଠାବନ ଜଣଙ୍କ ନାଁ ଲେଖା ଅଛି ଓ ସେ ପୂରଣ କରି ସାରିଛନ୍ତି ସେଥିରୁ ଅଣତ୍ରିଶ ଜଣ ଆଜି ଆସିନନ୍ତି ବୋଲି । ଅଣତ୍ରିଶରୁ ଛପନ ଭିତରେ ସେ ଉପସ୍ଥାନ ପକାନ୍ତି, ସେ ଭାବନ୍ତି ସେଇଟା ତାଙ୍କ କର୍ତ୍ତବ୍ୟ, ନହେଲେ ଦ୍ୱିତୀୟ ଗ୍ରାଣ୍ଟ ରହିବ ନାହିଁ, ତେଣିକି ନିୟମିତ ଭାବେ ପାଠପଢ଼ି ଆସିବା ସେ ପିଲାଙ୍କ କର୍ତ୍ତବ୍ୟ ଓ ତାଙ୍କ ବାପ ମା'ଙ୍କର, ସେମାନେ ପାଠପଢ଼ି ନ ଆସିଲେ ତାଙ୍କ ଜୀବନମାଟି ହେବ । ସେ ସେ ପିଲାଙ୍କର ଓ ତାଙ୍କ ଅଭିଭାବକମାନଙ୍କ ଦାୟିତ୍ୱ, ତାକୁ ତୁଲେଇବା ନ ତୁଲେଇବା ତାଙ୍କର ଇଚ୍ଛା । ସେ ଜାଣନ୍ତି ଏ ଗାଁରେ ପାଠ ପଢ଼ିବା ଭଳି ବୟସର ଅହୁରି ଦେଢ଼ଶହ ପିଲା ଅଛନ୍ତି, ଏବା ତାଉରି ସାହିରେ ପଚାଶ ପିଲା ଥିବେ । କିନ୍ତୁ ସେମାନେ ପଢ଼ିବାକୁ ଆସନ୍ତି ନାହିଁ । ସେ କହନ୍ତି ଦ୍ୱାର ଦ୍ୱାର ହୋଇ ବୁଲି ପିଲା ଗୋଟେଇବା ମୋର କାମ ନୁହେଁ, ଯେ ଆସିବ ମୁଁ ତାକୁ ପଢ଼େଇବି । ସବୁ ଶ୍ରେଣୀର ପିଲା ଏକାଠି ବସିଛନ୍ତି । ସେମାନେ ଏକାଠି ବସିଲେ ଏକା ସମୟରେ ସେହି ଏକ ସ୍ଥାନରେ ଦୁଇଜଣ ମାଷ୍ଟର ଦୁଇ ଶ୍ରେଣୀର ପିଲାଙ୍କୁ ଅଲଗା ଅଲଗା ପାଠ ପଢ଼ାନ୍ତି ।

ଯାହା ହେଉ, ଆଜିର ଉପସ୍ଥାନ ପ୍ରକୃତରେ ସତେଇଶି । ସେମାନେ ଏକାଠି ପାଟିତୁଣ୍ଡ କରୁଛନ୍ତି । ଇସ୍କୁଲଟା ଇସ୍କୁଲ ପରି ଲାଗୁଛି । ପଣ୍ଡିତେ ଆତ୍ମପ୍ରସାଦ ଅନୁଭବ କଲେ । ମନେ ମନେ ଭାବିଲେ କର୍ମମୟ ଏ ଜୀବନ, କର୍ମହିଁ ଜୀବନ, ସେ କର୍ମୀ । କେତେ ଲୋକ ଏ ଦୀର୍ଘ ତିରିଶି ବର୍ଷ ଭିତରେ ତାଙ୍କ ହାତରୁ ବେତ ପାହାର ଖାଇ ଚଢ଼ି ପାଠ ଚାଲିଯାଇ କେତେ କେତେ ମଣିଷ ହୋଇଛନ୍ତି । ଅଧ୍ୟାପକ ନବ ଦାସ ବିଲାତରେ ନାଁ କମେଇ ଫେରିଲା, ଫଗୁ ଜେଠି ବତୁଳିଆଟା ଥିଲା ସେ ସେ ବି ହେଲା ଯାହାକୁ କହନ୍ତି ଜଏଣ୍ଟ, ଓପାୟ ଯାହା କରୁ ଫଳ ତ ଅଚ୍ଛାଡ଼ି ହୋଇ ପଡ଼ିଲା ସେ ଜମି, ଘର, ଟଙ୍କା ପାହିଁରେ କଣ । ଗୋବିନ୍ଦ ମୁଦୁଲି ହେଲା ବିଶିଷ୍ଟ ନେତା, ବକ୍ତୃତା ସଭାରେ ଫୁଲମାଳରେ ପୋତି ହୋଇଯାଉଥାଏ, ଏଣେ ଭାଷଣ ଯେ ବଚନ ଫୁଟାଉଥାଏ, ତା ପଛକୁ ତାପରେ ମଣିଷ ଥାଟପଟାଳି । ଟାଉନର ଗାଁ ମାମଲତକାର ଏମିତିତ ପଣ ପଣ । ଡାକ୍ତର ମଙ୍ଗିଲା ଦଳର ବେପାରି, ସ୍କୁଲିରିଆ, ସାଧାରଣ ବହୁତ । ତିନିରିଶିଟା ବର୍ଷରେ ଶହ ଶହ ଯାଇଛନ୍ତି ତାଙ୍କ ହାତ ତଳେ । ତିରିଶି ବର୍ଷରେ ଦେଶର ଅଲେଖା ସାମାଜିକ ଇତିହାସରେ ତାଙ୍କର ବି ଭାଗ ରହିଛି ।

ଗୁଆକଟା ଚାଲିଛି । ଭାବୁ ଭାବୁ ଆତ୍ମବିଶ୍ୱାସ ଫେରି ଆସୁଛି । ହେଉ ପରିଦର୍ଶନ । ଆସୁ ଯେ ଯେତେ ଦେ । ଅଜଣା ଅଗନ୍ତୁକର ଦକ୍ଷିଣଟା ଅନୁକରଣ କରି ସେ ଭାବିଗଲେ । ଆଗ ଉଦ୍ୟାନ । ହେଉ ପଚିଶ ଟାଏ ଠାଏ ଖୋଦା ମେଲା, କିଏ ନନ୍ଦ ଜଣ ମଫସଲର ଗାଈ ଗୋରୁ କଣ୍ଟା ବାଡ଼କୁ ବି ମୁଣ୍ଡିଆମାରି ମେଲା

କରନ୍ତି । ତଥାପି ଉଦ୍ୟାନ ଅଛି । ପାଞ୍ଚଗଛ ଡେଙ୍ଗା ଡେଙ୍ଗା ନଡ଼ିଆ, ଏକ ପିଜୁଳୀ ଗଛ, ସାତଗଛ ଅମୃତଭଣ୍ଡା, ଏଇତ ଉଦ୍ୟାନ । ଲଙ୍କାମରିଚ ଗଛ ପୁଞ୍ଜାଏ ଅଛି, ଟିକିଏ ଶୁଖିଲା କିନ୍ତୁ ଅଦ୍ୟାପି ଫଳ ପିଟା ଗୋଟାଏ ଅଛି । ବିଦ୍ୟାଳୟ ଗୃହ,— ଛାତରେ ଠାଏ ଠାଏ ବଡ଼ ବଡ଼ କଣା ଅଛି ଅସ୍ୱୀକାର କରି ହେବ ନାହିଁ, କିନ୍ତୁ ସେ କଣ ବୁଝିବେ ନାହିଁ କି କଷ୍ଟରେ ଗ୍ରାମ ଲୋକଙ୍କୁ ମଙ୍ଗେଇ ପଟେଇ କୁହାପୋଛା କରି ଛଣ ଯୋଗାଡ଼ କରିବାକୁ ପଡ଼ିଲା । ତାପରେ ଗ୍ରାମର ସେଇ ଉଟାଗୁଡ଼ି ଗୋରୁମାନେ, ଆମରି ଦେଶର ଲୋକଙ୍କ, ସେକଣ ଦେଖି ନଥିବେ କେମିତି ଏ ଦେଶର ଗୋରୁ ଦି ଗୋଡ଼ରେ ସିଧା ଠିଆ ହୋଇ ପଚଘର ଘ୍ରଳର ସଦ୍‌ବ୍ୟବହାର କରି ଉଦର ପୁରନ୍ତି ? ଲୋକେ ତାଙ୍କୁ ଗୋସେଇଁଖିଆ କହନ୍ତି ସତ, କିନ୍ତୁ ତହିଁରେ ଗୋସେଇଁ ମରନ୍ତି ନାହିଁ, ଗୋସେଇଁଖିଆ ଗାଳି ଖାଲି କଥାକୁ ନଥା । ଘର ଭିତର କାନ୍ଥ ଟିକିଏ ଅବୁଡ଼ା ଖାବୁଡ଼ା, ତ' ସେ ମାଟିକାନ୍ଥ ତ ସେମିତି ହେବଇ, ସେ ଆଉ ପାଲିସ୍ ହେବ କିପରି ? ଝରକା ଦିପଟ ନାହିଁ, ଛେଳି କାଳେ ପଶି ଆସିବେ ବୋଲି ଖଡ଼ିରେ ଚଟା ଫାଳିରେ ଛକି ଦିଆ ହୋଇଛି, କିନ୍ତୁ ଝରକାର କବାଟ କେଉଁଦିନୁ କିଏ ଚୋରେଇ ନେଲାଣି, ଶୁଣା-ଶୁଣିରେ ମହନ୍ତଦାସ ବୋହୂର ଶୁଙ୍କି ଘରକୁ ଯେଉଁ କାଡ଼ିଅଣ ଭେଜି ହୋଇଥଲା ସେଥିକି ମାଛଟା ଚଳରେ ଅସି ପହଞ୍ଚିଲା, ଖାଠ ସରିଯାଇଥାଏ, ରଡି ବେଳ, କିଏ ଦେଖୁଛି କାହାକୁ, ଇସ୍କୁଲ ଘଡୋ ପାଖରେ ଅଛି, ତାପରେ— । ପଦାର ପରିଦର୍ଶନକାରୀ ହୁଏତ କହିବେ ପୁଲିସରେ କାହିଁକି କୁହାନଗଲା କିନ୍ତୁ ଗାଁରେ ଘର କରି ପୁଲିସରେ କହିଲେ ତ ବି ଲୋକ ଟାଉଟର ବୋଲାଏ, ତାଛଡ଼ା ଫଳ ବା କଣ ହୁଅନ୍ତା, ଚୋର ଆଉ ଚୋରମାଲ ଉଭୟକୁ ଖୋଜି ବାହାର କରି ପୁଲିସରେ ହାଜିର କଲେ ସିନା ଯାହା ହବ ନହେଲେ ପୁଲିସର କଣ ଏଇ ଗୋଟିଏ କାମ ହୋଇଛି ? ପୁଲିସ ଘରେ ବି ତ ଚୋରି ହେଉଛି । ପୁଲିସ ନିଜେବି କେଉଁଠି କେଉଁଠି ଫାନ୍ଦରେ ପଡ଼ି ଯାଉଚନ୍ତି ବୋଲି ଖବରକାଗଜରେ ବାହାରୁଛି । ଆଶା କରାଯାଉଛି ଏଇ (କୈଫିଅତ୍ ତାଙ୍କ ପାଇଁ ଯଥେଷ୍ଟ ହେବ । ପଶ୍ଚିମପଟ କାନ୍ଥରୁ ଉହୁଂକିଛି ଗୋଟାଏ ବଡ଼ ହୁଙ୍କା, ହାତେ ଉଚ୍ଚର ହୋଇଛି । ସେଇଟା ଦର୍ଶ୍ଚନୀୟ ହୋଇପାରେ । ସ: ସ: ଇ: (ସହକାରୀ ସବ୍ ଇନିସ୍‌ପେକ୍‌ଟର) ମହାଶୟ ପରିଦର୍ଶନ ଖାତାରେ ମନ୍ତବ୍ୟ ଲେଖି ଯାଇଥିଲେ, ହୁଙ୍କାର ପରିଧି କେତେ, ତାର ଉଚ୍ଚତା କେତେ, ତାର ଶାଖା ପ୍ରଶାଖାମାନଙ୍କ ସଂଖ୍ୟା, ସବୁ ଅଛି ଖାତାରେ । ବସ୍ତୁତଃ ସ:ସ:ଇ: ମହାଶୟେ ସେଇ ହୁଙ୍କାଟା ପ୍ରତି ବିଶେଷକରି ଆକୃଷ୍ଟ ହୋଇଥିଲେ । ହୁକୁମ୍ ଥିଲା ଘଙ୍କ ।

ହୁକୁମ୍ତ ହାମେସା ଦିଅନ୍ତି । ହେଇ ଯେମିତିଆ, ଚୋରଙ୍କୁ ଧର, କଳାବଜାରି କି ନିପାତ କର, ଧରପଡ଼ିଲେ ବରଗଛରେ ବାନ୍ଧି ଗୁଳିକର, ମନରୁ ଦେହରୁ ଘରୁ ସମାଜରୁ ରାଷ୍ଟ୍ରରୁ ପୃଥିବୀରୁ ଆବର୍ଜନା ଦୂର କର ।

କିନ୍ତୁ ହୋଇ ପାରୁଛି କିପରି ? ସ:ସ:ଇ: ଯାଉ ଯାଉ ତାଙ୍କ ଗୋଡ଼େ ଗୋଡ଼େ ହୁଙ୍କା ଉପରେ ପ୍ରହାର ବର୍ଷି ଥିଲା, ସକାଳକୁ ଉଙ୍କିଦେଲେ ଦଣ୍ଡବୁଦ୍ଧଙ୍କୁ ଠିଆହେଲାଣି ଯେମିତିକି ସେମିତି ।

ଧନ୍ୟ ସେ ଉଇ ଜାତିର କୌଶଳ । ମାଷ୍ଟ୍ରେ ତାକୁ ପ୍ରଶଂସା କରିଥିଲେ ଓ ପିଲାମାନଙ୍କୁ ଡାକି ଦେଖାଇଥିଲେ । ଦେଖ ପିଲାଏ ଯାରି ନାଁ ଅଧ୍ୟବସାୟ ଉଇଠୁ ମଣିଷ ଶିଖିବା ଉଚିତ ।

ସକାଳକୁ ଭାଙ୍ଗି ଦେଲେ ସଞ୍ଜକୁ ତିଆର । ପାରିବ ଏମିତି ତିଆରି କରି ? ବଡ଼ କଷ୍ଟ । ଏମିତି ଦୁର୍ଗୁଣେଇ ହୋଇ ପଡ଼ଶେ କେବଳ ଘରର ଚିହ୍ନା ବେଙ୍ଗ, ତା ମୁଣ୍ଡରେ ସିନ୍ଦୁର ଲଗାଇ ଦୂରରେ ଛାଡ଼ିଦେଲେ ବି ପୁଣି ସେ ଘରକୁ ଲେଉଟି ଆସେ । ଆଉ ଉଣ । ନିହାତି ଯଦି ହୁଙ୍କାଟା ନଗଲା ତେବେ ତାର ସଦ୍‌ବ୍ୟବହାର କରିବା ଉଚିତ । ମଣିଷ ଆଗ ଚେଷ୍ଟା କରିବ ଅପ୍ରିୟ ଲୋକଙ୍କୁ ତଡ଼ିବାକୁ, ତା ଯଦି ନ ହୋଇ ପାରିଲା । ତେବେ ତ ତାଙ୍କ ସଙ୍ଗେ ଚଳିବାକୁହିଁ ପଡ଼ିବ, ଆଉ ଉପାୟ କଣ ? ତେଣୁ ସେ ଭାବିଲେ । ପରାମର୍ଶ ମାରିଲେ । ସାନ ମାଷ୍ଟର ସୁଭଦ୍ର ମୁହଁ ମୋଡ଼ିଦେଲା । କହିଲା ଏଇ ଠିକ୍ ଉଦାହରଣ ମାନ୍ଦାଳିଆ ଲୋକ କେମିତି ହୁଅନ୍ତି । ତା'ର ଆରେ ବାବା ହୁଙ୍କା ତ ହୁଙ୍କା, ଫେର୍ ତାକୁ ତେମେ କାର୍ଯ୍ୟରେ ଲଗେଇବ କେମିତି ମୁଁ ବୁଝି ପାରୁନାହିଁ । ହୁଙ୍କାର ବାପ ହୁଙ୍କା, ହୁଙ୍କାର ପୁଅ ହୁଙ୍କା, ଆଉ ସେ କ'ଣ ହୋଇ-ପାରେ ? ତେମେ ଏଠି ତଳେ ବସି ହୁଙ୍କାଟା ଆଗରେ ଯେତେ ସତ୍ୟ ଅହିଂସା ଦାୟିତ୍ୱ କର୍ତ୍ତବ୍ୟ ବଡ଼ ଭିଙ୍କି କଥା କହିବ ହୁଙ୍କାଟା କଣ ସେକଥା ଶୁଣିବ ? ସେ ତା' ମନକୁ ଜବରଦସ୍ତି ବଢ଼ିବ, ତୁମେ ଅପଣା ମନକୁ ସାକୁଲେଇବ ମୁଁ ଯାକୁ ଦୟାକରି ରଖିଛି । ହୁଙ୍କାର ହୃଦୟ ତରଳାଅ ଦେଖିବା କେମିତି ପାରିବ । କାଣ୍ଡ ଭାଙ୍ଗି ଦେଇ ନୂଆକରି ଗଢ଼ିବାକୁ ହେବ ।

ତ ଆଉ ତମେ କଣ କହୁଚ ?

ହୁଙ୍କାଟାକୁ ଯେତେ ଭାଙ୍ଗିଲେ ଯାଉନାହିଁ, କାଣ୍ଡଟାକୁ ଭାଙ୍ଗିପକାଅ, ଏଇ ହଉଚି ସିଧା ସଳଖ କାମ, ଛକାପଞ୍ଝା ନାହିଁ, ଘୁର୍‌ପେଞ୍ଚ୍ ନାହିଁ, ସିଧା ଦେଖିଲା କାମ କରିଦିଅ ।

କାଣ୍ଡଟାକୁ ଭାଙ୍ଗି ପକେଇଲେ ଘରଟା ରହିବ କେମିତି ? କାଣ୍ଡ ମରାମତି ହେବାକୁ ଟଙ୍କା ଦେବ କିଏ ? ସେଇଥିପାଇଁ ଭାଙ୍ଗିବା ଅପେକ୍ଷା ବଦଳେଇବାଟା ବେଶୀ କାମରେ ଲାଗେ କହନ୍ତି । କାଣ୍ଡ ଭାଙ୍ଗିବ ନାହିଁ, ହୁଙ୍କା ହୁଙ୍କା ହୋଇ ରହିବ ନାହିଁ । କାମରେ ଲାଗିବ ଲଗାଅ ହୁଙ୍କାକୁ ମନ ଇଚ୍ଛା । ତିତିରି ଚଢ଼େଇ ପୋଷିଥିଲେ ଉଈ ଟାଙ୍କୁ ଖାଆନ୍ତା । ବର୍ଷାଦିନ ହେଲେ ଛତୁ ଫୁଟିବ । ଯାଠୁ ଅଧିକା କାମ ମୁଁ ଜାଣେ ନାହିଁ ।

କିନ୍ତୁ ହେ. ପ. ଜାଣିଥିଲେ । ଅକ୍ଷର ଚିହ୍ନିବା ସଙ୍ଗେ ସଙ୍ଗେ "ଝଈ" ଉଷାରୁ "ଉଈ" ଯେତେବେଳେ ପଢ଼ୁଥିଲା ସେତେବେଳେ ସେ ସେହି ହୁଙ୍କାକୁହିଁ ଦେଖାଇ ଦିଅନ୍ତି । ପ୍ରକୃତି ପର୍ଯ୍ୟବେକ୍ଷଣ ପ୍ରସଙ୍ଗ ପଡ଼ିଲେ ପର୍ବତ କଣ ଏକଥା ବୁଝେଇବାକୁ ସେହି ହୁଙ୍କାକୁହିଁ ଦେଖାଇଦିଅନ୍ତି । "ହେଇ ଦେଖ ପର୍ବତ ଏମିତି ତିଆରି ହୁଏ, ମଝିରେ ମଝିରେ ଯେଉଁ ଖୋଳା ଗାତ, ଆଗ୍ନେୟଗିରିର ଗହ୍ୱର ମନେ ପକାଅ । ଅଚ୍ଛା ବୁଝିଲତ, ପର୍ବତ କାହାକୁ କହନ୍ତି, ଆଗ୍ନେୟଗିରି କାହାକୁ କହନ୍ତି ? ପିଲାଏ ମୁଣ୍ଡ ହଲାନ୍ତି । କେଡ଼େ ସହଜ ଏସବୁ ବୁଝେଇବା । ତେଣୁ ହୁଙ୍କାବି ଦୃଷ୍ଟିକଟୁ ହେବ ନାହିଁ । ପରିଦର୍ଶନ ଯେ କରିବାକୁ ଆସିବେ ତାଙ୍କର ଅନ୍ତତଃ ସାଧାରଣ ବୁଦ୍ଧି ଥିବ ।

ପରିଦର୍ଶକ ହୁଏତ ଦେଖିବେ ପିଲାଙ୍କୁ ପଢ଼େଇବା ଛବିଗୁଡ଼ିକ । ସେଗୁଡ଼ିକ ବି ଅଛି । କେବଳ ଟିକିଏ ସଫା ସୁତୁରା ହେବ । ଆଦ୍ୟ ଯୌବନ ଅବସ୍ଥାରେ ନିଜେ

ଯେତେବେଳେ ଖୋର୍ଦ୍ଧାରେ ମାଷ୍ଟରି ବିଦ୍ୟା ପଢ଼ୁଥିଲେ ସେତେବେଳେ ସେସବୁ ଛବି ତିଆରି ହୋଇଥିଲା । ଏକା ସେ କରିଥିଲେ ଏପରି ନୁହେଁ, ନିୟମିତ ଭାବେ ପାନ ଆଦି ଦେଇ ସହପାଠୀଙ୍କ ସଙ୍ଗେ ବନ୍ଧୁତା କରି ସେ ନିଜ ନାଁରେ ସେମାନଙ୍କ ଦ୍ୱାରା କିଛି ଚିତ୍ର କରାଇ ଦେଇଥିଲେ । ମଝିରେ ବୋହିଗଲାଣି ପଚିଶି ବର୍ଷ । କେତେ ଛବି ନଷ୍ଟ ହୋଇଗଲାଣି । ସବୁ ଛବିର ରଙ୍ଗ ଫିକା ପଡ଼ିଗଲାଣି, ଯେଉଁ କାଗଜ ପଟା ଉପରେ ସେ ମରା ହୋଇଥିଲେ ସେ ଟୋଲେଇଗଲାଣି । କେଉଁ ଛବିରୁ ଫାଳେ ଫାଳେ ଉଈ ଖାଇଛି, କେଉଁଟା ଫିମ୍ପି ମାଡ଼ିଛି, କେଉଁଟା ପୋକଖାଇ ହେଲାଣି ଚିଛି ବିଛି । ତା ଉପରେ ଧୂଳି ନେସି ହୋଇଛି, ଘରଲିପା ପାଣି ଓ ଚୂନର ଛିଟା ବି ପଡ଼ିଛି ।

କିନ୍ତୁ ପିଲାଙ୍କୁ ପଢ଼େଇବାକୁ ସେହିତ ଉତ୍କୃଷ୍ଟ ଛବି, ଆଉ କଣ ଅଛି ? ଗଛ ଡାଳରେ ଗୋଟିଏ ଚଢ଼େଇ ବସିଛି, ଆକାରରେ ଟିକିଏ ବଡ ଦିଶୁଛି । ଧରାଯାଉ ସେ କାଉ । ତା ଥଣ୍ଟ ଅଗରୁ ଢିଭପରି ଯେଉଁଠି ପଦାକୁ ବାହାରିଛି,—ଧରାଯାଉ ସେ ମାଂସଖଣ୍ଡ । ତା ତଳେ ଯେଉଁ ଜନ୍ତୁଟି ଠିଆ ହୋଇ ଉପରକୁ ମୋହିଁଛି,—ଧରାଯାଉ ସେ ଗୋଟିଏ ବିଲୁଆ, ଭଲ ଖାଇବାକୁ ପାଇଲେ ଓ ଯତ୍ନରେ ବଢ଼ିଲେ ବିଲୁଆ ବି କଣ ଏପରି ଲମ୍ବ ଡେଙ୍ଗା ଓ ମୋଟ ହେବ ନାହିଁ ? ହୁଏତ ହେବ । ଏଇ ସେହି ପ୍ରସିଦ୍ଧ ଗଳ୍ପ, ଯହିଁରେ ଅଛି ଯେ କାଉକୁ ଠେକାଟେକି କରି କହି ବିଲୁଆ ତା ମନ ଏପରି ଫୁଲେଇଦେଲା ଯେ କାଉ ଗୀତ ବୋଲିବ ବୋଲି ଆଁ କଲା । ଆଉ ମାଂସଖଣ୍ଡଟି କାଉ ପାଟିରୁ ତଳକୁ ଖସି ପଡ଼ିଲା ଯେ ବିଲୁଆ ସେତକ ପାଇଗଲା । ଖୁସାମଦର ଦିନ, ପରିଦର୍ଶକ ଅନ୍ତତଃ ଏଇ ଛବିଟିକୁ ଭଲ କରି ଦେଖିବା ଉଚିତ ଯେ ବଡ ବଡ ଲୋକଙ୍କୁ ଖୁସାମଦ କରି ତାଙ୍କ ପାଟି ଆଁ କରାଇଦେଲେ ସାନ ମାନଙ୍କର କେଡ଼େ ଲାଭ ।

କାନ୍ଥରେ ଜନନାୟକମାନଙ୍କ ଛବି ବି ଅଛି । ସେ ମଧ୍ୟ ହାତ ଅଙ୍କା । କାଳେ ସେହି ସେ ଟ୍ରେନିଂ ଦିନର ଛବିମାନଙ୍କୁ ଦେଖି କେଉଁଟା କାହାର ଛବି ବୋଲି ଜଣେ ଚିହ୍ନି ନ ପାରିବ ସେଥିପାଇଁ ସେମାନଙ୍କ ନାଁ ସବୁ ଛବି ତଳେ ଲେଖାଅଛି । ନାଁ ଲିଭିଗଲା ପରେ ପୁଣି ଲେଖା ହୋଇଛି । ପଣ୍ଡିତେ ମନେ ପକାଇଲେ,—ଶାମ ରାଉତରାୟ କହୁଥିଲା ଏମିତି ବାରମ୍ବାର ଲେଖା ଲେଖିଲେ ନାଁ ଥୋଡ଼ାଏ ଅଦଳ ବଦଳ ହୋଇ ଯାଉଛି । ପରିଦର୍ଶକ ତାକୁ ବି ଦେଖି ପାରନ୍ତି ପଢ଼ିବି ପାରନ୍ତି । ସେଥିପାଇଁ ବି ଭଉଚ ଦୂରରେ ନାହିଁ,—ସେ ଭାବିଲେ । ଆଜ୍ଞା, ଏ ଦୁନିଆଁରେ ସବୁ ମଣିଷ ସମାନ, ସମସ୍ତଙ୍କଠି ବୁଦ୍ଧି ଅଛି । ସଂସାରରେ ଏତେ ମଣିଷ ଯେ ଗୋଳମାଳିଆ କରି ରଖିଦେଲେ ବାପ ପୁଅକୁ ବି ଚିହ୍ନି ପାରିବ ନାହିଁ । ଏଇଟା ଏମିତି ଏଡ଼େ ବଡ଼ ଦୋଷ ବା କଣ । ଏମାନେ ସମସ୍ତେ ମହାପୁରୁଷ, ପିଲାଏ ସମସ୍ତଙ୍କ ନାଁ ଓ କୀର୍ତ୍ତିକଳି ଜାଣିଲେ ହିଁ ହେଲା । କେବେତ ଆଉ ସତରେ ସତରେ କାହାକୁ ଦେଖିବେ ନାହିଁ, ତ ତେଣୁ କେଉଁ ଛବିର କେଉଁ ନା ନ ଜାଣିଲେ ବା କଣ ହୋଇଯାଉଛି ।

ନା, ଠିକେ ଠିକେ ସବୁ ଠିକ୍ ଅଛି । ଏପରିକି ହସ୍ତକର୍ମ ମଧ୍ୟ । ଗୋଟିଏ କଣରେ ପୁଳିଏ ଶୁଖିଲା ଟେଳା ଗଦା ହୋଇଛି । ସେଥିରେ ସୃଜନୀ ଶକ୍ତିର କେତେ ପ୍ରକାର ପ୍ରକାଶ ଅଛି ତାହା ଦେଖିବାର ହିଁ କଥା । ନାନା ପ୍ରକାର ଫଳ, ଯାହାକୁ ବ୍ରହ୍ମା ବି ସୃଷ୍ଟି କରି ନାହାନ୍ତି, ନାନା ପ୍ରକାର ଜୀବଜନ୍ତୁ ଯାହା କେହି କେବେ କରିବେ ନାହିଁ, ଏସବୁ ହସ୍ତ କର୍ମ ।

କେଉଁ ଗୁଣେ କିଏ ବାଛି ଦେବାକୁ ନାହିଁ ।

'ମାଷ୍ଟ୍ରେ ଡୁଳେଇ ଡୁଳେଇ ଭାବିଲେ, ସବୁ ଠିକ୍ ଅଛି । ବଡ଼ ହେଉ ସାନ ହେଉ ସୁଖୀ ହେଉ ଦୁଃଖୀ ହେଉ ସମସ୍ତେ ଭଲ ଅଛନ୍ତି, ଦୁନିଆଁ ଚାଲିଛି, ଅଡ଼ୁଆ ନାହିଁ କେଉଁଠି କିଛି ।

ସବୁ ଠିକ୍ ଅଛି । ପିଲାଗୁଡ଼ାକ ପାଟି କରି କରି ପୁରୁଣା ପାଠ ପଢ଼ୁଛନ୍ତି କି ବୋବାଉଛନ୍ତି । ଗୋଳମାଳ ହେଉଛି । ସେହି ହୋ ହା ହିଁ ଅସଲ, ସେହି ଶବ୍ଦ ବ୍ରହ୍ମ, ଯେପରିକି ଜୀବନୀଶକ୍ତିର ପ୍ରମାଣ ହିଁ ସେତିକି । ଯେମିତିକି ଏକ କାରଖାନା ଏ କଳ ଚାଲିଛି, ତାରି ଏ ଶବ୍ଦ । ଏଇ କାରଖାନାମାନଙ୍କରେ ଦେଶର ଭବିଷ୍ୟତ୍ ଗଢ଼ା ହେଉଛି । ଏହି ଯେତେ ନେତାମାନେ,—ସେମାନଙ୍କୁ ସମସ୍ତିଙ୍କି ମଧ୍ୟ ଏମିତି ଏକ କାରଖାନାବାଟେ ଗଢ଼ା ହୋଇ ଆସିବାକୁ ପଡ଼ିଥିଲା ।

ପାହାବେ ପାହାବେ ଭାବନା ଗଡ଼ିଆସୁଛି । ନେତାମାନଙ୍କ କଥା ମନେ ପକାଇ ଚମକି ପଡ଼ିଲେ । ପରିଦର୍ଶକ ଆସିବାମାତ୍ରେ ତାଙ୍କୁ ଗୀତ ଟାଇ ଗାଇ ବଳେଇବାକୁ ପଡ଼ିବ । ପିଲାଏ କି ଗୀତ ଗାଇବେ ? ହୁଏତ ବନ୍ଦେଇ ହରି ଦେବ-ମୁରରି କଲେ ଚଳିବ । ଅନ୍ୟ ଗୀତ ତାଙ୍କର ଯେତେ ମୁଖସ୍ଥ ନାହିଁ । ହବୁ ସଫା ସୁତୁରା ରଖିବାକୁ ପଡ଼ିବ । ତା ଛଡ଼ା ପିଲାଙ୍କ ସାଧାରଣ ଜ୍ଞାନ ଠିକ୍ ରହିବା ଉଚିତ, ସେଇଟାକୁ ତ ଆଗ ବୋଲି ଆଜିକାଲି ସମସ୍ତେ ଧରିଛନ୍ତି । ଛାଟିପିଟି ହୋଇ ଉଠିପଡ଼ି ହେ. ପ. ମହାଶୟେ ପିଲାଙ୍କ ଆଡ଼କୁ ମୋହିଲେ ।

"ଶୁଣ, ସାଧାରଣ ଜ୍ଞାନ ପଚାରୁଛି, ଆମର ଏଇଟା କେଉଁ ପ୍ରଦେଶ ? କହ ।"

"ଏଇଟା ଓଡ଼ିଶା"

"ନା ନା, ଏଇଟା ମାଷ୍ଟ୍ରେ ପଂଜାବ୍ ଦେଶ ।"

"ପଞ୍ଜାବ ନୁହେଁ ଅପଣେ, ଏଇଟା ମାନ୍ଦ୍ରାଜ୍ ଦେଶ ।"

"ନାଇଁ ନାଇଁ ଏଇଟା ଭାରତବର୍ଷ ।"

ବହୁତ ଭିନ୍ନ ଭିନ୍ନ ପ୍ରକାର ଉତ୍ତର, ପୁଣି ସମସ୍ତେ ଚାହାନ୍ତି ନିଜ ସାଧାରଣ ଜ୍ଞାନ ବଖାଣିବାକୁ । ମାଷ୍ଟ୍ରେ ବିଚଳିତ ହେଲେ । ଭାବିଲେ, ପରିଦର୍ଶନ ବେଳେ ଏମିତି ହେଲେ ତ ନିହାଲ୍ । ପିଲାଙ୍କୁ ବୁଝେଇବାକୁ ଲାଗିଲେ, ଭୁଲିବନାହିଁ ଏ ଦେଶ ନାଁ ଓଡ଼ିଶା, ବିଶାଳ ଭାରତବର୍ଷରେ ଏ ଦେଶ ଅବସ୍ଥିତ, ପଞ୍ଜାବ ମାନ୍ଦ୍ରାଜ୍ ବଙ୍ଗଦେଶ ଆଦି ଭାରତର ଅନ୍ୟାନ୍ୟ ଦେଶ, ଆମେ ସମସ୍ତେ ଭାରତୀୟ କିନ୍ତୁ ଭାରତର ଏ ଯେଉଁ ଅଞ୍ଚଳରେ ଆମେ ଥାଇଁ ତା ନାଁ ଓଡ଼ିଶା ତା ଭାଷା ଓଡ଼ିଆ ।

ବଡ଼ ବଡ଼ ଆଖି କରି କାବା ହେଲା ପରି ପିଲାଏ ତାଙ୍କୁ ଅନେଇଁ ରହିଲେ ଯେପରିକି ଏ କେଉଁ କାଳିସୀ ଉତୁରୁଛି, ସେମାନେ ଦେଖୁଛନ୍ତି । ତୃତୀୟ ଶ୍ରେଣୀର ଛାତ୍ର ଏକ ଟିକି ଭାରତୀୟ ଠିଆ ପଡ଼ି ହାତ ଯୋଡ଼ି କହିଲା,"ମାଷ୍ଟ୍ରେ, ଏକ ।" ଅନୁମତି ପାଇ ସେ ପଦାକୁ ଗଲା । ଭାରତବର୍ଷ ଓ ଓଡ଼ିଶା ପରେ ମାଷ୍ଟ୍ରେ ସିଧା ଓହ୍ଲେଇଲେ ସ୍ଥାନୀୟ ସମ୍ବାଦ ଉପରକୁ । ପଚାରିଲେ, ଘୋଷିଚ ନାଁ ଗୁଡ଼ାକ ? ଭାରତର ପ୍ରଧାନମନ୍ତ୍ରୀ, ଓଡ଼ିଶାର ପ୍ରଧାନ ମନ୍ତ୍ରୀ ଓ ଅନ୍ୟାନ୍ୟ ମନ୍ତ୍ରୀ । ଶିକ୍ଷାବିଭାଗ ଡିରେକ୍ଟରଙ୍କ

ନାଁ, ସ୍କୁଲ ଇନିସପେକ୍ଟର ନାଁ, ସ.ସ.ଇ.ଙ୍କ ନାଁ,—ମୁଖସ୍ଥ କରିରଖିଛି ଏ ନା ସବୁ ? ଭଲ କରି ଘୋଷିଥା, ପଗ୍ଭରିଦେଲେ ଚଟ୍ ପଟ୍ କହିଦେବ, ମଫସଲିଆଙ୍କ ପରି ହେବ ନାହିଁ । ଅଚ୍ଛା କହିଲ ଭାରତର ପ୍ରଧାନମନ୍ତ୍ରୀଙ୍କ ନାଁ—"

ଆଗ ଜଣେ ପିଲା କହିଲା, "ବେଣୁଧର ରାଉତ" ।

ସଙ୍ଗେ ସଙ୍ଗେ ଆଉ ଗ୍ଭରିଜଣ ପାଳିଧରିଲେ "ବେଣୁଧର ରାଉତ" ସେମାନଙ୍କରୁ ଜଣେ କହିଲା "ହଳଧର ମିଶ୍ର ।"

ଆଉ ଜଣେ ଉଠି କହିଲେ "ବଳଭଦ୍ର ପ୍ରସାଦ୍ ।"

ପୁଣି ଆଉ ଜଣେ କହିଲା "ନାଇଁ, ରାଜେନ୍ଦ୍ର ପ୍ରସାଦ ।"

ଭାରତର ପ୍ରଧାନମନ୍ତ୍ରୀଙ୍କ ନାଁ ପାଇଁ ଏପରି ଗ୍ଭରୋଟି ନାଁ ଆସିଲା, ସତେଇଶି ଜଣ ଉପସ୍ଥିତ ସଭ୍ୟଙ୍କ ଭିତରୁ ୨୧ ଜଣ ପଟ ନିଆ ନେଇ ହେଲେ, ଜଣେ ପଡାକୁ ଯାଇଛି, ବାକି ପାଞ୍ଚଜଣ ତୁନି ତାନି, ତାଙ୍କର ମତ ନାହିଁ ।

ମାଷ୍ଟ୍ରେ କାବା ହୋଇ ଅନେଇ ରହିଲେ, ତାପରେ ଗର୍ଜି ଉଠି କହିଲେ "ଏଇଥିପାଇଁ ତମକୁ ଏତେ ପୋଷେଇଲି ? ଛି ଛି ଛି ଛି—ମୋ ଚୁଆମୁଣ୍ଡ ତଳକୁ କରିଦେବ । ହଇରେ ଭାରତର ପ୍ରଧାନମନ୍ତ୍ରୀଙ୍କ ନାଁ ଜାଣିନା ।"

ସମସ୍ତେ ତଟସ୍ଥ ।

"ଅଚ୍ଛା କହିଲ ଶିକ୍ଷା ବିଭାଗ ଇନ୍‌ସପେକ୍ଟରଙ୍କ ନାଁ କଣ—"

"ବାଞ୍ଛାନିଧି ହୋତା" କିଏ ଜଣେ କହିଲା ।

"ଧନ୍ୟ ବାବୁ ତୁମେ । ସବୁ ପୋଡ଼ି ଖାଇଚ ।"

"ମୁଁ କହିବି ମାଷ୍ଟ୍ରେ । ରାଜେନ୍ଦ୍ର ପ୍ରସାଦ୍ ।"

"ତମ ମୁଣ୍ଡ ।"

ତାଙ୍କର ଚୁଟି ଝାଙ୍ଗିଗଲା । ତଳ ପାଟି ଉପରପାଟିରୁ ଅଳ୍ପ ଛାଡ଼ି ତଳକୁ ଝୁଲି ପଡ଼ିଲା ଓ ଏହି ଫାଙ୍କରେ ନାଲି ପାନପିକ କଳର କଣବାଟେ ଧୀରେ ଥୋମଣିକୁ ନିଗିଡ଼ି ପଡ଼ିଲା ।

କହିଲେ "ହଇରେ ! ସଇତାନ୍‌ମାନେ । ତେମେ ମତେ ବୁଡ଼େଇ ମାରିବ ଭାବିଚ । ହଉ, ଜଣାଗଲାଣି ତମ ଭଲଲୋକି । ଭଲ କରି ଘୋଷି ମନେ ରଖ, ନହେଲେ ତମ ପିଠିକି ଏ ବେତ । ଲେଖ, ମୁଁ କହି ଦଉଚି କାହା ନାଁ କଣ, ଯେ ପରିଦର୍ଶନକୁ ଆସିବ ସେ ଆଗ ପଗ୍ଭରିବ ସାଧାରଣ ଜ୍ଞାନ ।"

ମନ ଭିତରର ମାଦା ସୁପ୍ତିପଣ ଉଲଟି ଯାଇଛି । ଏଥର ଅନିଶ୍ଚିତତା, ଦୃଷ୍ଟିରେ ଦିଶୁଛି ଭିନେ ଦୃଶ୍ୟ । ଆପଣାଠିଁ ସହସ୍ରେ ତ୍ରୁଟି ଦିଶି ଯାଉଛି, ଲାଗୁଛି ସେ ସବୁ ଆଉ କେବେ ସୁଧାରି ହେବ ନାହିଁ । ବେଳନାହିଁ, ଥିଲେ ଅବା ହୋଇଥାନ୍ତା । ଇସ୍କୁଲଟା ଭିନେ କରି ଦେବି ହୋଇଥାନ୍ତା ପର, ପୁଣି ଘରକୁ ଘର ବୁଲି,

ହାତ ଓଠ ଧରି ନେହୁରି ହୋଇ ପିଲା ସଂଖ୍ୟା ବଢ଼େଇ ହୋଇଥାନ୍ତା, ଦ୍ୱିତୀୟ ଶିକ୍ଷକ ଜଣକୁ ବି ଅଣାଇ କାର୍ଯ୍ୟରେ ଲଗାଇ ହୋଇଥାନ୍ତା, ଭଲକରି ଘର ଛପର, ଭଲ କରି ମାଟି ନେସା ନେଇ, ଭଲ ବଗିଚା, ଭଲ ଛବି, କେତେ କଥା କରି ହୋଇଥାନ୍ତା । ଉଦ୍ୟମ କରିଥିଲେ । ଉପରେ କୁହାପୋଛା କରି ହୁଏତ ନିଂପ୍ରାଃଟିକୁ ଉଃପ୍ରାଃ କରି ହୋଇଥାନ୍ତା, ଉଃପ୍ରାଃରୁ ମିଃଇଃ, ମିଃଇଃରୁ ହା ଇ. ମାନେ ପଢ଼ିଲା, ତାଙ୍କରି ସଙ୍ଗେ ଏକା ସଙ୍ଗକେ ନି.ପ୍ରା.ରେ ଯୋଗ ଦେଇଥିଲେ ଉଡି ଆଚାର୍ଯ୍ୟ, ରଘୁ ସିଂ, ନରି ପତି, ରଘୁ ସିଂ ଧୋବା ପିଲା ହେଲେ କଣ ହେଲା ଇସ୍କୁଲକୁ ବଢ଼େଇ ତା ସଂଗେ ସଂଗେ ତାଳୁଅ ଧାନ ପରି ନିଜେ ବଢ଼ି ବଢ଼ି ପଚିଶ ବର୍ଷରେ ଏମ୍ ଏ. ପାଶ୍‌କରି ହେଲେଣି ସେଠିକା ହାଇସ୍କୁଲର ହେଡ଼ମାଷ୍ଟର, କେତେ ଆଡ଼ୁ କେଡେ କେଡେ ଚାକିରୀ ପାଇଁ ଡକରା ଆସି ଫେରିଲାଣି । ମନା କରି ଦେଇଛନ୍ତି କହିଛନ୍ତି ଏଇ ଭଲ । ଉଡି ଆଚାର୍ଯ୍ୟ ମି ଇ. ସ୍କୁଲ ବସେଇ ସେମିତି ଧରେଇ ଗୁଡେ ବାରମ୍ବାର ପରୀକ୍ଷା ଦେଇ ପାଶ୍ କରି ଆଇ.ଏ. ଯାଏ ଗଲେଣି । ନରି ପତି ଆପେ ଯେତେ ପାଶ୍ କଲେନାହିଁ ସତ, କିନ୍ତୁ ତାଙ୍କ ନିଂପ୍ରା. ସ୍କୁଲଟା ବଢ଼ି ବଢ଼ିକା ହେଲାଣି ଆସି ଏକ ବଡ ମି. ଇ. ସ୍କୁଲ । ଶହ ଶହ ପିଲା, ଆଉ ନରି ପତିଙ୍କ ପୁଅଟି ପାଠ ପଢ଼ି ବିଲାତ ଯାଇ ଲେଉଟି ଆସି ହେଲାଣି ଅଧ୍ୟାପକ ।

ତାଙ୍କର ବି ହୋଇପାରିଥାନ୍ତା କିଛି ଗୋଟାଏ ସେମିତି, ଅନ୍ତତଃ ଯାହା ଅଛି ତାଠୁ ଭଲ ।

ଆପଣା ରକ୍ତରିର ଏହି ସାନ ପରିସର ଛାଡ଼ି ଅଦିନିଆଁ ଚହଲିଗଲା ପଦାକୁ, ତାର ସଙ୍ଗେ ଆପଣାକୁ ତୁଳନା କରିବାକୁ, ଯାହା ପ୍ରାୟ ସେ କରନ୍ତି ନାହିଁ । ଆପଣାର ବନ୍ଧା ମପା ଚଲା କର୍ମ ପରିସର ଭିତରେ ନିର୍ଭରେ ଜଗୁ ଜଗୁ ଦିନ ସରିଯାଏ, ବେଳ ବୁଡ଼ି ଯାଏ, ଆଉଦିନ ସୂର୍ଯ୍ୟ ଉଇଁଲାବେଳକୁ ଦିନଟିଏ ଗଲାଣି । ଆଜି ସେହି ଅଳ୍ପ କେଇ ଦିନରୁ ଗୋଟିଏ ଦିନ ଯେତେବେଳେ ପଛକଥା ମନେ ପଡ଼ିବା ସଙ୍ଗେ ସଙ୍ଗେ ପରସଙ୍ଗେ ତୁଳନା କରି କରି ମଣିଷ ନିଜକୁ କଳେ । ଦେଖେ କେତେ କ୍ଷତି କେତେ କ୍ଷତ ।

ପିଲାଏ ସବୁ ଛନ୍ତି କି ନାହିଁ ? ଆଦୌ ଅଛନ୍ତି ନା ନାହିଁ ସେଠି ? ଆଜି ଘଡି ମିଛୁ ମିଶ୍ରଙ୍କ ଘରୁ ଭୋଜନ ମୁଠିକ ଆସିବା କଥା, ତାଙ୍କରି ଘର ପାଳି ଆଜି, ସନ୍ଧଜେତ ନାଡି ପଣନାଡି ହୋଇ ଆଠ ଜଣ ପଢ଼ନ୍ତି ଏ ଇସ୍କୁଲରେ । ହେଲେ ବୁଢ଼ାର ଖରି ଲୋଭ, ଆସିବ କି ନାହିଁ ଅଜିକା ସିଧାଟା ?

କିଛି ମନେ ପଡ଼ୁ ନାହିଁ ସେ ସବୁ କଥା । ଖାଲି ଦିଶୁଛି ଆଗରେ ଖସଟା ଚଳିଲାଣି ମଉଳିଲାଣି, ମନେ ପଡ଼ୁଛି ଜୀବନଟା ଦିନ ଦିନ ହୋଇ ବୁଣିଗଲା ସତେ ଯେମିତିକି ପୋଟିଷ ବୁଣି ଯାଇଛି ଟାଙ୍ଗରା ପଥର ଉପରେ ।

ଉଠିଲା ନାହିଁ କିଛି । ଆଉ ବେଳ ବି ନାହିଁ । ଭାଗ୍ୟ । କିନ୍ତୁ ଏତିକି କହି ଦେଇ ଆପଣାକୁ ସାନ୍ତ୍ୱନା ଦେଇ ହେଉନାହିଁ । ଝିଅଟା ବି ବିଧବା ହେଲା । ଧରୁ ଧରୁ ସବୁ ତାଳ ଛିଣ୍ଡି ପଡ଼ିଛି ।

ଏମିତି ଅନ୍ୟମନସ୍କ ପଣ ରହିଲା ବହୁତ ବେଳ ଯାକେ । ଛୁଟି ହେଲା । ପିଲାଏ ବିଦା ହୋଇଗଲେ । ଗୋରୁ ବାହୁଡ଼ି ସାରିଲେ । ଗାଲରେ ହାତ ଦେଇ

ଦୁଆର ମୁହଁରେ ବସି ରହିଥିଲେ ହେ. ପ. ଦୃଷ୍ଟି ଆଗରେ ଖାଲି ନଡ଼ିଆ ଗଛର କାଣ୍ଡ, ଯେମିତିକି ଖାଲି ଖୁଣ୍ଟ ତିନିଟା, ତା ସେପଟେ ଝାଟି ବାଡ଼ ଠାଏଁ ଠାଏଁ ଈଁ କରିଛି ।

ସେ ପଚାରୁ ଥିଲେ, କାହିଁକି ମଣିଷ ଜନ୍ମ ହୁଏ ? କାହିଁକି ଅବା ସେ ବଞ୍ଚେ ? ନଡ଼ିଆ ଗଛଠୁ ତାର କିଛି ଉତ୍ତର ମିଳୁଥିଲା ।

ଧୀରେ ଧୀରେ ଅନ୍ଧାର ତାଙ୍କ ଦୃଷ୍ଟି ଆଗରେ ।

ଜାଲ ବାନ୍ଧି ଦେଇଥିଲା, ତାପରେ ଆହୁରି ପରସ୍ତ ପରସ୍ତ ଜାଲ, ସେ ଉଠି ପଡ଼ି ଚାଲିଲେ ।

ଘରେ ତାଙ୍କ ଅନ୍ୟମନସ୍କପଣ ସମସ୍ତେ ଲକ୍ଷ୍ୟ କରିଥିଲେ । ଖାଲି ଯେ ଆଜି ଫେରୁ ଫେରୁ ଡେରି ହୋଇଗଲା ତା ନୁହେଁ । ଫେରିବା ସଙ୍ଗେ ସଙ୍ଗେ ଟିକି ନାତୁଣୀ ସଙ୍ଗରେ କେତେ ଦୁଃଖ ସୁଖ ପଦେ । ଦିନ ଭିତରେ କିଏ ତାକୁ ଗାଳିଦେଲା କି ମାରିଲା, କି କଣ ନୂଆ କଥା ସେ ଦେଖିଚି କି ଶୁଣିଛି । ଇତ୍ୟାଦି । ବେତ ବାଡ଼ି ଆଉ ମୁଖା ପରି ମୁହଁର ଭଙ୍ଗୀକି ଥୋଇ ଦେଇ ନାତୁଣିକି କାଖେଇ କୋଳେଇ ନ ଚହଲିଲେ ତାଙ୍କୁ ଶାନ୍ତି ଲାଗେନାହିଁ । ଆଜି ସେ ସବୁ ନାହିଁ । ଝିଅ ପଚାରିଲା ବାପା, ଆଜି କାହିଁକି ଡେରି ହେଲା ? ପଦେ କଥାରେ ସେ ଉତ୍ତର ଦେଇଥିଲେ,— "ପରି ଦର୍ଶନ ହେବ ।" ସଞ୍ଜ ବୁଡ଼ିଲେ ସେ ତାଙ୍କ ଭାଗବତ ଗାଦି ଆଗରେ ବସି ପୋଥି ଖୋଲି କୌଣସି ଏକ ପୃଷ୍ଠାରୁ ଅଧ୍ୟାୟେ ପାଠକରି ଦିଅନ୍ତି । ଆଜି ତୁନି ତାନି ହୋଇ ଉଠିଗଲେ ଦାଣ୍ଡ ପିଣ୍ଡାକୁ, ଅନ୍ଧାରରେ ସେଇଠି ବସି ରହିଲେ । କଣ ହୋଇଛି ଆଜି ? ସ୍ତ୍ରୀ ଆସି ପଚାରିଲେ—"ଠାକୁର ପୂଜା ପୋଥି ବୋଲି ଆଜି କିଛି ନାହିଁ । ଦେହ ବିଗିଡ଼ିଲା କି ?"

"କଣ ବଡ଼ ପାଟି ନକଲେ ଠାକୁରଙ୍କୁ ଶୁଭିବ ନାହିଁ ?" ସେ କହିଲେ, "ତୁନି ତାନି ଭାବିଲେ ସିନା ବେଶି ଭାବି ହୁଏ, ମୁଁ ଲୟ ଲଗେଇଛି ରଇଥା ଯା ।"

କିନ୍ତୁ ଲୟ ବି ଠାକୁରଙ୍କଠି ରହି ପାରି ନଥିଲା । ଆଗ ଭାବିଥିଲେ ଠାକୁରଙ୍କର କେତୋଟି ନାଁ, ଜଗନ୍ନାଥ, ରାମ, ଗୋପାଳ, ହରି, ଏହିପରି । କ୍ରମେ ସେ ବି ଅଟକି ଗଲା । ମନେ ପଡ଼ିଲା, ପରିଦର୍ଶନ ହେବ, ତାହାରି ସଙ୍ଗରେ ମିଶି କରି ଆସିଲା ଅଜଣା ଭୟ । ଆପଣା ନିଃସହାୟତା ମନେ ପଡ଼ିଲା । ଭୟ ତୁଟି ଯାଇ ଆସିଲା ଅଭିମାନ, ସାରା ଦୁନିଆ ଉପରେ । ଲାଗିଲା, କିଏ ତାଙ୍କର କଣ କରିଛି ? ବରଂ ତାଙ୍କ କଥା ଶୁଣା ହୋଇ ନାହିଁ, ତାଙ୍କ ମଲା ହଜିଲା କେହି ବୁଝ ନାହିଁ । ଖାଲି ଯେ ଯେତେ ସୁବିଧା ନେଇପାରେ ସେ ସେତେ ସୁବିଧା ନେଇଛନ୍ତି । ସଂସାର ଏମିତିକା । ତାଙ୍କୁ ବଢ଼ିବାକୁ ସୁଯୋଗ ଦେଇନାହିଁ, ବିଶ୍ରାମ ଦେଇନାହିଁ, କିଛି ଦେଇ ନାହିଁ ।

ସକାଳ ପହିଲା ।

ଆରମ୍ଭ ହେଲା ସଫା ସଫି ଲିପା ଲିପି କାମ । ଶିଷ୍ୟମାନଙ୍କ ଆଗରେ ତଥ୍ୟ ବଖାଣି ସେ କହିଲେ ଆମେ ଏପରି ଭାବେ ନିଜକୁ ରଖିଥିବା ଯେପରିକି ଯଦି ଅଧରେ କିଏ ଆସି ପରିଦର୍ଶନ କଲେ ସୁଦ୍ଧା ଆମର ପଳେଇବା ନଥିବ । ଅତଏବ ଲାଗିପାଅ କାମରେ, ଆମକୁ ଯେମିତି ପଛେ ନିନ୍ଦା ନଆସେ ।

ଆଜିବି ଦ୍ୱିତୀୟ ଶିକ୍ଷକ ଶ୍ୟାମ ସାହୁବାବୁଙ୍କ ଦେଖାଦର୍ଶନ ନାହିଁ । ପିଲା କାଲି ଆସିଥିଲେ ସତେଇଶି ଜଣ, ଆଜି ପୁଣି କୋଡ଼ିଏ ଜଣ । ଆଉ ସାତଜଣ କେଉଁ କାରଣରୁ ନଆସି ପାରିଲେ ତା ଜଣା ନାହିଁ । ଦିପହର ବେଳ ହୋଇଥାଏ । ଉତ୍ଲୁ-ଉଡିଆ ଖରା । ସ୍କୁଲ ଘର ଦୁଆର ମୁହଁରେ ବସିପଡ଼ି ପାନ ବଟୁଆଟି ଖୋଲି ତଳେ ଥୋଇ ଦେଇ ପାନ ଝାଂଗୁ ଝାଂଗୁ ମାଷ୍ଟ୍ରେଙ୍କୁ ନିଦ ବି ହୋଇ ଯାଇଥାଏ ଟିକିଏ । ପିଲାଏ ଆପଣା ସୁଖେ ବହି ଖୋଲି ଦେଖୁଥାନ୍ତି କେହି କେହି ପାଟି କରୁଥାନ୍ତି । ଗୋଟାଏ ମଟର ଶବ୍ଦ ଶୁଭିଲା । ପିଲାଏ କିଲିକାଲିଆ ହୋଇ ଦଉଡ଼ିଲେ । ଗୁହୁଁ ଗୁହୁଁ ମଟରଟା ଆସି ହଠାତ ଦୁଆର ମୁହଁରେ ପହଞ୍ଚିଗଲା ଏବଂ ଓହ୍ଲେଇ ପଡ଼ିଲେ ତିନି ଜଣ, ସ. ସ. ଇ. (ସହକାରୀ ଡେପୁଟି ଇନିସ୍‌ପେକ୍‌ଟର), ଇନ୍‌ସପେକ୍‌ଟର ଓ ଆଉ ଜଣେ, ସେ ଗୋରା ଡେଙ୍ଗା ପ୍ୟାଣ୍ଟ କୋର୍ଟ ପିନ୍ଧା ମୋଟା ସୋଟା ହୋଇ ଗମ୍ଭୀର ଭଦ୍ର ଲୋକ, ଆଖିରେ ମୋଟା ଚଷମା । ତାଙ୍କର ମୁହଁର ଭଙ୍ଗୀ ଦେଖୁ ଦେଖୁ ହେଡ୍‌ ପଣ୍ଡିତଙ୍କ ହାଲୁକ ଶୁଖିଗଲା । ଏକ ବୃଥା ଅଜଣା ଭୟ ଯେପରି କି ହଠାତ୍‌ ତାଙ୍କୁ ଗ୍ରାସ କରିଲା । ମନେ ମନେ ସେ ଅନୁଭବ କଲେ ଏଇ ନୂଆ ଆଗନ୍ତୁକହିଁ ବଡ଼ ପରିଦର୍ଶକ । ସେ ଧଡ଼୍‌ ପଡ଼୍‌ ହୋଇ ଧାଇଁଯାଇ ଗୋଟି ଗୋଟି କରି ଦଣ୍ଡବତ କଲେ । କୋଡ଼ିଏ ଜଣ ପିଲା ପଟାଳିଏ ଗଛ ଉଠିଲା ପରି ଠିଆ ହୋଇ ଦେଢ଼ି ଜୟହିନ୍ଦ୍‌ ଜଣାଇଲେ । କେବଳ ମୁଣ୍ଡ ଟୁଙ୍ଗାରି ଟୁଙ୍ଗାରି ବିନା ବଚନିକାରେ ପରିଦର୍ଶକ ଖାତା ପେନ୍‌ସିଲ ଧରି ଆରମ୍ଭ କରିଦେଲେ । ଏ ସ୍କୁଲର ନାଁ କଣ ? ଆପଣଙ୍କ ନାଁ କଣ ? କେତେ ଦିନ ହେଲା ଏଠି ରହିଲେଣି, ଆପଣ ଆସିଲା ବେଳେ କେତେ ପିଲା ଥିଲେ ? କେଉଁ ଶ୍ରେଣୀରେ କେତେ ଛାତ୍ର ପଢ଼ନ୍ତି ? କେତେ ଜଣ ଆସିଛନ୍ତି ? କେତେ ଗାଁରୁ ପିଲା ଏଠିକି ଆସନ୍ତି ? ଆଖପାଖରେ ବେସରକାରୀ ଚାହାଳି କେତୋଟି ଅଛି ? ପାଠ ପଢିଲା ବୟସର କେତେ ପିଲା ଏ ଆଖ ପାଖ ଗାଁରେ ମିଳି ପାରିବେ ? ଆପଣ ଘରବାର ବୁଲି ଡ଼ାକି ଯାଆନ୍ତି ନା ନାହିଁ ? ସ୍କୁଲ ଘର ଶେଷ ଥରକ କେଉଁବର୍ଷ ଛୁଆଣି ହୋଇଥିଲା ? ସ୍କୁଲ ଘରର ଦୁରବସ୍ଥା ବିଷୟ ଆପଣ ଗ୍ରାମବାସୀଙ୍କୁ କହନ୍ତି କି ନାହିଁ ? ଏହିପରି ଅନେକ ପ୍ରଶ୍ନ । ତାପରେ ବିଦ୍ୟା ପରୀକ୍ଷା ଆରମ୍ଭ ହେଲା ।

ହଁ ପାଠ୍ୟ ନିର୍ଘଣ୍ଟ କାହିଁ ? ବାର୍ଷିକ ପାଠ୍ୟ ଯୋଜନା ଖାତା କାହିଁ ? ପ୍ରତି ଶ୍ରେଣୀର ଅଛି ନା ନାହିଁ । ଓ ! ଏ କାଗଜତ ହଳଦିଆ ପଡ଼ି ଗଲାଣି, ଏ ପାଠ୍ୟ ଯୋଜନା ଖାତା କେଉଁ ଶତାବ୍ଦୀରେ ତିଆରି ହୋଇଥିଲା ? ପିଲାଙ୍କ ପାଇଁ ପାଠପଢ଼ା ଛବି କରିଛନ୍ତି କି ? ଓ । ଏଗୁଡ଼ାକ ଉଈ ଚରି ଯାଇଛି ନା କଣ ?

ଉତ୍ତର ଦେଇ ଦେଇ ମାଷ୍ଟ୍ରେ ବାଦୋଳ ତଡକିଲା ପରି ଅପେକ୍ଷା କରିଥାନ୍ତି, ଏଥର ହୁଂକା କଥାଟା ପଚାରିବେ ନା କଣ ? କିନ୍ତୁ ଏତେ ବଡ଼ ଆଖି ଦରଣା ପଦାର୍ଥଟା ଯେପରିକି ତାଙ୍କ ଆଖିରେ ହିଁ ପଡ଼ିନାହିଁ । ସେ କାଗଜ ପତ୍ରରେ ମନ ଦେଇଛନ୍ତି, ନିର୍ଘଣ୍ଟ, ଯୋଜନା ଖାତା, ପରିଦର୍ଶନ ମନ୍ତବ୍ୟ । ସେଇଠି ଅଟକିଲେଣି । ବାନା ପରିଡ଼ାଙ୍କ ମନ୍ତବ୍ୟ ଦେଖୁଛନ୍ତି । ହସ୍ତାକ୍ଷର ନୁହେଁତ, ଚିତ୍ର । "ମାଟେରେ ହୁଙ୍କା ଭର୍ଜିବ, ଏଥକୁ ହେଳା କରିବ ନାଇଁ । ଇତି । ବାନା ପଇଡ଼ା, ଭୂତ ପୂର୍ବ ଡ଼ି ଵୋ ମେହେମରା" ତାପରେ ତାରିଖ ପରିଦର୍ଶକ ବଡ଼ପାଟିରେ ମନ୍ତବ୍ୟଟା ପଢିଲେ, ଭଲି ଓଠକୁ କାମୁଡ଼ିଲେ । ବାନା ପଇଡ଼ା ନିଜ ନାଁ । ଶେଷରେ ଓ ଅନ୍ୟାନ୍ୟ ଶବ୍ଦ ଶେଷରେ

ବିସର୍ଗ ଦେଉଥିଲେ ଓ ଖୁବ୍ ବଡ ବଡ ଅକ୍ଷରରେ ଲେଖୁଥିଲେ । ଜିଲ୍ଲା ବୋର୍ଡରେ ପୂର୍ବେ ସେ ଥିଲେ ମେମ୍ବର, ଦଶ ବର୍ଷ ତଳେ, ସେଠିନୁ ସେ ତାକୁ ଏକ ଉପାଧି ପରି ବ୍ୟବହାର କରି ଆସିଛନ୍ତି । ଭୂତପୂର୍ବ ଜି: ବୋ: ମେମ୍ବର: । ତୁଙ୍ଗା ଉର୍ଗ ବା ନିର୍ବେ ଶକୁ ଯେ ଲିପିବଦ୍ଧ କରି ଯାଇଥିଲେ । ଜି: ବୋ: ପରି ସ୍ୱାଧୀନଭାବେ ବ୍ୟବସ୍ଥାପକ ସଭା ପାଇଁ ପ୍ରାର୍ଥୀ ହୋଇ ସେ ସେଥିରେ ଆପଣା ଅମାନତ ଟଙ୍କା ହରାଇ ସାରିଲେଣି, ମାମଲତକାର ଲୋକ, ଉପଦେଶ ଦେବା ତାଙ୍କର ଏକ ପ୍ରକାର ବୃତ୍ତି ।

ଗାଁଲୋକେ ଇସ୍କୁଲ୍ ଦୁଆର ମୁହଁରେ ଆସି ଲଙ୍ଗର ପଙ୍ଗର ହେଲେଣି । ରମ ସାହୁ 'ଯୁବକ ନେତା' ବେଶରେ ଆସିଛି । ଧୋବଲୁ ଦିଶୁଛି ଗୋଟାସାକ । ହାତରେ ଘଣ୍ଟା, ପିଠିରେ ମୁଣି, ସଦ୍ୟ ଯେମିତିକି ସହରରୁ ଫେରିଛି । କିନ୍ତୁ ତା ଲୁଗା ପଂଝାବିର ଇସ୍ତିରିର ଭାଙ୍ଗ ଏକର ସେକର ହୋଇନାହିଁ । ହେଡ୍ ପଣ୍ଡିତ ଆତଙ୍କରେ ଅନାଇଁଲେ । ସେ ଜାଣନ୍ତି ରମ ସାହୁ କଣ କହିବ । ଦି ତିନିଜଣ ମନ୍ତ୍ରୀଙ୍କ ନାଁ କହିବ, ସତେ ଯେପରି ସେ ତାଙ୍କର ଅତି ଆପଣାର ମଣିଷ । ଯେପରିକି ତାଠୁ ଚିଠି ନ ପାଇଲେ ତାଙ୍କ ଭାତ ହଜମ ହୁଏ ନାହିଁ । କେତେଟା ଖବର କାଗଜର ନାଁ କହିବ, ସେ କହେ ସେସବୁ ଖବର କାଗଜର ସେ କୁଆଡେ ନିଜ ସମ୍ବାଦଦାତା । ବହୁତ ବାହାପିଆମି କରି ସେ ଅଲଗା କଥା କହିଯିବ । ନିଜର ପାରିଲାପଣ ବର୍ଣ୍ଣନା କରିବ । କିନ୍ତୁ ବର୍ଣ୍ଣନା କରିବ ନାହିଁ କଣ୍ଟ୍ରୋଲ ଯୁଗରେ ଗାଁ ମୁଣ୍ଡରେ ଯେ ଯେଉଁ ଦୋକାନ ଦେଇଥିଲା ତା ଇତିହାସ, କେମିତି ସେ କଳାବଜାର କରୁଥିଲା ସେକଥା, ଗାଁର ଏଇ ଇସ୍କୁଲ ଘର ତୁଆଣି ହେବ ମରମତ ହେବ ବୋଲି ସେ ଯେଉଁ ଚନ୍ଦା ଅସୁଲ କରିଥିଲା, ତାପରେ ଆଉ ତାକୁ ଦେଲା ନାହିଁ ସେକଥା ସେ କେବେ କହିବ ନାହିଁ, ସେ କହିବ ନାହିଁ କି କାରଣରୁ ତାର ବିଭାହେଲା ଭାରୀଜା କାନ୍ଦି କାନ୍ଦି ବାପ ଘରକୁ ଚାଲିଗଲା ଆଉ ଆସିଲା ନାହିଁ, ସେ କହିବ ନାହିଁ କାହିଁକି ତାର ସୁନ୍ଦର ମୁହଁର କାଚ ପରି କପାଳରେ ଠାଏ ଫଟା ଦାଗ ରହିଯାଇଛି, କିଏ ଫଟେଇଥିଲା କି ଦୋଷରେ । ଏଇ କଥା କହିଲେତ ତା ସାଙ୍ଗରେ କଳିଆ ଲାଗିଯାଏ । ରମସାହୁ ତାଙ୍କରି ବିରୁଦ୍ଧରେ ଗୁଡାଏ ଗପିବ, କହିବ ଏ ମାଷ୍ଟରଙ୍କୁ ଏଠୁ ବଦଳି ନକଲେ ଏଇସ୍କୁଲ ଭାଙ୍ଗିଲା, ଏ ବିଷୟରେ ଏଗାଁରେ ଆପଣ ଗଣଭୋଟ ନେଇ ପାରନ୍ତି । ଓ: କି ସଇତାନ୍ । ଘରଭେଙ୍ଗା କୁଳବୁଡା ତାଲିଆ ଟାଉଟର । ବିଶେଷଣଗୁଡାକ ଠାଁକୁ ଠାଁ ଜିଭ ଆଗକୁ ଚାଲି ଆସୁଛି । ସେ ତାକୁ ମନେ ମନେ ଗାଳି ଦେଉଛନ୍ତି । ଅପେ ସେହି ହିଂସାର ବିଷରେ ମନେ ମନେ ଛଟପଟ ହେଉଛନ୍ତି ।

ଏଣେ ପରିଦର୍ଶନ ଚାଲିଛି ।

ହଁ, ତୃତୀୟ ଶ୍ରେଣୀ ପିଲା ତୁମେ ଚାରିଜଣ । ଉପସ୍ଥାନ ଖାତାରେ ଆଜି ୯ ଜଣ ଆସିଥିବା ପରି ଗଡିଛି ଯେ । ଆଉ କେହି ଆସି ନଥିଲେ । ଆଚ୍ଛା ପଢା ବହିର ପ୍ରଥମ କବିତାଟି ଆବୃତ୍ତି କର । କେହି ମନେ ରଖିନା ? କେହି ଭଣେ ହେଲେ । ଘୋଷ ନା ପଢ । ବହିଟା ପରି ଆସିଲା ଯେ । "ଗଗନ ବିହାରି"—ଏ ଶବଟି ମାନେ କହିଲ । "ଗଗନରେ ଯେ ବିହାର କରେ ସେ । " ବା:, ଭଲ ଶିଖିଚ, ଗଗନରେ ତେବେ କିଏ ବିହାର କରେ ? ଏଁ, ଶାଗୁଣା ? ତୁମେ କହ । ଗଗନ ବିହାରୀ ମାନେ କଣ ? ଶାଗୁଣା । ଆଉ, ତୁମେ କହ,—ଏଁ ଚିଲ । ଗଗନବିହାରୀ ମାନେ ଚିଲ । ଦଣ୍ଡାୟମାନ

ମାନେ ? ଠେଙ୍ଗା ? ବାଃ । ଏଥର ବନାନ ପଚ୍ଛରିବା । ଭଲ ବନାନ୍ କର । ହ୍ରସ୍ୱ ଉ ହ୍ରସ୍ୱ ଇ ? ପିମ୍ପୁଡ଼ି ବନାନ୍ କର । ମଧ ମ ହ୍ରସ୍ୱ ଇ ଦୀର୍ଘ ଈ ? ହାତୀ ବନାନ୍ କର । ହ ଆକାର ତି ତ ଯତ କୋଉଠି ? ତ ହ୍ରସ୍ୱ ଇ । ବନାନ୍ ତ ଅନୁରୂପ ହେଲା । ମାନସାଙ୍କ କହ । ଗୋଟିଏ ପେନ୍‌ସିଲ୍‌ର ଦାମ ଷ୍ଟିକି ପଇସା ହେଲେ ଚଉଦଣାକୁ କେତୋଟି ପେନ୍‌ସିଲ୍ ମିଳିବ ? ତୁମେ କହ । ଛପନଟା ? ତୁମେ କହ । ବାଇଶିଟା ? କେତେ ? ବାରଟା ? ବୟାଳିଶିଟା ? ବାଃ, ସ୍ଲେଟ୍ ନେବାକୁ ପଡ଼ିବ ପରା । ସାଧାରଣ ଜ୍ଞାନ ଶିଖିଚ ? କହତ, ଆମ ଦେଶକୁ କିଏ ଶାସନ କରୁଛନ୍ତି ? ରଜା ଅଛନ୍ତି କି ନାହିଁ ? ଅଛନ୍ତି ? ହଉ, କଣ ତାଙ୍କ ନାଁ ? କୁମାର ସ୍ୱାମୀ ରଜା । ଆମ ରଜା ସେ । ଭୂଗୋଳ କହ । ପୃଥିବୀର ଆକାର କିପରି ? କମଳାଲେମ୍ବୁ ପରି । କଖାରୁ ପରି ନୁହେଁ କାହିଁକି ? ପୃଥିବୀ ଆକାର କମଳାଲେମ୍ବୁ ପରି ବୋଲି କାହିଁକି କହୁଚ ? କେହି କହି ପାରିବ ନାହିଁ ? ମାଷ୍ଟ୍ରେ ଆପଣ ବୁଝାଇ ଦିଅନ୍ତୁତ ।

ରମ ସାହୁ ପାଟି ପଡ଼ଛାଉଛି । ଖଣ୍ଡ ହେଉନାହିଁ କିଛି କହିବାକୁ ପରା । କହିବ ସେ କହିବ, ଛାଡ଼ିବ ନାହିଁ । ତାକି ହାକି ଚଡ଼ିଛି । ମନ ହେଉଛି ତା ତଣ୍ଟିରୁ ଏମିତି ଧରି ଝାଙ୍କି ଦେବାକୁ । ଏମିତି ।

ମାଷ୍ଟ୍ରେ ଆପଣା ଅଙ୍ଗୁଠିକୁ ନିଘା କଲେ । ଦି ହାତର ଅଙ୍ଗୁଠିକୁ ଟାଙ୍କି ଟାଙ୍କି ସେ ହାତ ମୁଠୋଉଛନ୍ତି ପୁଣି ଖୋଲୁଛନ୍ତି । ସ. ସ. ଇ. ଡାକୁଛନ୍ତି

"କି ମାଷ୍ଟ୍ରେ ଆପଣଙ୍କୁ କୁହା ଯାଇଛି ଶୁଣୁନିନାହିଁକି ?"

ଇନିସ୍‌ପେକ୍‌ଟର ମୁହଁ ଭୁକୁଣ୍ଡାଉଛନ୍ତି । ରମସାହୁ ହସୁଛି, ସେହି ତାର କଣାଗୁଣ୍ଡା ପିଲ୍ଲିଆ ହସ, ପାନ ଖାଏନାହିଁ ଯେ ବାସିଧୋଇ ଲୁଗାପରି ଦାନ୍ତ ଦିପାଟି ଏମିତି ହସରେ ଯେ ଲୋକଙ୍କ ବିଶ୍ୱାସ ଜନ୍ମାଏ । ଉସ୍ । ମନ ଯାହା ହେଉଛି । ତାର ସେହି କଅଁଳିଆ ଛନଛନିଆ ଗୋଲ ମୁହଁଟାକୁ ଗୋଟାଏ ଦଳଡା ପଥରରେ— । କହିବ କହିବ ହେଉଛି ରମ ସାହୁ ବାଗ ପାଉ ନାହିଁ ଓର ଉଣ୍ଡୁଛି ବାହାରିବ ତା ମାଳିକା—ମନ୍ତ୍ରୀଙ୍କ ପାଖକୁ ଯାଇଥିଲି । ମତେ ଭାତ ଖାଇବାକୁ ଡାକିଲେ ମୁଁ ରହିଲି ନାହିଁ ମୋର କାମ ଥିଲା । ଏ ମାଷ୍ଟର ପାଇଁ ଏ ଇସ୍କୁଲ ଭାଙ୍ଗୁଛି ।

"କି ମାଷ୍ଟ୍ରେ, କଣ ଭାବୁଛନ୍ତି ? ପୃଥିବୀଟାକୁ କମଳାଲେମ୍ବୁ ପରି କାହିଁକି କୁହା ହୋଇଛି ପିଲାଙ୍କୁ ଟିକିଏ ବୁଝେଇ ଦିଅନ୍ତୁ ହାକିମ କହୁଛନ୍ତି ।"

ପରିଦର୍ଶକମାନେ ହସୁଛନ୍ତି । ଦେଖିବାରୁ ସାହସ ଲାଗିଲା । ଆପେ ହସିଦେଇ ଗଳା ଖାଙ୍କାରି ସେ ପିଲାଙ୍କୁ ମୋହିଁ ଠିଆ ହେଲେ । ଏଥର ସେ ପରୀକ୍ଷା ଦେବେ । ଏପରି ପରୀକ୍ଷା ଦେବେ ଯେପରିକି ପରିଦର୍ଶକମାନେ ଅଭିଭୂତ ହୋଇଯିବେ । ତାଙ୍କର ମୁଣ୍ଡପୋଡି ପଡ଼ି ରହିଥିବା ବ୍ୟକ୍ତିତ୍ୱ ସତେକି ଚେଇଁ ଉଠି ବେକ ଟେକିଲା । ସେ ପ୍ରତିଷ୍ଠା ଲୋଡୁଛି । ରମ ସାହୁ ଆଡ଼କୁ ଅବଜ୍ଞାରେ ଏକ ଗ୍ରହ ଣି ଛାଟିମାରି ସେ ପିଲାଙ୍କୁ ଅନାଇଁ ବକ୍ତୃତା ଆରମ୍ଭ କଲେ :—

"ବିଷୟ ହେଉଛି, ପୃଥିବୀକୁ କାହିଁକି କମଳାଲେମ୍ବୁ ସହିତ ଉପମା ଦିଆଯାଏ । କବିତୁଣ୍ଡ ଦେଖାମୁଣ୍ଡ ଯେଉଁଠାରେ ମନ ସେହିଠାରେ ଧାଇଁଯାଏ, କବି କଳ୍ପନାରେ ସତେକି ଆକାଶରୁ ଜହ୍ନ ଓହ୍ଲେଇ ଆସେ ମଣିଷ ମୁହଁ ସଙ୍ଗେ ତୁଳନା

ହେବ ବୋଲି । ଯେମିତି ମୁହଁକୁ ଚନ୍ଦ୍ର ସଙ୍ଗେ, ଆଖିକୁ ପଦ୍ମ ସଙ୍ଗେ, ଓଠକୁ ପାଚିଲା କଇଁଚିକାକୁଡ଼ି ସଙ୍ଗେ, ଭୂରୁକୁ ଧନୁ ସଙ୍ଗେ, ନାକକୁ ତିଳଫୁଲ ସଙ୍ଗେ, ଦାନ୍ତକୁ ଡାଳିମ୍ବ ଦାନା ସଙ୍ଗେ, ଜଂଘକୁ ଓଲଟା କଦଳୀ ସଙ୍ଗେ—''

ପରିଦର୍ଶକମାନେ ମୁହଁରେ ରୁମାଲ ଗେଞ୍ଜି ହାତପାପୁଲି ମାଡ଼ିବସି ରହିଛନ୍ତି । ପିଲାଗୁଡ଼ିକ ଆଁ କରି ଅନାଇଛନ୍ତି । କିଏ ଯେପରିକି କହିଲା 'ମର୍ଷ୍ଟଙ୍କୁ କାହାସଙ୍ଗେ—'

ସେ କହି ଲାଗିଛନ୍ତି :—'କବିମାନେ ଏମିତି ଯେ ମନଇଛା ଉପମାମାନ ଦିଅନ୍ତି ଯେମିତି ଏ ପୃଥିବୀ ସଙ୍ଗେ ଏକ ଫଳର ଉପମା । ଆଚ୍ଛା । ସ୍ୱୟଂ ପରମେଶ୍ୱର ଏ ବିଶ୍ୱକୁ ଯେତେବେଳେ ସୃଷ୍ଟି କଲେ ସେତେବେଳେ ସବୁ ଗ୍ରହ ଉପଗ୍ରହ ସମସ୍ତଙ୍କି ସେ କଲେ ଅଖଣ୍ଡମଣ୍ଡଳାକାର । ବୁଝିଲ ପିଲାଏ, ଅଖଣ୍ଡମଣ୍ଡଳାକାର । ମାନେ ଗୋଲ୍ । ପୃଥିବୀ ଗୋଲ, ତେଣୁ ଏକ ଗୋଲା ଫଳସାଙ୍ଗେ ତାକୁ ଉପମା ଦିଆହେବ । କିପରି ଗୋଲଫଳ ? ଅମ୍ବ,—ନା ନା ଅମ୍ବ ନୁହେଁ, ବେଲ, କଇଁଥ, ବାଇଗଣ—ମାନେ ଗୋଲ ବାଇଗଣ, ଗୋଲ ଆଳୁ, କଖାରୁ, କମଳା, ଏମିତି କେତେ ଫଳ ଅଛି । କିନ୍ତୁ ଏ ପୃଥିବୀ ଗୋଲ୍ ହେଲେ କଣ ହେଲା ଏଠି କୋଉଁଥାନଟା ଉଚ୍ଚ ପର୍ବତ ତ, କେଉଁ ଥାନଟା ଗହୀର ଗଣ୍ଡ କି ସମୁଦ୍ର, ଖାଲି ଢିପ ଖାଲ, ଯା ଉପରଟା ଅବୁଖାବୁଡ଼ିଆ । ଆଚ୍ଛା ଏପରି କେଉଁ ଫଳ ଅଛି ଯିଏ ଗୋଲ ଅଥଚ ଯାହା ଉପରଟା ଅବୁଡ଼ା ଖାବୁଡ଼ା ? ସେ ଫଳ ନାଁଟି କମଳାଲେମ୍ବୁ, ତେଣୁ ପୃଥିବୀ କମଳାଲେମ୍ବୁ ପରି ।''

''ଏତ ନାଗପୁରୀ କମଳା କଥା କହିଲେ ପଣ୍ଡିତ ମହାଶୟେ, ସିଲେଟ୍ କମଳା ଉପରଟା ଖରି ସାଉଁଳିଆ । ତାହେଲେ କହିବେ ପୃଥିବୀର ଆକାର ନାଗପୁରୀ କମଳା ପରି । ବାଃ ବାଃ ଚମତ୍କାର ପାଠପଢ଼ା, ଅତି ଚମତ୍କାର । ନା କଣ ଇନସ୍ପେକ୍ଟର ମହାଶୟ, ବାଛି ବାଛି ଭଲ ମାଷ୍ଟର ରଖିଛନ୍ତି । ଆଉ ସହକାରୀ ସବଇନସ୍ପେକ୍ଟର ମହାଶୟ, ଆପଣଙ୍କ ନିଘା ଏଠିକି ସଦାସର୍ବଦା ପଡ଼ୁଥିବ ନିଶ୍ଚୟ, ଆପଣଙ୍କ ହେଡ୍-କ୍ୱାଟସ ପାଖକିନା । କି ସାହିତ୍ୟ କି ଅଙ୍କ କି ଭୂଗୋଳ କି ସାଧାରଣଜ୍ଞାନ । ଆଉ କି ସୁନ୍ଦର ଛାତ୍ର ଉପସ୍ଥାନ ବି । ହେଡ୍ପଣ୍ଡିତେ ଆପଣଙ୍କର ପଦୋନ୍ନତି ହେବା ଆବଶ୍ୟକ । ଆଚ୍ଛା, ଚିଲିକା ମଧ୍ୟସ୍ଥ ରମ ଲେଙ୍କା ନିଃ ପ୍ରାଃ ସ୍କୁଲର ତୃତୀୟ ଶିକ୍ଷକ ସ୍ଥାନ ଖାଲିଅଛି, ଆପଣ ତା ମଣ୍ଡନ କରି ପାରିବେ, ଆପଣଙ୍କର ସେ ଯୋଗ୍ୟତା ଅଛି ।'' ପରିଦର୍ଶକ ହସୁଛନ୍ତି । ରମ ସାହୁ ହସୁଛି । ଗାଁର ଆଉ ଦଶ ପନ୍ଦରଜଣ ଯେଉଁମାନେ ଆସି ଦେଖୁଥିଲେ, ସେମାନେ ବି ହି ହି ହୋଇ ହସୁଛନ୍ତି । ମାଷ୍ଟ୍ରେ ଦେଖୁଛନ୍ତି ମୁଣ୍ଡ ଉପରେ ଚଡ଼କ ପଡ଼ୁଛି ।

''ଆଜ୍ଞା ମୁଁ ବୁଢ଼ାଲୋକ, ଚିଲିକା ଭିତର ରମ ଲେଙ୍କା ଯାଇ ପାରିବି କେମିତି ?''

''ନେଯଥିରେ କଣ ଅଛି ? ଆପଣତ ସେଠି ଆଉ ପଥର ଭାଙ୍ଗିବେ ନାହିଁ ସେଥିରେ ବୁଢ଼ା କଣ ଟୋକା କଣ ? ଚିଲିକାରେ ହଂସ ଦେଖିବେ, ମାଛ ଖାଇବେ, ଭଲ ହେବ ।''

ସେମାନେ ଚାଲି ଯାଉଛନ୍ତି । ହଠାତ୍ ସବୁ ଆତ୍ମସମ୍ମାନ ଗୋଳି ତରଳି ଯାଉଛି ଏକ ଅଜଣା ଆତଙ୍କରେ ପିଲାଙ୍କପରି ଅଳି କରି କରି ସେ ଦୌଡ଼ି ଦୌଡ଼ି ଗଡ଼ଇ

''ଆଜ୍ଞା ମତେ ରମ ଲେଙ୍କା ପଠାନ୍ତୁ ନାହିଁ, ମୁଁ ମରିଯିବି ଆଜ୍ଞା ।''

"ଭ୍ରମ ଲେଙ୍କାରେ ବି ଘରଦ୍ୱାର ଅଛି, ମଣିଷ ଅଛନ୍ତି । ଆପଣ ସେଠି କେବେ ମରିବେ ନାହିଁ ।"

ତାପରେ, ମଟର ଛାଡ଼ିବା ଆଗରୁ ସେ କହିଲେ "ହଉ, ଭ୍ରମ ଲେଙ୍କା ନ ଯାଆନ୍ତୁ ପଛେ । ଏଠୁ ତିନିକୋଶ ବାଟ ନରିପୁର, ନରିପୁର ନିଃ ପ୍ରାଃ ସ୍କୁଲର ଦ୍ୱିତୀୟ ପଣ୍ଡିତ କରି ଆପଣଙ୍କୁ ବଦଳି କରାଗଲା । ଅବସର ସମୟରେ ଅନ୍ତତଃରେ ନିଜେ ପାଠ ପଢ଼ି ନିଅନ୍ତୁ । ସ୍କୁଲ କାମରେ ମନ ଦିଅନ୍ତୁ, ନହେଲେ ଆପଣଙ୍କର ଯେଉଁ ଯୋଗ୍ୟତା ଯେଉଁ କାର୍ଯ୍ୟ ଦକ୍ଷତା ଦେଖିଗଲି ସେଥିରେ ଆପଣଙ୍କୁ କାର୍ଯ୍ୟରୁ ବାହାର କରି ଦିଆହେବ । ଛି ଛି, ଏଇ ପାଠ ଆପଣ ପଢ଼େଇଛନ୍ତି ଏତେ ବର୍ଷଯାକେ । କେତେବଡ଼ ବିଶ୍ୱାସରେ କେତେ ବଡ଼ ଦାୟିତ୍ୱ ଆପଣଙ୍କ ହାତରେ ଦିଆ ହୋଇଥିଲା । ଆପଣ ପିଲାଙ୍କୁ ଏକାଠି କରିବେ, ପାଠ ପଢ଼େଇବେ, ମଣିଷ କରିବେ । ଭବିଷ୍ୟତରେ ଯେଉଁମାନେ ମଣିଷ ହେବେ ସେମାନଙ୍କୁ ଆପଣ ତିଆରି କରିବେ । ଅଥଚ ଆପଣମାନେ ଏମିତି ତୁଚ୍ଛ ଜଳଇ ବୁଲେଇକା ଛାଇଲେଉଟେଇ ଦେଉଛନ୍ତି । ଦେଶପ୍ରତି କେତେବଡ଼ ବିଶ୍ୱାସ ଘାତକତା । ଯାଉନ୍ତୁ ହେତୁ କରନ୍ତୁ ଟିକିଏ ।"

ମଟର ପାଖେ ଯେତେ ଲୋକ ବେଢ଼ିଥିଲେ ସମସ୍ତେ ସେକଥା ସମର୍ଥନ କଲେ । ମଟର ଗ୍ଲାଲିଗଲା । ଗାଁଲୋକେ ବଡ଼ ପାଟି କରି ତର୍କ ବିତର୍କ କରି କରି ଗଲେ । "ଏଇ ଆମ ପିଲାଙ୍କ ଜୀବନ ମାଟି କରୁଛି ।"

"କିଛି ଜାଣେ ନାଇଁ କିଛି ପଢ଼ାଏ ନାହିଁ ବୁଢ଼ା ଓଲୁ ।" "ସେ ଠିକ୍ କହେଇ ଦେଇ ଗଲେ ଯେ ବିଶ୍ୱାସଘାତକ ।"

"ଅନ୍ନାହାହା, ଭାରି କୁହାଳିଆ ପଡ଼ିଚ ସମସ୍ତେ । ଜଣେ ଉପରବାଲା କୁଆଡ଼ୁ ଉଡ଼ି ଆସି କଣ କହିଦେଲା ବୋଲି ସମସ୍ତେ ବୋଚଝୁଞ୍ଜି ପରି ସେହି ଅଡ଼କୁ ଅଉଜି ଯାଉଛ । କଣ ପିଲେ ଆସୁ ନାହାନ୍ତି ପାଠ ପଢ଼ୁ ନାହାନ୍ତି ବୋଲି ମୋଷ୍ଟ୍ର ଦାୟୀ ? ଆଉ, ତାଙ୍କ ବାପ ମାନେ ମା ମାନେ କଣ କରୁଥିଲେ ଯେ ଭଲେଇ ହୋଇ ମୁଣ୍ଡରୁ ଦୋଷ ଛଡ଼େଇ ହେଉଛନ୍ତି ? ଯେ ବିଶ୍ୱାସଘାତକ । ଆଉ ତେମେସବୁ କଣ ?" ବୁଢ଼ା ଉର୍ଦ୍ଧ୍ୱ ପଧାନେ ଖିଙ୍କାରି ଉଠିଲେ ।

"ସତ କହିଲେ ପଧାନେ, ଭାରି ଭଲ ଲୋକଟିଏ ଆମ ମାଷ୍ଟ୍ରେ, କୋଉଦିନ କୋଉ କଥାରୁ ବାହାର ହେଇଚନ୍ତି ? ବଦଳିତ ହେଲା, ଏଥର ବଦଳିଟା କେମିତି ଅଟକିବ ସେଇ ଭାବନା ।"

ଲୋକେ ତାଙ୍କରି ବିଷୟରେ ଆଲୋଚନା କରୁଛନ୍ତି । ଏଥର ଲାଗିଲା ଗାଁ ଯାକରେ ଗୋଟାଏ ଘଟନା, ପଟ ନିଆନେଇ ତାଛାଁକୁ ହେବ । ଭ୍ରମ ସାହୁ ଗୋଟାଏ ପଟ ନେଲେ ଉର୍ଦ୍ଧ୍ୱ ପଧାନ ତ ବଳେ ଆଉ ଗୋଟାଏ ପଟ ନେବ ଏଥିରେ ସନ୍ଦେହ କଣ ? ଲାଗିଯିବେ ଦୁଇପକ୍ଷ ଦସ୍ତଖତ ଯୋଗାଡ଼ କରିବାରେ, ଗୋଟାଏ ପକ୍ଷ କହିବେ ଯାଙ୍କ ବଦଳି ଅଟକୁ, ଅପରପକ୍ଷ କହିବେ ଯେ ଶୀଘ୍ର ଯାଉନ୍ତୁ । ପିଲାଏ ପଢ଼ିଲେ କି ନ ପଢ଼ିଲେ ଏ ବିଷୟରେ ଉଭୟପଟ ଉଦାସୀନ, ଅସଲ କଥା କାହାର ମତଟା ରହିବ, ଭାରି ନାଁ ଗାଁ ଇଜ୍ଜତ୍, ସେଇଥିରେ ସବୁ ତଉଲ ହୁଏ କିଏ କେତେ ମଣିଷଟାଏ ।

ହଁ, ତାଙ୍କ ନିଜର ଦୋଷ ହୋଇଛି ନିଶ୍ଚୟ । ସେ ପିଲାଗୁଡ଼ାଙ୍କୁ ବେଶୀ ବିଶ୍ୱାସ କରିଥିଲେ । ଭାବିଥିଲେ ସେମାନେ ପଢ଼ୁଛନ୍ତି ବୋଲି । ତାଙ୍କ ବାପମାଙ୍କୁ ବେଶୀ ବିଶ୍ୱାସ କରିଥିଲେ, ଭାବିଥିଲେ ସେମାନେ ପିଲାଙ୍କ ପଢ଼ାପଢ଼ିର ତଲ୍ଲାସ ନେଉଛନ୍ତି ବୋଲି । ବିଶ୍ୱାସ ଭୁଲ ହୋଇଛି । ପିଲାଏ ମୂର୍ଖ ହୋଇଛନ୍ତି, ଇସ୍କୁଲ ଉଚ୍ଛିନ୍ନି । ପ୍ରକୃତରେ, ତାଙ୍କ ତଦାରଖ ବହୁତ ଦୁର୍ବଳ ବହୁତ ମନ୍ଦାପଣ ଦେଖା ଦେଇଛି । ଗାଁ ସେ ଟାଇମରେ ଗୋଟେ ପିଲା, ଏକା ବାଉରି ସାହିରେ ପଚାଶ ଜଣ ପିଲା ବାହାରିବେ । ପାଠପଢ଼ା ପାଇଁ ଯଦି ଦିନିକ ବାହାରନ୍ତେ ଆସୁଛନ୍ତି ମୋଟେ ପଚିଶି ତିରିଶି । କାମ କରି ହୋଇଥାନ୍ତା । ନହେଲା କାହିଁକି ? ମନ ଭିତରେ ଏତେ ସଦିଚ୍ଛା ଏତେ ଧାରଣା ଥାଉ ଥାଉ କେମିତି ଗୋଟିଏ ପରେ ଗୋଟିଏ ଦିନ ବୋହି ଚାଲିଗଲେ କୁଆଡ଼େ କିଛି ହେଲା ନାହିଁ । ପରାଜୟ ନୁହେଁ ଅବସାନ ଘଟିଛି, ସଂପୂର୍ଣ୍ଣ ଅବସାନ ।

ପିଲାଏ ଗଲେଣି ବାହାରି । ବାଁକେକେ ଗଲେଣି । ଇସ୍କୁଲ ଦୁଆର ମୁହଁରେ ଏକୁଟିଆ ବସିଛନ୍ତି ମାଷ୍ଟ୍ରେ । ଅନ୍ଧାର ଧୀରେ ଧୀରେ ଆସୁଛି । କାନପାଖେ ନାକପାଖେ ମଶାମାନେ ଭଣଭଣ ହେଉଛନ୍ତି, ଯେମିତିକି ସେମାନେ ପଚାରୁଛନ୍ତି,—"କଥା କଣ ? କଥା କଣ ?" ସମସ୍ତେ ଅନୁସନ୍ଧିତ୍ସୁ, ସମସ୍ତେ ଜିଜ୍ଞାସୁ । କିନ୍ତୁ ସେହି ମଚ୍ଛି ଅନ୍ଧାରରେ ତୁନିତାନି ସେ ବସି ରହିଛନ୍ତି, ଧ୍ୟାନସ୍ଥ । ଆପଣା ଭିତରକୁ ଦୃଷ୍ଟି ପକାଉଛନ୍ତି, ଉଖାରି ଉଖାରି ଦେଖୁଛନ୍ତି । ସବୁ ପାଉଁଶ ହୋଇ ଯାଇଛି । ନିଜ ଭିତରଟା ଯେପରିକି ପାଉଁଶକୁଣ୍ଡ, ଶୀତଳ ପାଉଁଶ । ତା ତଳକୁ—ତା ତଳକୁ—ଯେତେ ଗହୀରକୁ ଉଖାରି ଦେଖିଲେ ଆପଣା ଭିତରେ ଖାଲି ପାଉଁଶ କୁଢ଼ କୁଢ଼, ନିଆଁ ଦିଶୁନାହିଁ ।

ନିଆଁ ନାହିଁ ? ତାତି ନାହିଁ ? ଆଶା ଭରସା ନାହିଁ ? ଜୀବନ ନାହିଁ ? ଅସମ୍ଭବ । ଅସମ୍ଭବ । ଆହୁରି ଗହୀରକୁ ଯିବାକୁ ହେବ, ବହୁତ ତଳକୁ, ସେଠି ଥିବ ଟିକିଏ କିଛି ନିଶ୍ଚୟ, ଜୀବନ ଅଛି ଯେଣୁ ଯେଉଁଠି ହେଲେ ଆପଣା ଭିତରେ ନିଆଁ ବୁନ୍ଦାଏ ଥିବ । ତାକୁ ଫୁଙ୍କି ଫୁଙ୍କି ଜ୍ୱଳେଇବାକୁ ପଡ଼ିବ । ଫୁଙ୍କୁ ଫୁଙ୍କୁ ପାଉଁଶ ଉଡ଼ି ଚାଲିବ ଧୂଆଁ ପଡ଼ି, ଲହୁ ଯେତେ ଯେ ନ । ଏତେ ଦୁର୍ବଳ ସେ ମରିବାକୁ ଚାହାନ୍ତି ନାହିଁ । ଖାଲି ସେମାନଙ୍କ ଟାହିଟାପରାରେ, କାହାରି ଗାଳିରେ, ଗୋଟାଏ ବଦଳି ହୁକୁମ କି ଗୋଟାଏ ବ୍ୟବସ୍ଥା ଉଠିଯିବାର ହୁକୁମରେ ସେ ଆପଣାର ଇଜ୍ଜତ ନଷ୍ଟକରି ନଅକରି ଭାଙ୍ଗି ପଡ଼ିବାକୁ ଚାହାନ୍ତି ନାହିଁ । ଯେତେ ଦୁର୍ବଳ ପଛେ ହୋଇଥାଉ ଏ ହାଡ଼ କେଇଖଣ୍ଡ, ଯେତେ ହାନିବଳ ଥରଥର ହୋଇଥାଉ ପଛେ ଏ ଦେହ, ଆୟୁଷ ପଛେ ଥାଉ ଅଳ୍ପ କେତେଟା ଦିନ, କି ଯାଏ ସେକଥା ଛଡ଼ି, କିନ୍ତୁ ଥିବାଯାକେ ବଞ୍ଚି ହେବାକୁ ପଡ଼ିବ ମଣିଷ ପରି, ଗଛ ବଢ଼ୁଚି, ହୁଙ୍କା ବଢ଼ୁଚି, ଅଉ ମଣିଷ ପାରିବ ନାହିଁ ।

ମୁଣ୍ଡ ଝାଇଁ ଝାଇଁ ହେଇ ଆସୁଛି । ଅତୀତର ଆଶା ଉଲ୍ଲାସ ମନେ ପଡ଼ୁଛି । ଆଶ୍ଚର୍ଯ୍ୟ ଲାଗୁଛି, କେମିତି ଦିନଗୁଡ଼ାକ ଚାଲିଗଲା ସବୁ । ଖାଲି କରିବି କରିବି ବୋଲି ଭାବି ଭାବି । ଖାଲି ପରିଣାମ ନ୍ୟାୟ ଅନ୍ୟାୟ ଭୟ ବିପଦ ଭଲମନ୍ଦ ଏମିତି କଥା-ଗୁଡ଼ାକ ଭାବୁ ଭାବୁ । ଆପଣା ପାଖେ ଆପଣାର ପ୍ରତିଜ୍ଞା ହେଲା ଅପୂର୍ଣ୍ଣ, ଜୀବନଟା ହେଲା ଖାଲି ଅକାରଣେ ଦିନ ବିତେଇବା । ଯେପରିକି ଏ ଇସ୍କୁଲ ନୁହେଁ ରେଟିଏ

ପୁରୁଣା ମଠ । ଏ ହୁଏ। ନୁହେଁ ସେଇ ପୁରୁଣା ଭଗବତ ଗାଦି, ସେ ନିଜେ ଏକ ବାବାଜି ଯେ ଥାଲି, ବସି ବସି ମାଳା ଗଣ୍ଠୋଇ ଗଣ୍ଠେଇ ବୟସ ବିତିଲା ।

ଖାଲି ଅମୃତ-ପ୍ରଭାବଣାରେ ଅମୃତ-ପ୍ରଭାବଣାରେ ବର୍ଷ ପରେ ବର୍ଷ କଟି ଯାଉଛି । କେତେକଥା କରିବାକୁ ମନ ହୋଉଛି, ଉଚିତ କଣ ଅନୁଚିତ କଣ ସେ ବିଷୟରେ ମତ ଠିକ୍ ହୋଉଛି, ଯୋଜନା କରୁହୋଉଛି, କାମ ହୋଉନାହିଁ ।

ଅଥଚ କିଏ କେତେ କେତେ କଥା କରି ଯାଉଛନ୍ତି, ଅନାବାଦି ତଡ଼ା ହୋଇ ଆବାଦି ଜମି ହୋଉଛି, ଜମି ମୁଠ ମୁଠ କରି ଫସଲ ଅଜାଡ଼ି ଦେଉଛି ।

ଯେମିତିକି ତାଙ୍କର ବନ୍ଧୁ ହୋଇ ପଡ଼ିଥିବା ବ୍ୟକ୍ତିଏ ଦ୍ରୁଣ୍ଡାପୁତା ଅଉ କେଞ୍ଚ କେଞ୍ଚି ଫୋଡ଼ାଫୋଡ଼ିରେ ଫେର୍ ଚେଇଁ ଉଠିଛି । ମନେ ପଡ଼ୁଛି ଯେବେ ଦରିଦ୍ର ହେଲେବି ଶିକ୍ଷକ ବୋଲି କେତେ ବଳ ଥିଲା ତାଙ୍କ ମନରେ, ଗୋଦ୍ୱାର ।

କହି ବୁଲୁଥିଲେ ପର,— ଆମେ ଶିକ୍ଷକ, ଆମେ ଲୋକଙ୍କୁ ଦେଖିଲେ ସେମାନେ ମହିଷ ହୁଅନ୍ତି, ତୁମେ ମହିଷ ପିଲାଟିକୁ ଜନ୍ମ କରିଲେ କଣ ହେଲା, ସେ ତ କଞ୍ଚା ମାଟିରେ ଥାଏ, ଆମେ ତାକୁ କେଁ ପାତ୍ର ତିଆରି କରୁଁ । ଆମର ସମାନ ଖାଲି ଏ ସମ୍ମାନ, ଖାଲି ନିତି ।

ଧ୍ୟାନ କରୁ କରୁ ମୁହଁରେ ଝୁଲି ପଡ଼ୁଛି । ମନକୁ ଅଶ୍ୱାସ ଦେଲେ କଣ ହେଲା ନଦିପ୍ରର କି ବୋଇଣ୍ଡରେ ହେଲେ ପରେ—ସେଇଠି କି ଯାଉ ମହିଷ କାମ କରିବ । ଚୋରିତ ହୋଇ ଅଉ ଅମୃତପ୍ରକାଶ କରିବା ପାଇଁ କାର୍ଯ୍ୟ କରିବା ଛଡ଼ା ଅନ୍ୟ ଉପାୟ ଆଉ ନାହିଁ ।

ଆପଣାର ଅବହେଳା ଲାଗି ଆପଣା ଉପରେ ଅଭିମାନ କରି ସେ ଉଠି ପଡ଼ିଲେ । ଅପମାନର ଭାବ ଲାଘବ ହେଲା । ପଦ ଉପରେ ଭର ନାହିଁ, ଭ୍ରମ ସାହୁ ମନେ ନାହିଁ । ଶିଖର ଉପରକୁ ଉଠି ଯାଉଛି ।

ଖନିପାଖେ ଆଖି ବୁଜିଲେ ଅହିଲେ । ଦେହର ସେବିବ କର୍ମଗୁଳି । ଜୀବନର ଝୁରି ବେଶ ଫାଳେ । କାମ ଭିତରେ ଦୁଟିଏ ଖାଇ ଏଇଠି ଅଗ୍ନି ସେବିବା, ମନହେଲେ କେ-ତବେଳେ କେମିତି ପିଲାଙ୍କ ସଙ୍ଗେ ଗପର ହେବା, ନହେଲେ କାହା ସଙ୍ଗେ ବସି ପେଟିବା, କି କିଛି ନହେଲେ ଖାଲି ପଡ଼ କୁ ଅନାଇଁ ରହିବା । ଏମିତି ବିତିଗଲା ପନ୍ଦର ବର୍ଷ । କିନ୍ତୁ ସେ ଖାଲି ନିଜେଁକ ନଥିଲା । ସେ ବି ଥିଲା ଜୀବନକୁ ଦେଖିବା ଓ ଅନୁଭବ କରିବାର ଗୋଟିଏ ବିଶିଷ୍ଟ ଭଙ୍ଗୀ । ଝକ୍ କରି ମନେ ପଡ଼ିଯାଉଛି କେତେ ଚିତ୍ରା ଦୃଶ୍ୟ, ଏଇ ଦୁଆର ମୁହଁରେ ବସି ଥାଉଁ ଥାଉଁ ଖରଚା କେମିତି ଲିପାପୋଛା ଅଗଣା ଓ ପିଣ୍ଡା ଉପରେ ଢୁକ୍ ଢୁକ୍ ଢଳଡ଼ିଆ ପାଣିପରି ଧୀରେ ଧୀରେ ମାଡ଼ିମାଡ଼ି ଆସେ, କେମିତି ଏଠୁ ଆଗକୁ ଅନାଇଲେ ଗୋଟାଏ ନିର୍ଦ୍ଦିଷ୍ଟ ପରିଧିକୁ ଅଶ୍ରାକରି ଦୃଷ୍ଟି ଦୂରକୁ ଲମ୍ବିଯାଏ । ଏଠିହେଠି ହୋଇ ଗୁଡ଼ାଏ ଉନ୍ନତ, ସବନାରେ, ବାଉଁଶବୁଦାର ଅଟ, ଥୋଡ଼ାଏ ଖଳରୁ କିଛି କିଛି, ତାହା ଝକରେ ଗୋଟାଏ ଡେଙ୍ଗା ଦେବଦାରୁଗଛ, ସାମ୍ନାରେ ଦୂରରେ ନଡ଼ିଆଗଛର କଳଙ୍କ ମାନ ଓ କେତେଟାର ତାଳଗଛ ନଡ଼ିଆଗଛ ମଝିରେ ଏକ ଦେଉଳର ଚୂଡ଼ା, ତା ମଝିରେ ନାଚିବା ଭଙ୍ଗିରେ ନଟରାଜ ଶିବଙ୍କ ମୂର୍ତ୍ତି, ସାମ୍ନାରେ ପିଲରେ

ଦି'ଟା ବାରିର ବାଡ଼ । ସେଥିରେ କୁଞ୍ଜଲତା, ଅପରିଚିତା ମାଡ଼ିଛି, ତାଛଡ଼ା ଅନ୍ୟାନ୍ୟ କେତେ ଲଟା, ବାରିରେ ଗହଳି ହୋଇ କଦଳୀଗଛ, ଏତେ ଦୃଶ୍ୟ ଉପରେ ଆକାଶ,—ଦେଖିବା ପାଇଁ ଏ ଗୋଟିଏ ଚିହ୍ନା ପଟଭୂମି ଥିଲା । ନରିପୁର କଥା ଭାବିଲାମାତ୍ରେ ଏସବୁ ମନେ ପଡ଼ୁଛି ଆଉ ଲାଗୁଛି, କେତେଆଡେ ପୁଣି କେତେ ଗହୀରକୁ ଆପଣାର ଚେର ମାଡ଼ିଯାଇଛି । ଚିହ୍ନା ଦୃଶ୍ୟ,—ଚିହ୍ନା ମଣିଷ, ଚିହ୍ନା ଗଛ, ଏପରିକି ଚିହ୍ନା ଗୋରୁ ଛେଳି, ବଞ୍ଚିବାର ଏକ ଚିହ୍ନାନ୍ତର ଆପଣା ପାଇଁ ଏକ ଜୀଅନ୍ତା ଖୋଳପରି ଏ ଇସ୍କୁଲ ଘର ଲାଗୁଛି,—ଏତେଠିଁ ଛିଞ୍ଚାଡ଼ି ହୋଇଥିଲା ତାଙ୍କ ଜୀବନର ସମ୍ପର୍କ ଓ ସମ୍ବନ୍ଧ, ଯିବାକୁ ପଡ଼ିବ ନରିପୁର, ଏସବୁ ପଛରେ ରହିବ ।

ତାସଙ୍ଗେ ସଙ୍ଗେ ମନେ ପଡ଼ିଲା, ଆଉ ଦଶବର୍ଷ କି କୋଡ଼ିଏ ବର୍ଷରେ ଆଉଏକ ପୁରକୁ ଯିବାକୁ ପଡ଼ିବ, ସେତେବେଳେ ତ ସବୁ ପଛରେ ରହିଯିବ, ସଙ୍ଗରେ କିଛି ଯିବ ନାହିଁ, ଏଦୃଶ୍ୟ ନୁହେଁ କି ଏ ଅନୁଭୂତି ନୁହେଁ କି ଏ ସମ୍ପର୍କ ନୁହେଁ । ତଥାପି ନରିପୁରତ ଭଣା ଅଧିକେ ଏମିତିଆ ଏକ ସ୍ଥାନ, ସେଥିରେ କଣ ଅଛି ?

ଜୀବନର ଧାର ସତେକି ଅଳସେଇ ଯାଇଛି, ନୂଆକରି ବାଗେଇବାକୁ ପଡ଼ିବ ।

ଅକାରଣରେ ପଣ୍ଡିତିଆଣୀଙ୍କ ଚେକାମୁହଁ ଆଉ ଫାଳିକିଆ ନୋଥ ମନେ ପଡ଼ିଲା । ମନେ ପଡ଼ିଲା ଯେମିତିକି ସେ ମୁହଁ ଆହୁରି ସାନ ଆହୁରି କଁଳିଆ ହୋଇ ଯାଉଛି, ଯେମିତି ସାମ୍ନା ବାରିରେ ମଝିଲା ମଝିଲା କଳା ମିଚ୍‌ମିଚ୍ ଧାଇଗଣ ଓହଳି ଥାଏ । ପୁରିଲା ପୁରିଲା ଅବୁଅବୁ ହୋଇ ସାନ ସାନ ଗାଲ ଦୋଟି, ଅବୁପରି ଗୋଟିଏ କପାଳ, ତା ମଝିରେ ଅଠଣି ଆକାରରେ ସିନ୍ଦୂର ମେଞ୍ଚାଏ, ଡାହାଣ ଗାଲର ଅଧେ ମାଡ଼ିବସି ସେହି ନୋଥପଟକ । ଜିକିଜିକି ମୁହଁ, ପରିଷ୍କାର ଆଖି, ସେଥିରେ ଝୁସିଲାପରି ଢୋଳା ଦି'ଟି । ତରତର କରି ଇସ୍କୁଲ ଘର କବାଟ ବନ୍ଦକରି ଆଣିଲେ । ଯେପରିକି ଘରକୁ ଲେଉଟିବାକୁ ବାରସହିଲା ନାହିଁ । ଆପଣା ଅଜାଣତରେ ଗୁଣୁଗୁଣୁ ହୋଇ ରଗିଣିଟିଏ ଧରିଲେ । କାମ କରି କରି ଆପଣାକୁ ସଳିତାପରି ଜାଳି ମଣିଷ ଗୋଷ୍ଠୀରେ ଆଲୁଅ ଦେବାକୁ ଭାବିଲାକ୍ଷଣି ସତେ ଯେପରିକି ବାର୍ଦ୍ଧକ୍ୟ କଟିଯାଇ ଯୌବନ ଲେଉଟି ଆସିଥିଲା ।

———